# କବିଚରିତ : ଗଙ୍ଗାଧର

ଶ୍ରୀ.ହେମନ୍ତ କୁମାର ଦାସ
ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଜାତୀୟ କବି ବୀରକିଶୋର ମହାବିଦ୍ୟାଳୟ
କଟକ



ପୁସ୍ତକ ଭଣ୍ଡାର
ବ୍ରହ୍ମପୁର-୧, ଗଞ୍ଜାମ

# କବିଚରିତ : ଗଙ୍ଗାଧର

ଅଧ୍ୟାପକ ହେମନ୍ତ କୁମାର ଦାସ

ପ୍ରକାଶକ :
ପୁସ୍ତକ ଭଣ୍ଡାର
ବ୍ରହ୍ମପୁର - ୧

ଶୁଭ ପ୍ରକାଶ :
ଅଶୋକାଷ୍ଟମୀ, ୧୯୭୭

ମୁଦ୍ରଣ :
ନବ ଷ୍ଟୋରସ ପ୍ରେସ୍
ବ୍ରହ୍ମପୁର - ୨

ମୂଲ୍ୟ : ତେର ଟଙ୍କା
ବନ୍ଧେଇ ପନ୍ଦର ଟଙ୍କା

**KAVI CHARITA : GANGADHAR**

*A Study on Life and Literature of* GANGADHAR MEHER

*By* :

**Sri Hemanta Kumar Das,** M. A.
( Sanskrit & Oriya )
*Lecturer, Deptt. of Oriya*
*Jatiya Kabi Birakishore College,*
*Cuttack.*

*Publisher* :
**PUSTAK BHANDAR**
*Berhampur - 1*

*Date of Publication* :
**28th March 1977**

Price : Rupees Thirteen only,
Calico Bound : Rupees Fifteen only

**ଏଇ ଲେଖକଙ୍କର ଅନ୍ୟାନ୍ୟ ଗ୍ରନ୍ଥ**

ଓଡ଼ିଆ ନାଟକର ବିକାଶଧାରା

ଆଷାଢ଼ସ୍ୟ ପ୍ରଥମ ଦିବସେ

ତପସ୍ୱିନୀ (ସମ୍ପାଦନା)

ପ୍ରଣୟ ବଲ୍ଲରୀ (ସମ୍ପାଦନା)

ଗଙ୍ଗାଧର ଗ୍ରନ୍ଥାବଳୀ (ସମ୍ପାଦନା)

ମାନନୀୟ ଡକ୍ଟର ଶ୍ରୀ ବଂଶୀଧର ମହାନ୍ତି,

ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

ସାହିତ୍ୟ ପ୍ରାଣେଷୁ

ଅର୍ପିତ

ହେମନ୍ତ

କବିଚରିତ : ଗଙ୍ଗାଧର : ବିଷୟ ସୂଚୀ

# ଭୂମିକା

ଆଜକୁ ଅନେକ ବର୍ଷ ପୂର୍ବେ ସ୍କୁଲ-ଛାତ୍ର ଥିଲା ସମୟରେ 'ତପସ୍ୱିନୀ'ର 'ମଙ୍ଗଳେ ଅଇଲା ଉଷା' ପଦ୍ୟାଂଶଟି ସହିତ ପ୍ରଥମ ପରିଚୟ ହୋଇଥିଲା । ଅର୍ଥବୋଧଗମ୍ୟ ହୋଇନଥିଲେ ମଧ୍ୟ କି ଏକ ଅପୂର୍ବ ଅନୁଭୂତିରେ ପ୍ରାଣ, ମନ ପୁଲକିତ ହୋଇ ଉଠିଥିଲା । ପରେ ଯେତେବେଳେ ଗଙ୍ଗାଧର ସାହିତ୍ୟର ପୂର୍ଣ୍ଣାଙ୍ଗ-କୋଣାର୍କ ଆଖିରେ ପଡ଼ିଲା, ସେତେବେଳେ ପୁଲକ ବଦଳରେ ବିସ୍ମୟ ଜାଗ୍ରତ ହେଲା । କିଏ ଏହି କବି ? କଣ ତାଙ୍କର ପରିଚୟ ? ଶିକ୍ଷା, ଦୀକ୍ଷା, ଯୋଗ୍ୟତା ବା କହଲ ? କବି ଚରିତ : ଗଙ୍ଗାଧର, ଏଇ ଆତ୍ମଜିଜ୍ଞାସାର, ବିନମ୍ର ପ୍ରତିଧ୍ୱନି ମାତ୍ର ।

ଗଙ୍ଗାଧର ଓଡ଼ିଆ ସାହିତ୍ୟରେ ଏକ ବହୁ ପଠିତ ଏବଂ ବହୁ ଚର୍ଚ୍ଚିତ କବି । ତାଙ୍କ ସମ୍ପର୍କରେ ଆମ ଭାଷାରେ ରଚିତ ହୋଇଥିବା ଆଲୋଚନା ସଂଖ୍ୟା ଖୁବ୍ ବେଶୀ ନୁହେଁ । ସେ ସବୁ ଦେଖିସାରିବା ପରେ ମୋର ମନେ ହେଲା, ଓଡ଼ିଆ ସାହିତ୍ୟର ଏଇ ଅଜାତ-ଶତ୍ରୁ କବିଙ୍କ ସମ୍ପର୍କରେ ମୋର ମଧ୍ୟ କିଛି କହିବାର ଅଛି । ଗଙ୍ଗାଧର ପ୍ରତିଭାର ମୂଲ୍ୟାୟନ ତାଙ୍କ ଜୀବିତାବସ୍ଥାରେ ଉତ୍କଳର ସମସ୍ତ ଜ୍ଞାନୀଗୁଣୀ ପଣ୍ଡିତ ଅକପଟ ଚିତ୍ତରେ କରିଯାଇଛନ୍ତି । ତେବେ ସେଗୁଡ଼ିକ ଗଙ୍ଗାଧରୀ ପ୍ରତିଭାର ପୂର୍ଣ୍ଣମୂଲ୍ୟାୟନ କରିପାରିଛି ବୋଲି ମୋର ମନେ ହେଲା ନାହିଁ । ତେଣୁ ମୋର ଏଇ ପ୍ରୟାସ । ଏହି ଗ୍ରନ୍ଥରେ ଗଙ୍ଗାଧରୀ-ବ୍ୟକ୍ତିତ୍ୱ ଏବଂ କବିକୃତିର ଏକ ନୈର୍ବ୍ୟକ୍ତିକ ଆଲୋଚନା କରିବା ନିମନ୍ତେ ଉଦ୍ୟମ କରାଯାଇଛି । ଜନ୍ମ, ଶୈଶବଠାରୁ ଆରମ୍ଭ କରି କବି ଜୀବନର ସାରସ୍ୱତ ସମ୍ପର୍କ ତଥା ଜୀବନ ଦର୍ଶନ ସମ୍ପର୍କରେ ମୋର ଅନୁଭବକୁ ଏଠାରେ ଲିପିବଦ୍ଧ କରାଯାଇଛି । ହୁଏତ ଆଲୋଚନାରେ ଚମକପ୍ରଦ ନୂତନତା କିଛି ନାହିଁ । ତଥାପି ମୋର ଦୃଢ଼ବିଶ୍ୱାସ ଏଥିରେ ମୁଁ ଏଭଳି କିଛି ଉପାଦାନ ସଂଗ୍ରହ କରିପାରିଛି, ଯାହା ପୂର୍ବର ଆଲୋଚନା ଗ୍ରନ୍ଥମାନଙ୍କରେ ନାହିଁ ।

କବି-ପ୍ରତିଭା ମୂଲ୍ୟାୟନରେ ଦାରିଦ୍ର୍ୟ-ହେତୁକ ସାନୁକମ୍ପ ଦୃଷ୍ଟି ଗଙ୍ଗାଧରୀ-ଆଲୋଚନାର ଏକ ପ୍ରଧାନ ଉପାଦାନ ରୂପେ ଗୃହୀତ । ବୋଧହୁଏ କବି ନନ୍ଦକିଶୋର ବଳ 'ଇନ୍ଦୁମତୀ କାବ୍ୟ ପ୍ରଣେତାଙ୍କ ପ୍ରତି' ଯେଉଁ ପଦ୍ୟମୟ ଶ୍ରଦ୍ଧା ନିବେଦନ କରିଥିଲେ, ସେଇଠାରୁ ହିଁ ଏ ଆଲୋଚନାର ସୂତ୍ରପାତ ହୋଇଛି । ଶ୍ରୀବଳ ଲେଖିଥିଲେ, "ଶୁଣିଅଛି ଦରିଦ୍ରତା କଠୋର ନିର୍ଯ୍ୟାତ / ସହି, କଷ୍ଟେ କବି ତୁମ୍ଭେ କର ଦିନପାତ—" । ଏହାପରେ ଯେଉଁ ଆଲୋଚନାମାନ ଲିଖିତ ହେଲା, ସେଥିରେ ଦାରିଦ୍ର୍ୟ ହେତୁ କବିଙ୍କୁ ପ୍ରଥମରୁ ହିଁ କରୁଣାର ଦୃଷ୍ଟିରେ ଦେଖାଯାଇ, କବି-ପ୍ରତିଭାର ଅର୍ଦ୍ଧ-ମୂଲ୍ୟାୟନ କରାଗଲା । ଏକମାତ୍ର ଡକ୍ଟର ନଟବର ସାମନ୍ତରାୟଙ୍କ ଆଲୋଚନା ବ୍ୟତୀତ ଆଜି ଯେତେ ଆଲୋଚନା ମୋ ଦୃଷ୍ଟିରେ ପଡ଼ୁଛି, ସବୁଥିରେ ସେଇ ଅନୁକମ୍ପାର ସ୍ୱର ! ଆଲୋଚନାର ଏହି ସ୍ୱର ଯଥାର୍ଥ ନୁହେଁ ବୋଲି ମୁଁ ପ୍ରମାଣିତ କରିଛି । ସମ୍ପ୍ରତି କବିଙ୍କ ବଂଶଧରମାନଙ୍କଠୁ ଶୁଣିବାକୁ ପାଇଲି ଯେ, ଯଥାର୍ଥତଃ, ଗଙ୍ଗାଧର ଦରିଦ୍ରତା ଅର୍ଥରେ ଦରିଦ୍ର ନଥିଲେ; ତାଙ୍କର ଦାରିଦ୍ର୍ୟ ତୁଳନାତ୍ମକ ଦାରିଦ୍ର୍ୟ ମାତ୍ର ।

ବିଭିନ୍ନ ସମୟରେ କବିଙ୍କ ସମ୍ପର୍କରେ ଆସିଥିବା ଶରତଚନ୍ଦ୍ର ନାୟକ, ବ୍ରଜମୋହନ ପଣ୍ଡା, ରାଘବ ମିଶ୍ର ପ୍ରଭୃତି ସେମାନଙ୍କର ସ୍ମୃତିଚାରଣରେ ଯାହା କହିଛନ୍ତି, ସେଥିରେ ଅବିଶ୍ୱାସ କରିବାର କିଛି ନଥିବାରୁ ଏବଂ ଏଗୁଡ଼ିକ କବି-ବ୍ୟକ୍ତିତ୍ୱ-ସୃଷ୍ଟିର ସହାୟକ ହୋଇଥିବାରୁ, ମୁଁ ଆଲୋଚନାରେ ସେଗୁଡ଼ିକର ସାହାଯ୍ୟ ନେଇଛି । ଏଇ ସବୁ ଆଖ୍ୟାୟିକାର ସତ୍ୟତା ସମ୍ପର୍କରେ କବିଙ୍କର ବଂଶଧରମାନେ ସନ୍ଦେହ ପ୍ରକାଶ କରୁଥିବାର ମଧ୍ୟ ମୁଁ ଜାଣେ । ମାତ୍ର ଏ ସବୁଥିରେ ଦୋଷର କିଛି ତ ନାହିଁ । ଯାହାର ସତ୍ୟତା ଏବେ ଆଉ କୌଣସିମତେ ପ୍ରମାଣ କରିହେବ ନାହିଁ, [illegible] ସେଇ ସବୁ ଆଖ୍ୟାୟିକାକୁ ଗ୍ରହଣ କରିନେଲେ କ୍ଷତି କଣ ?

କୃତଜ୍ଞତା ଜଣାଇବାର ଅବସରରେ ପ୍ରଥମେ ଖଲ୍ଲିକୋଟ-ମହାବିଦ୍ୟାଳୟର ଇତିହାସ ବିଭାଗର ମୁଖ୍ୟ ମୋର ପୂଜ୍ୟ ଅଧ୍ୟାପକ ଶ୍ରୀ ରାଜେନ୍ଦ୍ର ପ୍ରସାଦ ଦାସଙ୍କ ନାମ ସ୍ମରଣକୁ ଆସୁଛି । ଖାଲି ନିଜ ହାତରେ ମୋର ଏଇ ଅକିଞ୍ଚିତ୍କର ଜଳ୍ପନାକୁ ତାଙ୍କ ହାତକୁ ବଢ଼ାଇ ଦେଇପାରିଲି ନାହିଁ ବୋଲି ମୋର ଦୁଃଖ । ଅଧ୍ୟାପକ ବନ୍ଧୁ ଶ୍ରୀ କ୍ଷେତ୍ରବାସୀ ନାୟକ, ଶ୍ରୀ ପୀତାମ୍ବର ପ୍ରଧାନ, ଶ୍ରୀ ମହେଶ୍ୱର ଦାସ ପ୍ରଭୃତିଙ୍କର ଅକୁଣ୍ଠିତ ପ୍ରେରଣାର ଋଣ ବିନୀତ ଚିତ୍ତରେ ସ୍ୱୀକାର କରୁଛି ।

ପ୍ରକାଶକ ବନ୍ଧୁ ଶ୍ରୀ ନିତ୍ୟାନନ୍ଦ ଦାଶ ଆନ୍ତରିକତା, ନିଷ୍ଠା ଆଉ ଉତ୍ସାହ ଦେଇ ଏହି ଗ୍ରନ୍ଥର ପ୍ରକାଶକୁ ତ୍ୱରାନ୍ୱିତ କରିଛନ୍ତି । ଓଡ଼ିଆ ସାହିତ୍ୟ ତାଙ୍କ ନିକଟରେ ଅନେକ ପ୍ରତ୍ୟାଶା କରୁଛି । ଏହା ସଫଳ ହେଉ ।

ମୋର ଅନୁଜ ଶ୍ରୀମାନ୍ ଜୟନ୍ତ ( ଏ. ଆଇ. ଆର୍. ଜୟପୁର ) ଏଥିରେ ସନ୍ନିବିଷ୍ଟ ହୋଇଥିବା 'ଗ୍ରାଫ୍'ଟି ଅଙ୍କନ କରିଥିବାରୁ ତାକୁ ମୋର ଆଶୀର୍ବାଦ ଜଣାଉଛି । ମୋର ଅଗ୍ରଜ ଶ୍ରୀ ବସନ୍ତ କୁମାର ଦାସ, ଅନୁଜ ଡ଼ାକ୍ତର ପ୍ରଶାନ୍ତ ମୁଁ ଏ ଗ୍ରନ୍ଥ ସମ୍ପର୍କରେ ଆଗ୍ରହୀ । ପରିବାରର ସମସ୍ତ ଦାୟିତ୍ୱ ନିଜ ଉପରକୁ ନେଇଯାଇ ମୋତେ ନିଜ ଇଚ୍ଛାରେ କାମ କରିବାର ସୁଯୋଗ ଦେଇଥିବାରୁ ଜ୍ୟୋତ୍ସ୍ନାକୁ କୃତଜ୍ଞତା ଜଣାଉଛି ।

ଏ ଆଲୋଚନା ପାଠକମାନଙ୍କର ସାମାନ୍ୟତମ ଉପକାର କରିପାରିଛି ଜାଣିଲେ ମୋର ଶ୍ରମ ସାର୍ଥକ ମଣିବି ।

ହାତୀପଡ଼ି ନିବାସ
ଦେଉଳ ସାହି
କଟକ
୫ । ୩ । ୭୭

ହେମନ୍ତକୁମାର ଦାସ

# କବିଚରିତ : ଗଂଗାଧର

## (୧୮୬୨-୧୯୨୪)

"*Others abide our question,*
*Thou art free*—" *Mathew Arnold*

ସେକ୍ସପିୟର (Shakespeare) ପ୍ରତିଭାର ସଶ୍ରଦ୍ଧ ସଂସ୍ମରଣରେ ପ୍ରଖ୍ୟାତ ସମାଲୋଚକ ମାଥ୍ୟୁଆର୍ଣ୍ଣଲ୍ଡ (Mathew Arnold) ଯେଉଁ ଉକ୍ତିଟି ପ୍ରକାଶ କରିଥିଲେ, ତାହା ହୁଏତ ସେକ୍ସପିୟରଙ୍କ ପକ୍ଷରେ ସାମାନ୍ୟ ଅତିରଞ୍ଜନ ହୋଇପାରେ । ମାତ୍ର ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରତିଭାଶାଳୀ କବି ଗଙ୍ଗାଧରଙ୍କ କ୍ଷେତ୍ରରେ ଏହି ଉକ୍ତିଟିର ସତ୍ୟତା ଆଜି ଅଲ୍ପ କୌଣସି ପ୍ରମାଣର ଅପେକ୍ଷା ରଖେ ନାହିଁ । କାଳିଦାସ, ରବୀନ୍ଦ୍ର, ଭଞ୍ଜ, ରାଧାନାଥ ପ୍ରଭୃତି ଯୁଗ-ପ୍ରବର୍ତ୍ତକ ପ୍ରତିଭା ବହୁ ବିଚାର-ବିମର୍ଷର ଶରବ୍ୟ ହେଲାବେଳେ ଏକମାତ୍ର ଗଙ୍ଗାଧର ଏ ସମସ୍ତର ବହୁ ଊର୍ଦ୍ଧ୍ୱରେ ଆସୀନ ।

ନିଜକୁ ଅନ୍ୟ ନିକଟରେ ବିବୃତ କରିବାର ଏକ ମର୍ମଦାହୀ ଯନ୍ତ୍ରଣାରୁ ମୁକ୍ତିଲାଭ କରିବା ନିମନ୍ତେ କବି ସାରସ୍ୱତ କର୍ମରେ ବ୍ରତୀ ହୋଇଥାଏ । ଏହି ବିବୃତ କରିବାର ଶକ୍ତି ପୁଣି ସମସ୍ତଙ୍କର ନଥାଏ । ଏହା ଐଶ୍ୱରିକ ଏବଂ ବୋଧହୁଏ ଏହାକୁ ହିଁ 'ପ୍ରତିଭା' ବୋଲି କୁହାଯାଇଥାଏ । ପ୍ରତିଭାର ଉତ୍ତରଣରେ କବି ଯେ ସର୍ବଦା ଅନୁକୂଳ ପରିସ୍ଥିତିର / ପୁଷ୍ପାକୀର୍ଣ୍ଣ ପଥର ସନ୍ଧାନ ପାଇଥାଏ, ଏକଥା କୁହାଯାଇ ପାରିବ ନାହିଁ । ବରଂ ପ୍ରତିକୂଳତା / ପ୍ରତିଦ୍ୱନ୍ଦ୍ୱିତାର ତୀକ୍ଷ୍ଣ ଅସିଧାରରେ ସର୍ବଦା କବିକୁ ନିଜର ପଥ କରିନେବାକୁ ହୋଇଥାଏ । ଆଶ୍ଚର୍ଯ୍ୟର ବିଷୟ ଯେ, ସାଂସାରିକ ପ୍ରତିକୂଳତା ପ୍ରତିଭା କଳିକାକୁ ବୃନ୍ତଚ୍ୟୁତ କରିପାରେନା । ବରଂ ଏହି ପରିସ୍ଥିତି ନିମନ୍ତେ ପ୍ରତିଭା ସତତ ଅପେକ୍ଷମାଣ ଥାଏ ଏବଂ ବାତାନୁକୂଳ ଅଗ୍ନିଶିଖା ତୁଲ୍ୟ ବିପରୀତ ପରିବେଶରେ ହିଁ ପ୍ରତିଭାର ପ୍ରଚଣ୍ଡ ତେଜ ପ୍ରଜ୍ୱଳିତ ହୋଇଥାଏ । ଅନ୍ତତଃ ଗଙ୍ଗାଧରଙ୍କ କ୍ଷେତ୍ରରେ ଏହାର ସତ୍ୟତା ପ୍ରମାଣିତ ।

ଚିରଦାରିଦ୍ର୍ୟଜନିତ ନାନାବିଧ ପାରିବାରିକ ସମସ୍ୟା / ଅଳ୍ପଶିକ୍ଷା / କର୍ମଜୀବନରେ ପୌନଃପୁନିକ ଅସ୍ଥିରତା ହେତୁକ ସମସ୍ୟାଭାବ ଏହି କ୍ଷଣଜନ୍ମା କବିଙ୍କୁ ଲେଖନୀ ଚାଳନାରୁ ବିରତ କରି ନାହିଁ । ବରଂ କବି ସେହି ଅବସ୍ଥାରେ ହିଁ ଆଗେଇ ଯାଇଛନ୍ତି, ନିଜ ଜୟଯାତ୍ରାରେ । ଗଢ଼ା ହୋଇଛି ଗୋଟିକ ପରେ ଗୋଟିଏ କାବ୍ୟ-କୋଣାର୍କ, ଯାହାର ବିକଳ୍ପ ନାହିଁ । ତାହାଙ୍କର ସମସାମୟିକ ଅନ୍ୟ କବିମାନେ ଯଥା : ରାଧାନାଥ / ମଧୁସୂଦନ / ଫକୀରମୋହନ / ନନ୍ଦକିଶୋର ନିଜ ଗୁରୁଆଡ଼େ ଯେଉଁଭଳି ବିତର୍କର ସୃଷ୍ଟି କରାଇଛନ୍ତି, କିମ୍ବା ବାହୁଲ୍ୟ ଗଙ୍ଗାଧରଙ୍କ କ୍ଷେତ୍ରରେ ତାହାର ପୁନରାବୃତ୍ତି ଘଟି ନାହିଁ । ବରଂ ସେ ହୋଇଛନ୍ତି, ତତ୍କାଳୀନ ବୋଦ୍ଧା / ରସପିପାସୁ ପାଠକଶ୍ରେଣୀର ହୃଦୟପୁର / ମନର

ଜଣେ ଅପଣାର କବି । ତାଙ୍କ କବିତ୍ୱରେ ପ୍ରତିବାଦର ସାମାନ୍ୟତମ ଇଙ୍ଗିତ ମଧ୍ୟ ଦେଖାଯାଇ ନାହିଁ । ତେଣୁ ଫକୀରମୋହନ ତାଙ୍କୁ ସ୍ମରଣ କରି କହିଛନ୍ତି;

"ବରପାଲି ଦେଶେ ଅଛି ଗଙ୍ଗାଧର ମେହେର,
ତାହାର କବିତା ପଢ଼ିଲିଣି ଢେର ଢେର,
କବିତା ଗୁଡ଼ିକ ପଢ଼ି ମନ ମାତିଯାଏ,
ଆଉ ସେ ଲେଖିବ କିଛି ବାଟ ଚାହିଁଥାଏ—"

[ ଉତ୍କଳ ଭ୍ରମଣ : ଫକୀରମୋହନ ଗ୍ରନ୍ଥାବଳୀ — ପୃ. ୨୨୨ ]

ଦୁର୍ଲଭ-ପ୍ରତିଭା ଗଙ୍ଗାଧରଙ୍କ ଜନ୍ମସ୍ଥଳୀ ହିସାବରେ ସମ୍ବଲପୁରର "ବରପାଲି ଦେଶ" ଆଜି ପ୍ରତ୍ୟେକ ଓଡ଼ିଆ-ପ୍ରାଣ ବ୍ୟକ୍ତିର ତୀର୍ଥସ୍ଥଳୀ । ଏକ ଅନନ୍ୟବ୍ୟକ୍ତିଙ୍କ ପ୍ରତି ଶ୍ରଦ୍ଧା ଜ୍ଞାପନରେ / ତାହାର ସମ୍ପର୍କିତ ନିର୍ଦ୍ଦିଷ୍ଟ ବସ୍ତୁପ୍ରତି ସମ୍ମାନ ପ୍ରଦର୍ଶନରେ ଜାତିର ଜୀବନର ମହତ୍ତ୍ୱ ହିଁ ପ୍ରକଟିତ ହୋଇଥାଏ । ବ୍ୟକ୍ତି ସ୍ୱାର୍ଥର ସଙ୍କୀର୍ଣ୍ଣତା / ହୀନମନ୍ୟତା କଟିଯାଇ ଜାତି ସ୍ୱୟଂ ଅମୃତ-ବିଳାସୀ ହୋଇଯାଏ । ମହତ୍-ବ୍ୟକ୍ତିର ପଦାଙ୍କ ଅନୁସରଣର ପ୍ରୟୋଜନ ତେଣୁ ସେତିକିମାତ୍ର । ଏ ସମ୍ପର୍କରେ ଇଂରେଜ କବି ଲଙ୍ଗ୍‌ଫେଲୋ (Long Fellow)ଙ୍କ ଉକ୍ତି ସ୍ମରଣୀୟ ।*

ଗଙ୍ଗାଧର ଯେ ବହୁଦିଗରୁ ଅନନ୍ୟ ଥିଲେ / ସାଧାରଣ ଜୀବନଠାରୁ ବହୁଧାରାରେ ତାଙ୍କର ଜୀବନ ସ୍ରୋତ ଯେ ପୃଥକ ପ୍ରବାହିତ ଥିଲା, ଏହା ଆଜି ଆଉ ଆଲୋଚନାର ଅପେକ୍ଷା ରଖେ ନାହିଁ । କେବଳ ଏକନିଷ୍ଠତାକୁ ସମ୍ବଳ କରି ବହୁ ପ୍ରତିକୂଳ ପରିବେଶ ମଧ୍ୟରେ ସଂଗ୍ରାମଶୀଳ ଏହି ଦୁର୍ଲଭ ବ୍ୟକ୍ତିଙ୍କ ପ୍ରତି ତେଣୁ ବହୁ ଶ୍ରଦ୍ଧା ଓ ସମ୍ମାନ ଅର୍ପିତ ହେବା ସ୍ୱାଭାବିକ ।

## ଜନ୍ମ : ଶୈଶବ :

ପଙ୍କରୁ ପଦ୍ମ / ଶାମୁକାରୁ ମୁକ୍ତାଭଳି ଅନେକ କ୍ଷେତ୍ରରେ ସାଧାରଣ ହିଁ ଅସାଧାରଣର ସ୍ରଷ୍ଟା ହୋଇଥାଏ । ଗଙ୍ଗାଧରଙ୍କ ଜନ୍ମ କାହାଣୀରୁ ଏହି ମନ୍ତବ୍ୟର ସମର୍ଥନ ମିଳିଥାଏ । ଦାରିଦ୍ର୍ୟ-ପ୍ରପୀଡ଼ିତ ଉତ୍କଳର ଅଜସ୍ର ନିମ୍ନମଧ୍ୟବିତ୍ତ ପରିବାର ଭଳି ବରପାଲିର ସେଇ ରତ୍ନଗର୍ଭ ପରିବାର ମଧ୍ୟ ଏକତମ, ଯେଉଁଠି ଜନ୍ମିତ ଥିଲା ଗଙ୍ଗାଧରଙ୍କ ଭଳି ଏକ ଦୁର୍ଲଭ ରତ୍ନ । ସେଇ ପରିବାର ଜାତିରେ ଭୁଲିଆ ଥିଲେ ଏବଂ ବୃତ୍ତି ରୂପେ ବସ୍ତ୍ର-ବୟନକୁ ଗ୍ରହଣ କରି ନେଇଥିଲେ । ସେଠାରେ ଗଙ୍ଗାଧରଙ୍କର ଜନ୍ମହୁଏ ୧୮୬୨ ମସିହା ଅଗଷ୍ଟ ୯ ତାରିଖ ଦିନ । ସୌଭାଗ୍ୟକୁ ସେଦିନ ହୋଇଥାଏ ଶ୍ରାବଣ-ପୂର୍ଣ୍ଣିମା । ପୂର୍ଣ୍ଣିମାର ଜାତକମାନେ ଯେ ଭବିଷ୍ୟତରେ ବହୁ ସମ୍ମାନର ଅଧିକାରୀ ହୋଇଥାଆନ୍ତି, ଏହା ଗଙ୍ଗାଧରଙ୍କ ଜୀବନରେ ପ୍ରମାଣିତ ହୋଇଥିଲା । ଗଙ୍ଗାଧର ନିଜର ଅସମ୍ପୂର୍ଣ୍ଣ

---

* "Lives of all great men remind us,
We can make our lives sublime,
And departing shall leave behind us,
Foot prints on the sands of time."

ଆତ୍ମଜୀବନୀରେ ଆପଣାର ପରିବାର ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିଅଛନ୍ତି । * ତାହାର ଅନୁସରଣରେ ନିମ୍ନମତେ ଗଙ୍ଗାଧରଙ୍କର ବଂଶଲତିକା ପ୍ରସ୍ତୁତ କରାଯାଇପାରେ ।




କବିପରିବାରର ଅନ୍ୟାନ୍ୟ ସଦସ୍ୟମାନଙ୍କ ସମ୍ପର୍କରେ ଆତ୍ମଜୀବନୀରେ କୌଣସି ଉଲ୍ଲେଖ ନ ଥିବାରୁ ସେ ବିଷୟରେ ଅଧିକ ଜାଣିବା ସମ୍ଭବପର ହୁଏନାହିଁ । କବି-ମାତାଙ୍କ ନାମ ହେଉଛି ସେବତୀ । ନିଜ ମାତାଙ୍କ ସମ୍ପର୍କରେ କବି କିଛି ଉଲ୍ଲେଖ କରି ନ ଥିଲେ ହେଁ, ଅନୁମାନ କରାଯାଇ ପାରେ ଯେ ଉତ୍କର୍ଷ ଏକ ମହିଳା ନିତାନ୍ତ ଧୀର ସ୍ୱଭାବା / ସରଳା ଏବଂ ଧର୍ମପ୍ରାଣା ଥିଲେ । ମାତାର ପ୍ରଭାବ ଶିଶୁର ଭବିଷ୍ୟତ ଜୀବନକୁ ଗଢ଼ିଥାଏ । ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱ ଗଠନରେ ତେଣୁ ତାହାଙ୍କର ମାତାଙ୍କର ଅବଦାନ ଯେ ଉଲ୍ଲେଖଯୋଗ୍ୟ ଏହା ଅନୁମାନ କରିବା କଷ୍ଟସାଧ୍ୟ ନୁହେଁ । କବିପିତା ଚୈତନ୍ୟ ବହୁଗୁଣର ଅଧିକାରୀ ଥିଲେ । ଚୈତନ୍ୟଙ୍କ ପିତା ସଦାଶିବ ଗ୍ରାମ ମଧ୍ୟରେ ନିଜର ପ୍ରୟୋଜନୀୟତା ପ୍ରତିଷ୍ଠିତ କରିପାରିଥିଲେ । କବି ନିଜ ପିତାମହଙ୍କ ବିଷୟରେ ନିମ୍ନମତେ ମନ୍ତବ୍ୟ ପ୍ରଦାନ କରିଅଛନ୍ତି । $ ଚୈତନ୍ୟ ନିଜର 'ପୈତୃକ ବିଦ୍ୟା' ଓ 'ବ୍ୟବସାୟ'ରେ ଅଭ୍ୟସ୍ତ ଥିଲେ ବୋଲି ଜଣାଯାଏ ।

---

* "ମୋର ଅତି ପ୍ରାଚୀନ ପୂର୍ବପୁରୁଷମାନେ ସମ୍ବଲପୁର ସହରରେ ବାସ କରୁଥିବାର କିମ୍ବଦନ୍ତୀ ଶୁଣିଥିଲି । ମୋର ପ୍ରପିତାମହ କେଶବ ମେହେର ବରପାଲିରେ ଥିଲେ । ତାଙ୍କର ପାଞ୍ଚ ପୁଅ । X X X ମୋର ପିତାମହ ସେହି ପାଞ୍ଚ ଭାଇର ସର୍ବ କନିଷ୍ଠ । ତାଙ୍କର ନାମ ଥିଲା ସଦାଶିବ । X X ସଦାଶିବଙ୍କର ଦୁଇପୁଅ । ମୋର ପିତା ଚୈତନ୍ୟ ଜ୍ୟେଷ୍ଠ ଥିଲେ । X X X ସନ ୧୮୬୨ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୯ ତାରିଖ ଶ୍ରାବଣ ପୂର୍ଣ୍ଣିମା ଶନିବାରରେ ମୋର ଜନ୍ମ ହୁଏ ।"

[ ଆତ୍ମଜୀବନୀ - ଗଙ୍ଗାଧର ଗ୍ରନ୍ଥାବଳୀ - ପ୍ରଥମ ସଂସ୍କରଣ - ପୃ ୪୦୭ ]

$ "ବସ୍ତ୍ର ବୟନ ତାଙ୍କର ମୁଖ୍ୟ କର୍ମ ଓ ବୈଦ୍ୟପଣ ଗୌଣ କର୍ମ ଥିଲା । ଖଡ଼ି ଦେଖିବାରେ, ଜ୍ୟୋତିଷମତେ ଶୁଭାଶୁଭ ବିଚାର ଗଣନାରେ, ଯାତ୍ରାର ଦିନ ଲଗ୍ନାଦି ନିର୍ଣ୍ଣୟ କରିବାରେ ମଧ୍ୟ ସେ ଅଭ୍ୟସ୍ତ ଥିଲେ ।"

[ ଆତ୍ମଜୀବନୀ - ଗଙ୍ଗାଧର ଗ୍ରନ୍ଥାବଳୀ - ପୃ. ୪୦୭ ]

ପୂର୍ବରୁ କୁହାଯାଇଛି ଯେ, କବିଙ୍କର ଜନ୍ମ ଏକ ଭୁଲିଆ ପରିବାରରେ । ଭୁଲିଆମାନେ ମୂଳତଃ ଏକ ବ୍ୟବସାୟୀ ଜାତି । ବସ୍ତ୍ରବୟନ ବ୍ୟତିରେକେ ଧାନ ଓ ଟଙ୍କା ଋଣ ଦେବାର, ଗୋଧନ ବୃଦ୍ଧି କରିବାର, ବର୍ଣ୍ଣଲ୍‌ବିକା [redacted] ଭୁଲିଆମାନଙ୍କ ବ୍ୟବସାୟର ଗୋଟିଏ ପ୍ରଧାନ ଅଙ୍ଗ ରୂପେ ବିବେଚିତ ହୋଇଥିଲା । କେତେକ ସମାଲୋଚକ 'ଭୁଲିଆ'ମାନଙ୍କୁ ଏକ ଅସ୍ପୃଶ୍ୟ ଜାତି ବୋଲି ମନ୍ତବ୍ୟ ଦେଇଥିବାର ଆମେ ଜାଣୁ । ମାତ୍ର ଏହି ମତ ସର୍ବଥା ଭ୍ରମାତ୍ମକ । ଏକ 'ସ୍ୱତନ୍ତ୍ର ଉପଭାଷାର' ବ୍ୟବହାର କରୁଥିବା, ସାଢ଼େ ତିନିଶତ ବର୍ଷର ଐତିହ୍ୟସମ୍ପନ୍ନ ଏହି ଜାତି କଦାପି ଅସ୍ପୃଶ୍ୟ ନୁହେଁ, ଏହା ଆମେ ବ୍ୟକ୍ତିଗତ ଅନୁଭବରୁ ପ୍ରକାଶ କରିପାରୁଁ । ଶ୍ରୀ ରାଘବ ମିଶ୍ରଙ୍କ ମନ୍ତବ୍ୟ ମଧ୍ୟ ଆମ ମତର ସମର୍ଥନ କରିବ । *

କବିଙ୍କ ଶୈଶବ ସମ୍ପର୍କରେ 'ଆତ୍ମଜୀବନୀ'ରୁ ଯେଉଁ ସଂକ୍ଷିପ୍ତ ସୂଚନା ମିଳିଥାଏ, ସେଥିରୁ ଜଣାଯାଏ ଯେ, ସେ ବାଲ୍ୟକାଳରୁ ହିଁ ଅତ୍ୟନ୍ତ ଆଧ୍ୟାତ୍ମିକ ପରିବେଶରେ ବଢ଼ି ଉଠିବାର ସୁଯୋଗ ଲାଭ କରିଥିଲେ । ଅବଶ୍ୟ ଧର୍ମ ତତ୍କାଳୀନ ଜନଜୀବନର ମୁଖ୍ୟ ନିୟାମକ ଥିଲା । ଏହାର ବ୍ୟତିକ୍ରମ ଯେ ନ ଥିଲା, ଏହା କୁହାଯାଇ ପାରିବ ନାହିଁ । ସୌଭାଗ୍ୟ ବଶତଃ, ଗଙ୍ଗାଧରଙ୍କ ପରିବାରରେ ଧର୍ମର ଚର୍ଚ୍ଚା ଥିଲା । ପ୍ରତ୍ୟୁଷରେ ଶଯ୍ୟାତ୍ୟାଗ/ସ୍ନାନ, ଜଗନ୍ନାଥ ଦର୍ଶନ ପ୍ରଭୃତିରେ କବି ବାଲ୍ୟକାଳରୁ ଅଭ୍ୟସ୍ତ ଥିଲେ★ । ଏହାର ପ୍ରଭାବ ତାଙ୍କର ପରବର୍ତ୍ତୀ ଜୀବନରେ/ସମସ୍ତ ରଚନାରେ ପଡ଼ିଥିବାର ଦେଖିବାକୁ ମିଳେ ।

ତତ୍କାଳୀନ ସାଧାରଣ ରୀତିରେ ୭/୮ ବର୍ଷ ବୟସରେ କବିଙ୍କର ଶିକ୍ଷାରମ୍ଭ ହୋଇଥିଲା । ଭାଗବତ ପାଠ/କିଛି କିଛି ଛାନ୍ଦ ଗ୍ରନ୍ଥର ଅନୁଶୀଳନ ଓ ଗଣିକିଆ ଅଧ୍ୟୟନରେ ତତ୍କାଳୀନ ଚାଟଶାଳୀ ଶିକ୍ଷା ସମାପ୍ତ ହୋଇଥିଲା । ପ୍ରଥମେ ନିଜର ଜଣେ ଜ୍ଞାତିଙ୍କଠାରୁ ଓ ପରେ ନିଜ ପିତାଙ୍କଠାରୁ ଅଧ୍ୟୟନର ସୁଯୋଗ ଲାଭକରି କବି 'ରସପଞ୍ଚାଧ୍ୟାୟ' ନାମରତ୍ନଗୀତା, ଭାଗବତ, ମଥୁରାମଙ୍ଗଳ, ୨୫ ଖଣ୍ଡ ଗଣିକିଆ ପ୍ରଭୃତି ପଠନର ସୁଯୋଗ ଲାଭ କରିଥିଲେ ।

ପିତାଙ୍କ ସହାୟତାରେ କବିଙ୍କର ବିଦ୍ୟାଶିକ୍ଷା କିଛି ବାଟ ଅଗ୍ରସର ହେବା ପରେ ପାରିବାରିକ ଜଞ୍ଜାଳ କବିଙ୍କର ଅଧ୍ୟୟନକୁ ସାମୟିକଭାବରେ ସ୍ଥଗିତ ରଖିଥିଲା । ସଂସାରରେ ଏମିତି ତ ହୁଏ । ପରିବାରର ପ୍ରତ୍ୟାଶା ନିକଟରେ ଅନେକ ସମ୍ଭାବନା ନତି ସ୍ୱୀକାର କରେ । ମଉଳିଯାଏ ପ୍ରସ୍ଫୁଟନୋନ୍ମୁଖୀ ଅସୁମାରି କଳିକା । ତେବେ ପ୍ରକୃତ ପ୍ରତିଭା କେବେ କୌଣସି ପ୍ରତିକୂଳ ଅବସ୍ଥା ସହିତ ସାଲିସ୍ କରେ ନାହିଁ । ଏକ ଅନମନୀୟ/ଦୁର୍ବାର ଗତିରେ ସେ ବହିଯାଏ, ଅମଡ଼ା ମାଡ଼ି/ପାଷାଣ ଗାତ୍ର ଭେଦ କରି । ଗଙ୍ଗାଧରଙ୍କ କ୍ଷେତ୍ରରେ ଏହାର ସତ୍ୟତା ଲକ୍ଷିତ ହୁଏ । ବାଲ୍ୟ-ବିବାହ ଜନିତ ଋଣର ଦୁର୍ବହବୋଝ, ଏକ

---

* ଅଜକୁ ପ୍ରାୟ ତିନିଶତାଧିକ ବର୍ଷ ହେବ ସମ୍ବଲପୁର ଜିଲ୍ଲା ଅନ୍ତଃପାତୀ ବରପାଲି ଗ୍ରାମରେ ଏ ଅଞ୍ଚଳର ସର୍ବପ୍ରଧାନ ବସ୍ତ୍ର ଶିଳ୍ପୀ ଭୁଲିଆ ଜାତୀୟ ଲୋକେ ବହୁ ସଂଖ୍ୟାରେ ପୁରୁଷାନୁକ୍ରମେ ବାସକରି ଆସୁଅଛନ୍ତି । ଭୁଲିଆମାନେ ସର୍ବପ୍ରଥମେ ଐତିହାସିକ ଗଡ଼ଅମ୍ବର ରାଜ୍ୟସ୍ଥ ହୁମେରୁ (ଓଡ଼ିଆର ଚୌହାନ ରାଜବଂଶର ଆଦିପୁରୁଷ ରମାଇ ଦେଓଙ୍କ ପିତା ) ନାମଧେୟ ଜଣେ ଚୌହାନ ନରପତିଙ୍କ ଗହଣରେ ଏ ଦେଶକୁ ଆସିଥିବାର କିମ୍ବଦନ୍ତୀ ଅଛି । ବଂଶ ବୃଦ୍ଧି ସଙ୍ଗେ ସଙ୍ଗେ ଏମାନେ ଇଦାନୀଂ ଖଡ଼ିଅଲରୁ ମଧ୍ୟ ଓଡ଼ିଶାର ଆଠମଲ୍ଲିକ ପର୍ଯ୍ୟନ୍ତ ବିସ୍ତୃତ—" ମେହେର କବି

★ ବାଲ୍ୟକାଳରେ ପିତାମହଙ୍କ ସଙ୍ଗେ ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନକରି ପ୍ରତ୍ୟହ ଜଗନ୍ନାଥ ଦର୍ଶନରେ ଯାଉଥିଲି ଓ ପିତୃବ୍ୟଙ୍କ ସଙ୍ଗେ ସନ୍ଧ୍ୟା ସମୟରେ ଜଗନ୍ନାଥ ମନ୍ଦିରରେ ସଙ୍କୀର୍ତ୍ତନରେ ଯୋଗ ଦେଉଥିଲି । ××× ଶୈଶବକାଳରେ ମଧ୍ୟ ମୁଁ ବଡ଼ ଧୀର ସ୍ୱଭାବ ଥିଲି ଏବଂ ଗୋଟିଏ ମୃଦଙ୍ଗ ଧରି ସଙ୍କୀର୍ତ୍ତନବାଲାଙ୍କ ସଙ୍ଗେ ନାଚଆଏଁ—

[ ଆତ୍ମଜୀବନୀ—ଗଙ୍ଗାଧର ଗ୍ରନ୍ଥାବଳୀ ପୃ. ୪୦୭/୪୦ ]

ବିରାଟ ଯୁକ୍ତ-ପରିବାରର ଶ୍ରମ-ଷର୍ପିଷ୍ଟ ଅବସ୍ଥା ତାହାଙ୍କର ଅଧ୍ୟୟନ କ୍ଷେତ୍ରରେ ସାମୟିକ ଅଚଳଅବସ୍ଥା ସୃଷ୍ଟି କରିଥିଲା ସତ୍ୟ—ମାତ୍ର କବି ସେଥିରେ ଅବଦମିତ ହୋଇ ନ ଥିଲେ । କେବଳ ସୁଯୋଗର ଅପେକ୍ଷାରେ ଥିଲେ । ସେଇ ସୁଯୋଗ ତାଙ୍କୁ ମିଳିଲା, ଯେତେବେଳେ 'କଟକ ଜିଲ୍ଲା ଅନ୍ତର୍ଗତ ମୂକବସନ୍ତ ନିବାସୀ ପଣ୍ଡିତ ଶ୍ରୀ ଘନଶ୍ୟାମ ମିଶ୍ର ବରପାଲି ସ୍କୁଲକୁ ଶିକ୍ଷକ ହୋଇ ଆସିଲେ ।

ସମ୍ଭବତଃ ୧୮୭୫ ମସିହାରେ (ଲକ୍ଷ୍ୟ କରିବାର କଥା ଯେ ଏହି ସମୟକୁ ରାଧାନାଥଙ୍କ ପ୍ରତିଭାର ଉନ୍ମେଷ ଘଟିସାରିଲାଣି ଏବଂ ରାଧାନାଥଙ୍କ ଲେଖନୀରୁ 'ମେଘଦୂତ', 'କବିତାବଳୀ'ର କତିପୟ କବିତା ତଥା 'ବିବେକୀ' ପ୍ରଭୃତିର ସୃଷ୍ଟି ହୋଇସାରିଲାଣି) ତେରବର୍ଷ ବୟସରେ ସରକାରୀ ବାଧ୍ୟବାଧକତାରେ କବିଙ୍କର ଅଧ୍ୟୟନ ପୁନର୍ବାର ଆରମ୍ଭ ହେଲା । ସ୍କୁଲରେ 'ସୀତାବନବାସ' (ଈଶ୍ୱରଚନ୍ଦ୍ର ବିଦ୍ୟାସାଗର କୃତ ମୂଳ ବଙ୍ଗଳା ରଚନାର ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ କୃତ ଓଡ଼ିଆ ଅନୁବାଦ) ଏବଂ ଶ୍ରୀ ଘନଶ୍ୟାମ ମିଶ୍ର ପ୍ରଣୀତ 'ବର୍ଣ୍ଣ-ପରିଚୟ' ତଥା ଗଣିତର ସାଧାରଣ କେତେକ ସୂତ୍ର ପ୍ରଭୃତିର ଶିକ୍ଷା ଦିଆଯାଉଥିଲା । ପ୍ରଥମ ଶ୍ରେଣୀରେ ମାତ୍ର ଛଅମାସ ଅଧ୍ୟୟନ କରିବା ପରେ କବି ୨ୟ ଶ୍ରେଣୀକୁ ଉନ୍ନୀତ ହୋଇଥିଲେ ଏବଂ ଏହି ସମୟକୁ ତାଙ୍କର ବୟସ ପ୍ରାୟ ୧୪ ବର୍ଷ ହୋଇ ଥିବାର ଅନୁମାନ କରାଯାଏ । ୨ୟ ଶ୍ରେଣୀରେ ପୁନର୍ବାର ଛ' ମାସ । ବୋଧୋଦୟ ଓ ଗଣିତ ମିଶ୍ରଯୋଗ ପ୍ରଭୃତି ଶିକ୍ଷାର ଫାଙ୍କେ ଫାଙ୍କେ ପିତାଙ୍କୁ ବସ୍ତ୍ରବୟନରେ ସାହାଯ୍ୟ କରିବା ଭିତରେ ସମୟ ଶେଷ ହେଲା । ତା'ପରେ ତୃତୀୟ ଶ୍ରେଣୀ । ସେଠାରେ ଛ' ମାସ ଭିତରେ ସାହିତ୍ୟ ସ୍କୁଲପାଠ ୧ମ ଭାଗ, ଇତିହାସ ୨ୟ ଭାଗର ଅଧାଂଶ, ଭୂଗୋଳ ସୂତ୍ରରୁ ମଧ୍ୟ ପ୍ରଦେଶ ଓ ମଧ୍ୟପ୍ରଦେଶର ନକ୍ସା (ସମ୍ବଲପୁର ସେ ସମୟରେ ମଧ୍ୟ ପ୍ରଦେଶର ଅନ୍ତର୍ଭୁକ୍ତ ଥିବାରୁ ଏହି ବ୍ୟବସ୍ଥା) ଇତ୍ୟାଦି ଅଧ୍ୟୟନ । ଏହିଭଳି ୪ର୍ଥ ଶ୍ରେଣୀରେ ଛ'ମାସ ଏବଂ ପଞ୍ଚମ ଶ୍ରେଣୀରେ ଆଉ ଛ'ମାସ ମଧ୍ୟରେ କବିଙ୍କର ବିଦ୍ୟାଶିକ୍ଷା ଶେଷ ହୋଇଥିଲା । ଏହି ଅଧ୍ୟୟନ କାଳରେ କବି ସ୍କୁଲପାଠ, କାଦମ୍ବରୀର ପୂର୍ଣ୍ଣ ଅନୁବାଦ ଏବଂ ଗଣିତର କେତେକ ନୂତନ ସୂତ୍ର ତଥା ବ୍ୟାକରଣ ଇତ୍ୟାଦି ଶିକ୍ଷା କରିଥିଲେ । କିଛିଦିନ ବେସରକାରୀ ଭାବରେ କବିଙ୍କୁ ଷଷ୍ଠ ଶ୍ରେଣୀରେ ପଢ଼ିବାର ସୁଯୋଗ ଅବଶ୍ୟ ମିଳିଥିଲା ଏବଂ ଏହି ଅବସରରେ ସେ ରଘୁବଂଶ, ବୀଜଗଣିତ ପ୍ରଭୃତି ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ମାତ୍ର ଶିକ୍ଷକ ଅଭାବରେ ଏହି କ୍ଲାସଟି ବନ୍ଦ ହୋଇଯିବାରୁ କବିଙ୍କୁ ଅଧ୍ୟୟନ ବନ୍ଦ ରଖିବାକୁ ପଡ଼ିଥିଲା । ତେଣୁ ଅଧ୍ୟୟନର ଦ୍ୱିତୀୟ ପର୍ଯ୍ୟାୟ ଶେଷହେଲାବେଳକୁ କବି ଷୋହଳ ବର୍ଷର ତରୁଣ ।

ମାତ୍ର ସାତ/ଆଠ ବର୍ଷ ମଧ୍ୟରେ କବିଙ୍କର ଶିକ୍ଷା ସମାପ୍ତ ହୋଇଥିଲା । ସାଧାରଣ ଜ୍ଞାନାର୍ଜନ ନିମନ୍ତେ ଏହି ସମୟ ପର୍ଯ୍ୟାପ୍ତ ନ ହେଲେ ହେଁ ଏହାରି ମଧ୍ୟରେ ହିଁ ଭବିଷ୍ୟତ୍-କବି-ପ୍ରତିଭା ଉନ୍ମେଷର ବୀଜ ଅଙ୍କୁରିତ ହୋଇଥିଲା । ଉଲ୍ଲେଖ୍ୟ ସମୟ ମଧ୍ୟରେ କବି ଅଧ୍ୟୟନ ନିମନ୍ତେ ଉପଯୁକ୍ତ ଅର୍ଥ ବ୍ୟବସ୍ଥା ତ ଦୂରର କଥା / ସାମାନ୍ୟ ପରିବେଶ ମଧ୍ୟ ପାଇ ନ ଥିଲେ । ସମଗ୍ର ଅଧ୍ୟୟନ କାଳରେ ପୁସ୍ତକ କ୍ରୟରେ ତାହାଙ୍କର ପ୍ରାୟ ଦୁଇଟଙ୍କା ମାତ୍ର ବ୍ୟୟ ହୋଇଥିଲା । ପିତା ବୃଦ୍ଧ ହିଁ ନ ଥିଲେ, ଜଣେ ଜ୍ଞାନୀ ପଣ୍ଡିତ ପୁତ୍ର । ବରଂ ପାରିବାରିକ ଜଞ୍ଜାଳରୁ ମୁକ୍ତିଲାଭ ନିମନ୍ତେ ସେ କାମନା କରୁଥିଲେ ପୁତ୍ରର ଆଶୁ ସହାୟତା—ତେଣୁ କବି ଯଥାଶୀଘ୍ର କୌଳିକ କର୍ମରେ ବ୍ୟୁତ୍ପତ୍ତି ଲାଭ କଲେ ହିଁ ତାଙ୍କର ପୂର୍ଣ୍ଣ ବୟସରେ [illegible] ଉଚ୍ଚାକାଙ୍କ୍ଷାର ନିବୃତ୍ତି ଘଟିବ ବୋଲି, ସେ ବିଚାରି ଥିଲେ । କବିଙ୍କର ଜ୍ଞାନାର୍ଜନର ସ୍ପୃହା ଏହିଭଳି ପ୍ରତିକୂଳତା ମଧ୍ୟରେ ବିଳୟ ଭଜିଥିଲା । ଏ ଦୃଷ୍ଟିରୁ ବିଚାର କରିବାକୁ ଗଲେ ଫକୀର ମୋହନଙ୍କ ସହିତ ତାଙ୍କ ଅବସ୍ଥାର ତୁଳନା କରାଯାଇପାରେ । ମାତ୍ର ଫକୀର ମୋହନ ସହରର ଅଧିବାସୀରୂପେ

ପୂର୍ଣ୍ଣ ତତ୍କାଳୀନ ଶିକ୍ଷା / ସଂସ୍କୃତ ଜଗତରେ ଏକ ପ୍ରଧାନ ପୀଠ ବାଲେଶ୍ୱରରେ ଥାଇ ଯେଉଁ ସୁଯୋଗ ପାଇଥିଲେ, ସମ୍ବଲପୁରର ନିପଟ ମୋଫସଲ ବରପାଲିର ଏକ ଦରିଦ୍ର ତୁଳିଆ ସେ ସୁଯୋଗ ପାଆନ୍ତେ କପରି ? ବରଂ ରାଧାନାଥ ଏ ଦିଗରୁ ଅତ୍ୟନ୍ତ ସୌଭାଗ୍ୟବାନ୍ ଥିଲେ । ଜଣେ ଶିକ୍ଷାପ୍ରେମୀ ପିତାର ସଜାଗ ଦୃଷ୍ଟି ତଳେ ରହି ସେ ଶୁଦ୍ଧାବସ୍ଥାର ପ୍ରତ୍ୟେକ ମୁହୂର୍ତ୍ତକୁ ଉପଯୁକ୍ତ ଭାବରେ କାର୍ଯ୍ୟରେ ଲଗାଇବାର ସୁଯୋଗ ପାଇଥିଲେ । ତେଣୁ ପ୍ରାଚ୍ୟ / ପାଶ୍ଚାତ୍ୟ ଉଭୟ ଭାଷାର ସାହିତ୍ୟ-ସିଂହଦ୍ୱାର ତାଙ୍କ ନିମନ୍ତେ ସହଜରେ ଉନ୍ମୁକ୍ତ ହୋଇଯାଇଥିଲା ।

ଏତେକ ଲେଖିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି, କବି-ପ୍ରତିଭା ପ୍ରସ୍ଫୁଟର ସମ୍ପୂର୍ଣ୍ଣ ଅନାଡ଼ମ୍ବର / ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଦିଗଟିକୁ ପାଠକମାନଙ୍କ ନିକଟରେ ଉପସ୍ଥିତ କରିବା । ପାରିବେଶିକ ପ୍ରତିକୂଳତା କିନ୍ତୁ କବିମନର ଅଧ୍ୟୟନ ସ୍ପୃହାରେ କୌଣସି ବାଧା ସୃଷ୍ଟି କରିପାରି ନାହିଁ । ବରଂ କବି ପଢ଼ି ଚାଲିଛନ୍ତି; ଯାହା ପାଇଛନ୍ତି, ଯେଉଁଠୁ ପାଇଛନ୍ତି । ଅନ୍ୟଠାରୁ ବୁଝିଆଣି, ନିଜର ସାମାନ୍ୟ ସମ୍ବଳ ବିନିଯୋଗରେ କିଛି କିଣି ନିଜ ଜ୍ଞାନର ଭଣ୍ଡାର ବିସ୍ତୃତ କରିଚାଲିଛନ୍ତି । ଏ ସମ୍ପର୍କରେ କବିଙ୍କର ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ ।* ବାହାରୁ କିଛି କେଉଁଠାରୁ ଆୟ ହେଲେ ସେ ସମସ୍ତକୁ ପୁସ୍ତକ କିଣିବାରେ ବ୍ୟୟ କରିବାର ଏହି ଅଭ୍ୟାସ ପରବର୍ତ୍ତୀ ଜୀବନରେ ମଧ୍ୟ ଅତୁଟ ଥିବାର ଜଣାଯାଏ ।$ ଶ୍ରୀ ବ୍ରଜମୋହନ ପଣ୍ଡା ଦାରିଦ୍ର୍ୟ ପ୍ରପୀଡ଼ିତ ଗଙ୍ଗାଧରଙ୍କୁ ଚିନ୍ତାମୁକ୍ତ କରିବା କାମନାରେ ନିଜର ସର୍ବସ୍ୱ ତାଙ୍କୁ ଅର୍ପଣ କରିବାର ଏକ ପ୍ରସ୍ତାବ ପଠାଇଥିଲେ । ଗଙ୍ଗାଧର ଏଥି ନିମନ୍ତେ ତାହାଙ୍କୁ ଅଜସ୍ର କୃତଜ୍ଞତା ଜଣାଇ ଶ୍ରୀ ପଣ୍ଡାଙ୍କ ଠାରୁ ପ୍ରାପ୍ତ ସମସ୍ତ ଅର୍ଥକୁ ସାହିତ୍ୟିକ ଖର୍ଚ୍ଚରେ ବିନିଯୋଗ କରିବେ ବୋଲି ତାଙ୍କ ନିକଟକୁ ଲେଖିଥିଲେ ।☆

ଏହି ଅବସ୍ଥାରେ କବିଙ୍କର ଶୁଦ୍ଧଜୀବନର ଉଷ୍ଣପୂ ପର୍ଯ୍ୟାୟ ଆରମ୍ଭ ହୋଇଥିଲା । ସେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ, ମାତ୍ର କୌଣସି ବିଧିବଦ୍ଧ ପ୍ରମାଣ ପତ୍ର ହାସଲ କରି ନଥିଲେ । ତେଣୁ ଯୁବାବସ୍ଥାରେ ପୁନର୍ବାର ଶୁଦ୍ଧତ୍ୱ ବରଣକରି ୧୮୮୨ ମସିହାରେ ସମ୍ବଲପୁର ଯାଇ ଭର୍ନାକୁଲାର ସ୍କୁଲ ପରୀକ୍ଷା ଦେଇ ସେଥିରେ କୃତକାର୍ଯ୍ୟ ହୋଇଥିଲେ । ଏଥି ନିମନ୍ତେ ତାଙ୍କୁ ଏକ "ଦେଶୀୟ ପାଠଶାଳା"ର

---

* ସମସ୍ତ ଦିନ ଶ୍ରମରେ କାଳାତିପାତ କରି କେବଳ ରାତ୍ରରେ ସମୟ ପାଉଥିଲେ କିଛି ନା କିଛି ପଢ଼ୁଥାଏ । ଯାହାଠାରୁ ଯାହା ପୁସ୍ତକ ପାଏ ମାଗି ପଢ଼େ । କେବେ କେବେ ତମସୁକ ଲେଖି କିଛି କିଛି ପାଏ, ତାହା ପୁସ୍ତକ କିଣିବାରେ ବ୍ୟୟିତ ହୁଏ [ ଗଙ୍ଗାଧର ଗ୍ରନ୍ଥାବଳୀ — ପୃ. ୪୧୯ ]

$ ମୁଁ କହେଁ, ସାହିତ୍ୟ ନିମନ୍ତେ ପରଦତ୍ତ ଅର୍ଥ ମୋର ବିଳାସିତାରେ ବ୍ୟୟ କରିବା ଅଭିପ୍ରାୟ ନାହିଁ । ତାହା କେବଳ ସାହିତ୍ୟ ଉନ୍ନତିରେ ଲଗାଇ ପାରିଲେ, ସାହିତ୍ୟ ଚର୍ଚ୍ଚାରୂପ ମହାପାପର ପ୍ରାୟଶ୍ଚିତ୍ତ ହୋଇପାରନ୍ତା । [ ଗଙ୍ଗାଧର ପତ୍ରାବଳୀ — ପୃ. ୨୦୯ ]

☆ ମୋର ଲକ୍ଷ୍ମୀର ଧନ ମୋର ନିଜର ବା ମୋର ପରିବାର ବର୍ଗଙ୍କ ଖର୍ଚ୍ଚରେ ବ୍ୟୟିତ ହେବ ନାହିଁ । ଏହା ଉତ୍ତମ ରୂପେ ବିଶ୍ୱାସ କରିଥିବେ । ସେ ଧନ କେବଳ ମୋର ସାହିତ୍ୟିକ ଖର୍ଚ୍ଚରେ ଲଗାଇବି । ମୁଁ ନିଜେ ଯାହା ଅର୍ଜନ କରିବି, ତାହା ମୋର ଓ ପରିବାରଙ୍କ ଭରଣ ପୋଷଣରେ ଲଗାଇବି । [ ଗଙ୍ଗାଧର ପତ୍ରାବଳୀ — ପୃ. ୩୨ ]

ପ୍ରମାଣ ପତ୍ର ମିଳିଥିଲା । କବିଙ୍କ ଜୀବନର ଏହି ସର୍ବପ୍ରଥମ ପ୍ରସ୍ତାବନାର ଏକମାତ୍ର ଉଦ୍ଦେଶ୍ୟ ଥିଲା ସାର୍ଟିଫିକେଟ୍ ଲାଭ । ତାହା ଆଂଶିକ ଭାବରେ ସଫଳ ହୋଇଥିବାର ଜଣାଯାଏ ।

**ପରିବେଶ :**

ବିଂଶତି ବର୍ଷ ବୟଃକ୍ରମରେ କବିଙ୍କର ଛାତ୍ରାବସ୍ଥା ଶେଷ ହୋଇଥିଲା । ଏତେବେଳକୁ ଓଡ଼ିଶାରେ ଇଂରେଜ ରାଜତ୍ୱର ଅଶୀତ୍ୟୋର୍ଦ୍ଧ୍ୱ ବର୍ଷ ଅତିବାହିତ ହୋଇଯାଇଥିଲେ ହେଁ, ଇଂରେଜୀ ଶିକ୍ଷାର ଆଶାଜନକ ପ୍ରସାର ଘଟିନଥିଲା । ଅନୁମାନ କରାଯାଇପାରେ ଯେ, ୧୮୧୭ ମସିହାର ପାଇକ ଅଭ୍ୟୁତ୍ଥାନ ପରେ ଦୁର୍ଦ୍ଧର୍ଷ ଓଡ଼ିଆମାନଙ୍କୁ ଶିକ୍ଷିତ କରାଇ ଅଧିକ ସଚେତ କରାଇବା ଧାରଣା ଇଂରେଜମାନଙ୍କର ଉଦ୍ଦେଶ୍ୟ ନଥିଲା । ତେବେ ୧୮୬୬ ମସିହାର ପ୍ରଳୟଙ୍କରୀ ଦୁର୍ଭିକ୍ଷ ପରେ ଇଂରେଜମାନଙ୍କର ଏହି ମନୋଭାବ କିଛିଟା ପରିବର୍ତ୍ତିତ ହୋଇଥିବାର ଦେଖାଯାଏ । କାରଣ ତାହାପରେ ଓଡ଼ିଶାରେ ଇଂରେଜୀ ଶିକ୍ଷାର ପ୍ରସାର ନିମନ୍ତେ ସରକାରୀ ସ୍ତରରେ ଉଦ୍ୟମ ଆରମ୍ଭ ହୋଇଥିବାର ଆମ୍ଭେମାନେ ଦେଖିବାକୁ ପାଉଁ । ତେବେ ପୂର୍ବାପେକ୍ଷା ଅବହେଳା ତୁଳନାରେ ଏହି ନିମନ୍ତେ ମନୋଭାବ ପର୍ଯ୍ୟାପ୍ତ ଥିଲା ବୋଲି କୁହାଯାଇ ପାରିବ ନାହିଁ । ପୁଣି ସମ୍ବଲପୁରର ଅବସ୍ଥା ଆହୁରି ଦୟନୀୟ ଥିଲା । ମଧ୍ୟ ପ୍ରଦେଶ ସହିତ ଯୁକ୍ତଥିବାରୁ ସେଠାରେ ଓଡ଼ିଆ ଶିକ୍ଷାର ପ୍ରସାର ସମ୍ପର୍କରେ ପ୍ରଶ୍ନ ହିଁ ଉଠୁ ନଥିଲା । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିଥିଲେ ହେଁ, ତତ୍କାଳରେ ସମ୍ବଲପୁର ଇଂରେଜ ଅଧିକାରଭୁକ୍ତ ହୋଇନଥିଲା । ଏହାର ପ୍ରାୟ ଚାଳିଶ ପରେ ୧୮୪୯ ମସିହାରେ ତତ୍କାଳୀନ ଶାସକଙ୍କ ମୃତ୍ୟୁପରେ ଇଂରେଜମାନେ ସମ୍ବଲପୁର ଗ୍ରାସକରି ଶାସନ ସୌକର୍ଯ୍ୟ କାମନାରେ ଏହାକୁ ମଧ୍ୟପ୍ରଦେଶ ସହିତ ଯୁକ୍ତ କଲେ । ଓଡ଼ିଆ ହତା-ହଣ୍ଡୀ ଏହି ଅଞ୍ଚଳର ଭୂଖଣ୍ଡର ଭାଷା ଶାସନର ବେତ୍ର ଦଣ୍ଡରେ ରୋଧ କରାଯାଇ, ସେଠାରେ ହିନ୍ଦୀ ଭାଷା ଲଦି ଦିଆଗଲା । ପ୍ରବଳ ପରାକ୍ରାନ୍ତ ତଥା ଆଲୋକିତ ରାଜ୍ୟର ଅଧିବାସୀ ବ୍ରିଟିଶ୍-ଶକ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସେତେବେଳେ ବଡ଼ ସହଜ କଥା ନଥିଲା । ପୁଣି ଅନୁନ୍ନତ ସମ୍ବଲପୁର ପକ୍ଷରେ ତ ତାହା ଦିବା ସ୍ୱପ୍ନ ଥିଲା ବୋଲି ଅନୁମାନ କରାଯାଇ ପାରେ । ତଥାପି ପ୍ରତିବାଦର ଏକ କ୍ଷୀଣସ୍ୱର ନିଶ୍ଚୟ ଉତ୍ତୋଳିତ ହୋଇଥିଲା । ତେଣୁ ୧୮୫୫ ସାଲରେ ହେନେରି ରିକେଟ୍ ସାହେବ ସମ୍ବଲପୁର ଓଡ଼ିଶା ସହିତ ମିଶିଯିବା ନିମନ୍ତେ ଯୁକ୍ତିମାନ ବାଢ଼ିଥିବାର ଦେଖିବାକୁ ମିଳୁଛି ।

ସମ୍ବଲପୁର-ଅଞ୍ଚଳରେ ପୂର୍ବରୁ ଧରି କୌଣସି ପତ୍ର / ପତ୍ରିକା ନଥିଲା । ତେଣୁ ଏହି ଅଞ୍ଚଳକୁ ଓଡ଼ିଆ ଭାଷା ଲୋପ ସମ୍ବନ୍ଧୀୟ ଶାସନତାନ୍ତ୍ରିକ ଉଦ୍ୟମର କୌଣସି ବିଧିବଦ୍ଧ ପ୍ରତିବାଦ କରିପାରି ପାରି ନଥିଲା । ଦୀର୍ଘକାଳ ପରେ ୩୦-୫-୧୮୮୯ ରେ 'ନୀଳମଣି ବିଦ୍ୟାରତ୍ନ'ଙ୍କ ସମ୍ପାଦକତ୍ୱରେ 'ସମ୍ବଲପୁର ହିତୈଷିଣୀ' ପ୍ରକାଶିତ ହେବାପରେ ଏହି ବିଷୟଟି ବହୁଳ ଭାବରେ ଚର୍ଚ୍ଚିତ ହୋଇଥିଲା । 'ଓଡ଼ିଆ ଓ ନବସମ୍ବାଦ' 'ସମ୍ବଲପୁର ହିତୈଷିଣୀ'ର ସମ୍ବାଦକୁ ସମର୍ଥନ ଜଣାଇ 'ସମ୍ବଲପୁର ବିଭାଗର ପୋଲିସ ସମ୍ବନ୍ଧୀୟ କାଗଜ ପତ୍ର ଓଡ଼ିଆ ଭାଷାରେ ଲିଖିତ ନ ହୋଇ ହିନ୍ଦୀ ଭାଷାରେ ଲିଖିତ ହେବା' ହେତୁ ଯେ କେବଳ 'ସେଠାରୁ ଓଡ଼ିଆ-ଭାଷା ପ୍ରଚଳନ 'ରହିତ କଲା' ଏହି ମନ୍ତବ୍ୟ ଦେଇ 'ସମ୍ବଲପୁର ବାସୀ'ଙ୍କୁ 'ଶୀଘ୍ର ଏ ବିଷୟରେ ପ୍ରତିକାର ଲୋଡ଼ିବା'କୁ ଉପଦେଶ ପ୍ରଦାନ କରି ଅଛନ୍ତି । ( ଓଡ଼ିଆ ଓ ନବସମ୍ବାଦ — ୪ । ୬ । ୧୮୯୩ )

ଏହି 'ପ୍ରତିକାର ଲୋଡ଼ିବା'ର ସ୍ୱରୂପଟି ତତ୍କାଳୀନ ସମସ୍ତ ପତ୍ର / ପତ୍ରିକାରୁ ସହଜରେ ଧରି ପଡ଼ିଯାଇଥାଏ । ମାତ୍ର ଏଥିନିମନ୍ତେ ସରକାରୀ ସ୍ତରରେ କେବଳ ଉଦାସୀନତା ପ୍ରକାଶପାଇ ପରବର୍ତ୍ତୀ

ଢାଲରେ ସମସ୍ତ ସମ୍ବଲପୁର ଜିଲ୍ଲାରୁ ୧-୧-୧୮୯୬ ରୁ ଓଡ଼ିଆ ଭାଷା ଉଠାଇ ତତ୍ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନ କରାଯିବା ନିମନ୍ତେ ଆଦେଶ ଜାରି କରାଗଲା । ଏହି ଅବସ୍ଥା ପ୍ରାୟ ସାତବର୍ଷ ପର୍ଯ୍ୟନ୍ତ ରହି ପୁନର୍ବାର ୧-୧-୧୯୦୩ ରୁ ସମ୍ବଲପୁର ଜିଲ୍ଲାରେ ଓଡ଼ିଆ ଭାଷାର ପ୍ରଚଳନ ବ୍ୟବସ୍ଥା କରାଗଲା ଏବଂ ୧୯୦୫ ମସିହାରେ ସମ୍ବଲପୁର ଅଞ୍ଚଳ ମଧ୍ୟ ପ୍ରଦେଶରୁ ଆସି ଓଡ଼ିଶା ସହିତ ମିଶିଗଲା । ଏହାପରେ ସେଠାରେ ଓଡ଼ିଆଭାଷା ଓ ସଂସ୍କୃତିର ପୁନଃ ପ୍ରଚାର କରାଯିବାରେ ଆଉ କୌଣସି ଅସୁବିଧା ନଥିଲା ।

ସମ୍ବଲପୁର ଅଞ୍ଚଳର ତତ୍କାଳୀନ ରାଜନୈତିକ / ସାମାଜିକ ଅବସ୍ଥାର ପୃଷ୍ଠଭୂମିରେ ମେହେର-ମାନସ ଅନୁଧ୍ୟାନ କଲେ, କବିଙ୍କର ସ୍ୱଜାତି ମନୋଭାବର ସ୍ୱରୂପଟି ସହଜରେ ଚିହ୍ନିତ ହୋଇଥାଏ । ଆଲୋଚ୍ୟ ସମୟ ମଧ୍ୟରେ କବି ପ୍ରତିଭାର ଉନ୍ମେଷ ହୋଇଥିଲା ଏବଂ ୧୯୦୫ ମସିହାବେଳକୁ ସେ ରସ ରତ୍ନାକର / ଅହଲ୍ୟାସ୍ତବ / ଇନ୍ଦୁମତୀ / ଉତ୍କଳ ଲକ୍ଷ୍ମୀ / ଭାରତୀ ଭାବନା / ଉତ୍କଳ ଭାରତୀଙ୍କ ନିବେଦନ / ମହିମା / ବର୍ଷା ଚିନ୍ତ / କୀଚକ ବଧ ପ୍ରଭୃତି କାବ୍ୟ କବିତା ତଥା 'ବ' ଭେଦ / 'ଁ' ଓ ରୁ ଭେଦ / ଏହା କ ପୃଥିବୀର ଶବ୍ଦ ପ୍ରଭୃତି ପ୍ରବନ୍ଧାବଳୀ ରଚନା କରି ସାରିଥିଲେ । ପରିମାଣ ଦୃଷ୍ଟିରୁ ଏଗୁଡ଼ିକ ଉଲ୍ଲେଖ ଯୋଗ୍ୟ ନ ହେଲେ ମଧ୍ୟ ଏ ସବୁକୁ ମେହେର-ପ୍ରତିଭାର ଉନ୍ମୀଳନ-ସ୍ମାରକୀ ରୂପେ ଗ୍ରହଣ କରାଯାଇପାରେ ଏବଂ ସତ୍ୟ ସହିତ ସୌନ୍ଦର୍ଯ୍ୟର ସମ୍ମିଶ୍ରଣରେ ଗଢ଼ି ଉଠିଥିବା କଳାର ଏକ ପ୍ରମୂର୍ତ୍ତିରୂପ ତତ୍କାଳୀନ ରସପିପାସୁ ଓଡ଼ିଆ ପାଠକ ଗୋଷ୍ଠୀରେ ଗଙ୍ଗାଧରଙ୍କର କବି-ସତ୍ତାର ଏକ ଚିରନ୍ତନସ୍ଥାନ କରିନେଇଥିବାର ଦେଖାଯାଏ । ଭାରତୀ-ଭାବନା / ଉତ୍କଳ ଭାରତୀଙ୍କ ନିବେଦନ କବିତାରେ କବି ନିଜର ଜାତିପ୍ରୀତିର ସ୍ୱାକ୍ଷର ଲିପିବଦ୍ଧ କରିଥିବା ସ୍ଥଳେ 'ବ' ଭେଦ / 'ଙ୍' ଓ 'ରୁ' ଭେଦ ପ୍ରଭୃତି ପ୍ରବନ୍ଧରେ ଓଡ଼ିଆ ଭାଷାର ଉନ୍ନତି କଳ୍ପେ ବୈଜ୍ଞାନିକ ଯୁକ୍ତିମାନ ଉପସ୍ଥାପନ କରିଥିଲେ । ଭାଷା ନିମନ୍ତେ / ସଂସ୍କୃତି ଉଦ୍ଦେଶ୍ୟରେ କବି-ଚିତ୍ତର ବ୍ୟାକୁଳତାଟି ଏହି ସବୁ ରଚନାରୁ ବ୍ୟକ୍ତ ହୋଇଥାଏ ।

"ସମ୍ବଲପୁର ହିତୈଷିଣୀ"ର ପ୍ରକାଶ କବି ପ୍ରତିଭା ପ୍ରସାରଣରେ ଏକ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲା । କବିଙ୍କର ପ୍ରଥମ ରଚନାଟି ରଚନା ଅବଶ୍ୟ 'ହିତୈଷିଣୀ'ରେ ପ୍ରକାଶିତ ହୋଇନାହିଁ । କବି-ରଚନାର ଅନେକଟି କବିତା / ପ୍ରବନ୍ଧ ତଥା 'ଉତ୍କଳ ଲକ୍ଷ୍ମୀ' / 'ମହିମା'ର ସମାଲୋଚନା 'ହିତୈଷିଣୀ'ରେ ପ୍ରକାଶିତ ହୋଇଥିଲା । 'ହିତୈଷିଣୀ' ସହିତ ସମ୍ପର୍କ ସ୍ଥାପନ କରିବା ପୂର୍ବରୁ ଗଙ୍ଗାଧର କବି-ଖ୍ୟାତି ଲାଭ କରି ସାରିଥିଲେ ହେଁ ନିଜର ସାହିତ୍ୟ କର୍ମ ଯେ ଉଲ୍ଲେଖ ଯୋଗ୍ୟ କିଛି ଏବଂ ଏହାର ଯେ ଏକ ଚିରନ୍ତନ ମୂଲ୍ୟ ରହିଛି, ଏ କଥା ସଦା-ବିନମ୍ରୀ କବିଚିତ୍ତ ଧାରଣା କରିଥିଲା କିମ୍ବା ସ୍ୱୀକାର କରିବା ନିମନ୍ତେ ପ୍ରସ୍ତୁତ ନଥିଲା ।

## ମହିମାମୟ ଦାରିଦ୍ର୍ୟ :

ସମାଲୋଚନା କ୍ଷେତ୍ରରେ କବିଙ୍କର ଦାରିଦ୍ର୍ୟ ସମ୍ପର୍କରେ ବହୁ ଆଲୋଚନା କରାଯାଇ, କବିଙ୍କ ପ୍ରତି ପାଠକ ମହଲର ସହାନୁଭୂତି ଆକର୍ଷଣ କରାଯିବାର ଏକ ଚିରନ୍ତନ ଉଦ୍ୟମ କରାଯାଇଥିବାର ଆମେ ଦେଖିବାକୁ ପାଉଁ । କଳା ସହିତ ଦାରିଦ୍ର୍ୟର ଅବସ୍ଥିତି କିଛି ନୂଆ କଥା ନୁହେଁ । ବହୁ ଜ୍ଞାନୀ / ଗୁଣୀଙ୍କ ଭାଗ୍ୟରେ ଏହା ଘଟିଛି । ସେକ୍ସପିୟର / କାଳିଦାସଙ୍କ ଠାରୁ ଆରମ୍ଭ କରି ଓଡ଼ିଆକବି ସାରଳା / ଦୀନକୃଷ୍ଣ / ଫକୀରମୋହନ / ରାଧାନାଥ / ଗୋଦାବରୀଶ ପ୍ରଭୃତି

ହୋଇଛନ୍ତି ଏହାର ଜୀବିତ ଦୃଷ୍ଟାନ୍ତ । ଦାରିଦ୍ର୍ୟ ପାପ ନୁହେଁ, ପାପ ହେଉଛି ତାହାକୁ ନେଇ ଅନ୍ୟ ନିକଟରେ ଲାଞ୍ଛିତ କରିବା । ଗଙ୍ଗାଧର ଧନରେ ଦରିଦ୍ର ହୋଇପାରନ୍ତି, ମନ-ଦାରିଦ୍ର୍ୟ ତାହାଙ୍କର କେବେ ନ ଥିଲା । କବି-ପ୍ରତିଭା ଭାବ-ଦାରିଦ୍ର୍ୟରେ ସଙ୍କୁଚିତ, ଏହା କସ୍ମିନ୍ କାଳେ କୁହାଯାଇନପାରେ । ଜୀବନରେ ସମ୍ପନ୍ନହେବାର ଅନେକ ପ୍ରଲୋଭନକୁ ସେ ଅବହେଳାରେ ଏଡ଼ାଇ ଦେଇଥିବାର ଦୃଷ୍ଟାନ୍ତ ତାଙ୍କ ଚିଠିପତ୍ରରେ ଲିପିବଦ୍ଧ ହୋଇରହିଛି । ଆମ୍ଭମାନଙ୍କୁ ବଡ଼ ଦୁଃଖର ସହିତ କହିବାକୁପଡୁଛି ଯେ, ଦାରିଦ୍ର୍ୟକୁ କବି-ଜୀବନର ଏକମାତ୍ର ପୁଞ୍ଜି ରୂପେ ଗ୍ରହଣକରିବାପାଇଁ ତାଙ୍କର ବିଶ୍ଳେଷଣ କରାଯାଇଥିବାର ଆଲୋଚନା ଓଡ଼ିଆ ସାହିତ୍ୟରେ ପ୍ରଚୁର । ଡ଼ଃ ନଟବର ସାମନ୍ତରାୟ ତେଣୁ ଯଥାର୍ଥତଃ କହିଅଛନ୍ତି, "ସମାଲୋଚକଙ୍କର ଏ ସଦୟ ଅନୁକମ୍ପା ମେହେର ପ୍ରତିଭା ପ୍ରତି ଏକ ନିଷ୍ଠୁର ଅପମାନ । ଏଇ ମୂଲ୍ୟହୀନ ଅନୁକମ୍ପା ସେ ସାହିତ୍ୟର ଯଥାର୍ଥ ଦୁର୍ବଳତାକୁ ପ୍ରକାଶ କରିବାରେ ଯେ ସମାଲୋଚକଙ୍କୁ ସାହସ ଦେଇନାହିଁ, ତା ନୁହେଁ, ତାର ଲଳିତକଳା ବିଭବ ଓ ସାର୍ଥକ ରୂପ ବୈଚିତ୍ର୍ୟ ବିଶ୍ଳେଷଣ କରିବାରେ ମଧ୍ୟ ତାଙ୍କୁ ବହୁପରିମାଣରେ ଅସମର୍ଥ କରିଦିଏ ।" (ଗଙ୍ଗାଧର ସାହିତ୍ୟ ସମୀକ୍ଷା - ପୃ ୧୭) । ଯେଉଁ ଦାରିଦ୍ର୍ୟ ନିମନ୍ତେ କବିଙ୍କର କୌଣସି ଦାୟିତ୍ୱ ନ ଥିଲା, ଯାହା ନିତାନ୍ତଭାବେ 'ଦୈବାୟତ୍ତ', ସେଥି ନିମନ୍ତେ ତେଣୁ ସୋଚ୍ଚାର ନ ହୋଇ, ଯାହା କବିଙ୍କର ନିତାନ୍ତ 'ଆତ୍ମାଧୀନ, ସେଇ ଭାବ-ସବଳତା ପ୍ରତି ଆମର ଦୃଷ୍ଟି ସର୍ବତୋଭାବେ ନିବଦ୍ଧ ରହିଲେ ହିଁ କବିଙ୍କୁ ଯଥାଯଥ ସମ୍ମାନ ପ୍ରଦର୍ଶନ କରାଯାଇ ପାରିବ । ବରଂ 'ସ୍ଥାନ ଓ କାଳ'ର ପରିବେଶ କବି ଜୀବନକୁ ଯେଉଁଭଳି ଭାବରେ ପର୍ଯ୍ୟୁଦସ୍ତ କରିଛି, ସେ ସମ୍ପର୍କରେ ସାବଧାନ ମନ୍ତବ୍ୟ ଦିଆଯାଇପାରେ । ଆମେ ପୂର୍ବରୁ ଫକୀର ମୋହନ ଓ ଗଙ୍ଗାଧରଙ୍କ ଜୀବନର ଏକ ତୁଳନାତ୍ମକ ଆଲୋଚନା କରି ଏହି ବିଷୟଟିକୁ ସ୍ପଷ୍ଟ କରିଦେଇଛୁଁ ।

କବିପ୍ରତିଭା ଯଥାର୍ଥତଃ ଦାରିଦ୍ର୍ୟ ମଧ୍ୟରେ ମହିମା-ମୟୀ-ରୂପଶ୍ରୀରେ ମଣ୍ଡିତହୋଇଛି । ଆଧୁନିକ ଓଡ଼ିଆ ସାହିତ୍ୟ ଯେଉଁ ପାଶ୍ଚାତ୍ୟ ଶିକ୍ଷା/ସଂସ୍କୃତିର ସଂଘର୍ଷ ମଧ୍ୟରୁ ଜନ୍ମଲାଭ କରିଥିଲା, ଗଙ୍ଗାଧରଙ୍କ ରଚନାରେ ତାହାର କୌଣସି ଇଙ୍ଗିତ ଦେଖିବାକୁ ମିଳେନାହିଁ । ~~[illegible]~~ହେତୁ 'ପଶ୍ଚିମ-ଦ୍ୱାର'ଟି ଚିରନ୍ତନଭାବେ ଗଙ୍ଗାଧରଙ୍କ ନିମନ୍ତେ 'ରୁଦ୍ଧ' ହୋଇଯାଇଥିଲା ଏବଂ ସେଠାରୁ 'ଉପହାର' ଗ୍ରହଣ/ପ୍ରତ୍ୟର୍ପଣ କରିବାର ସୁଯୋଗ ତାଙ୍କ ଭାଗ୍ୟରେ ଘଟି ନ ଥିଲା । ତେଣୁ ପ୍ରତିଭା ସମ୍ପୂର୍ଣ୍ଣ ଭାବେ ପ୍ରାଚ୍ୟମୁଖୀ ହୋଇ କଳାର ଭାରତୀୟ ରୂପଟିକୁ ହିଁ ପ୍ରମୂର୍ତ୍ତ କରିବା ନିମନ୍ତେ ଉଦ୍ୟମୀ ହୋଇଥିଲା । ରାଧାନାଥ-ସାହିତ୍ୟର କଠୋର ସମାଲୋଚନା ତତ୍କାଳୀନ ଅନେକ କବିଙ୍କୁ ପାଶ୍ଚାତ୍ୟ-ସାହିତ୍ୟ ବିମୁଖୀକରି ଭାରତୀୟ ଉପାଦାନରେ ସାହିତ୍ୟ ସୃଷ୍ଟି କରିବା ନିମନ୍ତେ ତଥା ଏକ କଳା-ଗତ ଆଦର୍ଶର ପ୍ରତିଷ୍ଠା ନିମନ୍ତେ ପ୍ରୋତ୍ସାହିତ କରିଥିଲା । କବି-ମନରେ ଯେ ଏହାର କୌଣସି ପ୍ରତିକ୍ରିୟା ସୃଷ୍ଟି ହୋଇ ନଥିବ, ଏହା କୁହାଯାଇ ନପାରେ । ଯାହା ରୁଦ୍ଧ, ତାହାକୁ ଚିର ଜୀବନ ନିମନ୍ତେ ରୁଦ୍ଧ କରିଦିଆଗଲା । "ପଶ୍ଚିମର" ବାତାୟନ ଖୋଲି ସେଆଡୁ ବହି ଆସୁଥିବା ବାତ ଉପଭୋଗ କରିବା ନିମନ୍ତେ କବିଚିତ୍ତର କୌଣସି ବ୍ୟଗ୍ରତା ତେଣୁ ପ୍ରକଟିତ ହୋଇନାହିଁ । 'ଆହରଣ' ଏବଂ 'ସମୀକରଣ' ନିମନ୍ତେ କେବଳ ଏଇ ଦେଶ ଏଇ ମାଟିର ଅନେକ ଉପାଦାନ ଗୋଟିକ ପରେ ଗୋଟିଏ କବିଙ୍କର ଅବଲମ୍ବନ ହେଲେ । ଦାରିଦ୍ର୍ୟ କବିଙ୍କ-ପକ୍ଷରେ ଅନ୍ୟ ଏକ ଦିଗରୁ ମଧ୍ୟ ଉପକାରୀ ପ୍ରମାଣିତ ହୋଇଥିଲା । କବି ବିଧି/ଉଚିତବ୍ୟ/ନ୍ୟାୟ/ଅନ୍ୟାୟ/ପାପ/ପୁଣ୍ୟ ମଧ୍ୟରେ ଥିବା ଭାରତୀୟ ସୀମାରେଖାଟି ଉପରେ ଦୃଢ଼ ପ୍ରତ୍ୟୟୀ ହୋଇଉଠିଥିଲେ । ତେଣୁ ଅନ୍ୟାୟ ବିରୁଦ୍ଧରେ ନ୍ୟାୟର ବିଜୟ ଘୋଷଣା / ପାପ ବିରୁଦ୍ଧରେ ପୁଣ୍ୟର ତୀବ୍ର ହୁଙ୍କାର,

ଅନାଦର୍ଶ ବିପକ୍ଷରେ ଆଦର୍ଶର ଜୟ ଜୟକାର ତାଙ୍କର କାବ୍ୟସମୂହରେ ଦେଖିବାକୁ ମିଳିଥାଏ । ଅବସ୍ଥାର ବିପର୍ଯ୍ୟତା କବିପ୍ରତିଭାକୁ କିପରି ଭାବରେ ଉପସ୍ଥାପିତ କରିଥାଆନ୍ତି, ତାହା କିପରି ବୁଝାଯାଇପାରିବ ?

ଗଙ୍ଗାଧରଙ୍କ ଛାତ୍ରଜୀବନ କେଉଁ ପରିବେଶରେ ଅତିବାହିତ ହୋଇଥିଲା, ସେତେବେଳକାର ସମାଜ ଓ ଶିକ୍ଷା ବ୍ୟବସ୍ଥା କିପରି ଥିଲା, ସେ ସବୁର ଆଲୋଚନା କରିବାର ଏକମାତ୍ର କାରଣ ହେଉଛି ପ୍ରତିକୂଳ-ପରିବେଶର ଗୁରୁତା ସମ୍ପର୍କରେ ପାଠକମାନଙ୍କୁ ସୂଚାଇ ଦେବା । ଯେଉଁ ଅବସ୍ଥାରେ କବି ଭବିଷ୍ୟତ ଜୀବନଲାଗି ନିଜକୁ ପ୍ରସ୍ତୁତ କରୁଥିଲେ, କେବଳ ଐଶୀ ପ୍ରତିଭା ଭିନ୍ନ ଅନ୍ୟ କାହାରି ପକ୍ଷରେ ସେ ଅବସ୍ଥାରେ ସ୍ମରଣୀୟ ସଫଳତା ହାସଲ କରିବା ଅସମ୍ଭବ ଏହା ଦ୍ୱିଧାଶୂନ୍ୟ ଭାବରେ କୁହାଯାଇ ପାରିବ ।

**ବ୍ୟକ୍ତିତ୍ୱ :**

ଗଙ୍ଗାଧରଙ୍କର ବ୍ୟକ୍ତି ଜୀବନ ମଧ୍ୟ ଏଇ ପ୍ରତିକୂଳତା, ଏଇ ସଂଘର୍ଷରୁ ମୁକ୍ତ ନଥିଲା । ତାଙ୍କର ଅସମାପ୍ତ ଆତ୍ମଜୀବନୀରୁ ଏହାର ସୂଚନା ଆମେ ପାଇଥାଉଁ । ଛାତ୍ରାବସ୍ଥା ଶେଷ ହେବା ପୂର୍ବରୁ ତତ୍କାଳୀନ ପ୍ରଚଳିତ ରୀତି ଅନୁସାରେ ସମ୍ଭବତଃ ୧୮୭୨ ମସିହାରେ ଗଙ୍ଗାଧରଙ୍କର ବିବାହ ଓ ୧୮୭୮ ମସିହାରେ ତାହାଙ୍କର ଦ୍ୱିରାଗମନ ଶେଷ ହୋଇଥିଲା । ତେଣୁ ୧୮୮୨ ରେ ଗଙ୍ଗାଧର ଯେତେବେଳେ ପୋଥିରେ ଡୋର ବାନ୍ଧିଲେ, ସେତେବେଳକୁ ସେ ଘୋର ସଂସାରୀ । ଉପଯୁକ୍ତ ପୁତ୍ର ହସ୍ତରେ ସଂସାର ଭାର ଅର୍ପଣ କରି ଉଦାସୀନ ପିତା ଅଧିକ ନିସ୍ପୃହ ହୋଇଗଲେ । ଏକ ନାତି-ବୃହତ୍ ପରିବାର ପ୍ରତିପୋଷଣର ଭାର ତେଣୁ ଷୋହଳ ବର୍ଷ ବୟସର ଏଇ ଅପ୍ରାପ୍ତ-ବୟସ୍କ ତରୁଣ ଉପରେ ପଡ଼ିଲା । ଅନ୍ତ-ହୀନ ଧୈର୍ଯ୍ୟନେଇ କବି ବସ୍ତ୍ର-ବୟନରୁ ଜୀବିକା-ସଂସ୍ଥାନର ଉପାୟ ଖୋଜିବାକୁ ଲାଗିଲେ । ଏହି ସମୟରେ ପ୍ରାକୃତିକ ବିପର୍ଯ୍ୟୟ—ଗୃହଦାହ—ସହିଷ୍ଣୁତାର କଷଟି ପଥରରେ ଆହୁରି ଗୋଟିଏ ଗାର ପଡ଼ିଲା—ଉଜ୍ଜ୍ୱଳ ଆଉ ଶୁଦ୍ଧ । କବି ହାରିଗଲେ ନାହିଁ । କବିଙ୍କର ଏହି ସମୟର ମନୋଭାବକୁ ଉତ୍ତର କାଳରେ ସେ ନିଜେ ଲେଖିଥିବା ନିମ୍ନଲିଖିତ ପଂକ୍ତି ସହିତ ତୁଳନା କରାଯାଇପାରେ । ଯଥା:—

"ଟଳିବେ କି ଶିଳା ସକଳ ସ୍ରୋତ ଘର୍ଷିବ ଯିନା,
ବରଂ ଶୁଭ୍ର ଶିରେ ପଡ଼ିବ ଗତ ଘର୍ଷଣ ବିନା—"

[ ତପସ୍ୱିନୀ — ଗଙ୍ଗାଧର ଗ୍ରନ୍ଥାବଳୀ ପୃ. ୮ ]

ବିପଦ ନଦୀର ସ୍ରୋତ କବିଙ୍କର ଧୈର୍ଯ୍ୟ ଶିଳାକୁ ତେଣୁ ତିଳେମାତ୍ର ଟଳାଇ ପାରି ନଥିଲା । ବରଂ ଏହା ଦ୍ୱାରା ତାହାଙ୍କର ଧୈର୍ଯ୍ୟ / ସହନଶୀଳତା ଆହୁରି ବୃଦ୍ଧି ପାଇଥିଲା ।

ବସ୍ତ୍ର-ବୟନକୁ ଜୀବିକା ନିର୍ବାହର ଏକମାତ୍ର ଉପାୟ ରୂପେ ଗ୍ରହଣ କରିଥିଲେ ହେଁ, କବି ସାହିତ୍ୟକୁ ଭୁଲି ନ ଥିଲେ । କି ଏକ ଆନ୍ତରିକ ପ୍ରେରଣାରେ ପରିଚାଳିତ ହୋଇ ସେ ଅଧ୍ୟୟନ ଦ୍ୱାରା ନିଜର ଜ୍ଞାନ, ଅଭିଜ୍ଞତା ବୃଦ୍ଧି କରିବାରେ ଲାଗିଥିଲେ । ତାହାଙ୍କର ଏହି ସମୟର ଅବସ୍ଥାକୁ କବିଜୀବନୀକାର ରାଘବ ମିଶ୍ର ବଡ଼ ପ୍ରଭାବଶାଳୀ ଭାବରେ ଉପସ୍ଥାପନ କରିଅଛନ୍ତି । ସେ ଲେଖିଛନ୍ତି, "ତନ୍ତ ଚର୍ଚ୍ଚା ଓ ଗ୍ରନ୍ଥ ଚର୍ଚ୍ଚା ଅନେକ ସମୟରେ ଏକ ସମୟରେ ଏକାସନରେ ସମାହିତ ହେଉଥିଲା ।

ସେ ତନ୍ତବୁଣକା କରୁଥିଲାବେଳେ ସଂସ୍କୃତ ଓ ଓଡ଼ିଆ କାବ୍ୟମାନଙ୍କରୁ କଣ୍ଠସ୍ଥ ଲଳିତ ପଦଗୁଡ଼ିକ ଆବୃତ୍ତିକରି ବଡ଼ ଆମୋଦ ଅନୁଭବ କରୁଥିଲେ । ପୁସ୍ତକ ପାଠ ପ୍ରତି ତାଙ୍କର ଅତ୍ୟଧିକ ଶ୍ରଦ୍ଧାଥିଲେ ହେଁ ଅର୍ଥାଭାବ ଯୋଗୁଁ ତହିଁର ସମ୍ପୂର୍ଣ୍ଣ ସୁଯୋଗ ପାଇପାରନ୍ତି ନାହିଁ । ସେ ସମୟରେ ଗ୍ରାମମାନଙ୍କ ପରି ଏଠାରେ କୌଣସି ଲାଇବ୍ରେରୀ ନ ଥିଲା । ସେ ଯାହାଠାରୁ ଯେଉଁ ପୁସ୍ତକ ପାଆନ୍ତି, ମାଗିନେଇ ପଢ଼ନ୍ତି । କେବେ କେବେ ତମସୁକ ଲେଖି ଯାହା କିଛି ଉପାର୍ଜନ କରନ୍ତି ତାହା ତାଙ୍କର ପୁସ୍ତକ କିଣିବାରେ ବ୍ୟୟିତ ହୁଏ ।" (ଗଙ୍ଗାଧର ସାହିତ୍ୟ ଓ ତପସ୍ୱିନୀ - ଶ୍ରୀ ପଠାଣି ପଟ୍ଟନାୟକ—ପୃ. ୨)
ତନ୍ତୁଚର୍ଚ୍ଚାକୁ ଗ୍ରନ୍ଥଚର୍ଚ୍ଚାର ପରିପୂରକ ଭାବେ ଗ୍ରହଣ କରି ପରିବାର ପୋଷଣ ତଥା ମାନସିକ-ପ୍ରେରଣା ମଧ୍ୟରେ ଏକ ଅଦ୍ଭୁତପୂର୍ବ ସମନ୍ୱୟର ଦୃଷ୍ଟାନ୍ତ ସ୍ଥାପନ କରି ମଧ୍ୟ କବି ସମସ୍ୟାବିହୀନ ନଥିଲେ । ଗ୍ରାସାଚ୍ଛାଦନର ପର୍ଯ୍ୟାପ୍ତ ସାଧନ ତନ୍ତୁଚର୍ଚ୍ଚାରୁ ସମ୍ଭବ ନଥିଲା । ତେଣୁ ଜୀବନ ଆଉ ଜୀବିକା ମଧ୍ୟରେ ପୁଣି ଦେଖାଦେଲା ଦ୍ୱନ୍ଦ୍ୱ । ଜୀବନ ନିକଟରେ ନତି ସ୍ୱୀକାର କରି କବି ଜୀବିକା ପରିବର୍ତ୍ତନ କଲେ । ଏତେବେଳକୁ ତାଙ୍କୁ ୨୩ ବର୍ଷ । ବରପାଲି ଜମିଦାରୀ ସିରସ୍ତାରେ ଲାଲ ନୃପରାଜ ସିଂହଦେବଙ୍କ ଆଗ୍ରହାତିଶଯ୍ୟରେ ଅମୀନ ରୂପରେ ଯୋଗ ଦେଲେ । ମାତ୍ର ୫ ଟ ଙ୍କା ଗଙ୍ଗାଧରଙ୍କର ଯୋଗ୍ୟତାର ମୂଲ୍ୟ ନିରୂପିତ ହେଲା । ଏଠାରେ ନିଜ ଇଚ୍ଛା ବିରୁଦ୍ଧରେ କବି ଏକ ବିଚିତ୍ର ଅବସ୍ଥାର ସମ୍ମୁଖୀନ ହେଲେ । ପ୍ରବଳ ଶକ୍ତିଧର / ଇଂରେଜ ରାଜତ୍ୱର ଲୌହସ୍ତମ୍ଭ ତତ୍କାଳୀନ ଜମିଦାରଙ୍କ ବିରୁଦ୍ଧରେ ସାକ୍ଷୀଦେଲା ତାଙ୍କର ଅଧୀନସ୍ଥ ଜଣେ ଦରିଦ୍ର କର୍ମଚାରୀ, ଯାହାର ମୂଲ୍ୟ ପୁଣି ୫ ଟଙ୍କା ମାତ୍ର ! ଏଠାରେ ଆମେ ଦେଖିବାକୁ ପାଉଁ ସାହସ୍ ବିହୀନ / ସତ୍ୟାନୁରକ୍ତ ଏକ ବିପନ୍ନ ବ୍ୟକ୍ତିତ୍ୱକୁ ଯାହାଙ୍କ ଦୃପ୍ତକଣ୍ଠରୁ "ଯାହା କହିବି ସତ କହିବି" ର ଗମ୍ଭୀର ବାଣୀ ଉଚ୍ଚାରିତ ହୋଇ ସମଗ୍ର ବିଚାରକମାନଙ୍କୁ ସ୍ତବ୍ଧ କରି ଦେଇଥିଲା । ଜମିଦାର କ୍ଷୁବ୍ଧ ହେଲେ ମଧ୍ୟ ଏକ ତରୁଣ ବିପନ୍ନର ସତ୍ୟନିଷ୍ଠତା ହୁଏତ ତାହାଙ୍କୁ ମୁଗ୍ଧ କରିଥିବ । ତେଣୁ ପୁଣି ତାଙ୍କର ଅଧୀନରେ 'ମାଲ୍-ମୋହରିର' ଚାକିରି । ତା' ସହିତ 'ଖମାର / ବଜାର ପ୍ରଭୃତି ଅନେକ ଛୋଟମୋଟ ଭାର' ମଧ୍ୟ ଅର୍ପିତ ହେଲା । ଶେଷରେ ଚାକିରିର ଚଉଦ ବର୍ଷ ପରେ ପୁଣି ସେଇ ଜମିଦାରଙ୍କର ସୁପାରିସରେ 'ଜୁଡ଼ିସିଆଲ୍ ମୋହରିର'ର ଚାକିରି ମିଳିଲା । କବି ଅକୃତଜ୍ଞ ନଥିଲେ । ଗ୍ରନ୍ଥାବଳୀର "ନୃପରାଜ ସିଂହ" ପ୍ରବନ୍ଧ ହିଁ ଏହାର ଦୃଷ୍ଟାନ୍ତ ।

ଏହି 'ଜୁଡ଼ିସିଆଲ୍ ମୋହରିର'ର ଚାକିରିହିଁ ୧୯୧୭ ମସିହାରେ ପେନ୍‌ସନ୍ ନେବାପର୍ଯ୍ୟନ୍ତ ତାଙ୍କର ଅବଲମ୍ବନ ହୋଇଥିଲା ଏବଂ ବେତନର ସର୍ବୋଚ୍ଚସୀମା ଥିଲା ୨୫ ଟଙ୍କା । ଦୀର୍ଘକାଳର 'ଜୀବିକା' ତାଙ୍କର ଜୀବନକୁ ଏଭଳି ପର୍ଯ୍ୟୁଦସ୍ତ କରିଥିଲା ଯେ, ସେ ସାରସ୍ୱତ-କର୍ମ ନିମନ୍ତେ ବାରମ୍ବାର ଅନବସର ହୋଇଥିଲେ ତେଣୁ ଶ୍ରୀ ବ୍ରଜମୋହନ ପଣ୍ଡାଙ୍କୁ ଲେଖିଥିଲେ," 'ଉତ୍କଳ ଲକ୍ଷ୍ମୀ' ସମ୍ବନ୍ଧେ କିଛି କରିପାରି ନାହିଁ । ରାମନାରାୟଣ ବାବୁ ମୋତେ ମଧ୍ୟ 'ଶକୁନ୍ତଳା'ର କଥା କହୁଥିଲେ । ଅନ୍ୟାନ୍ୟ ଅନେକ ଲୋକ ମଧ୍ୟ କହୁଅଛନ୍ତି । କି କରିବି ! ଏକପଦିଆ, ଭରଣ, ଉଆରିଜାରେ ବ୍ୟସ୍ତ –" [ ଗଙ୍ଗାଧର ପତ୍ରାବଳୀ – ୧୮ । ୧ । ୧୪ର ପତ୍ର – ପୃ. ୧୩୮ ] କେବଳ ଏତିକି ନୁହେଁ ଏ ସମ୍ପର୍କରେ ବାରମ୍ବାର କବି-ଚିତ୍ତର କ୍ଷୋଭ ସମଗ୍ର ପତ୍ରାବଳୀରେ ପ୍ରକାଶିତ । ଉଚ୍ଛ୍ୱାସପ୍ରବଣ କବି-ମାନସର ସ୍ୱୀକାରୋକ୍ତି ବଡ଼ କରୁଣ / ବଡ଼ ମର୍ମସ୍ପର୍ଶୀ । ସେ ଲେଖିଛନ୍ତି, "ମୋର ହୃଦୟ ଦୁଃଖବୀଜର ଉର୍ବର କ୍ଷେତ୍ର । ନଗଣ୍ୟ ଦୁଃଖ ସୁଦ୍ଧା ତହିଁରେ ସତେଜ ହୋଇ ଉଠେ—"

[ ଗଙ୍ଗାଧର ପତ୍ରାବଳୀ— ୧୧ । ୯ । ୧୧ର ପତ୍ର ପୃ. ୬୯ ]

ଦୁଃଖ ତ ଅନନ୍ତ / ଅସୀମ ! ତାହାର କଣ ଶେଷ ଅଛି ? ବଡ଼ ବିସ୍ମୟର କଥା ଯେ, ଏହି ଦୁଃଖର ପ୍ରକାଶ ତାଙ୍କର ସମଗ୍ର କାବ୍ୟ-କୃତି ମଧ୍ୟରେ ଅନୁସ୍ୟୁତ । ଅନ୍ତହୀନ ଦୁଃଖ ମାନବ ଜୀବନର ଚରମ ଏବଂ ପରମ ସତ୍ୟ ହୋଇପାରେ । ମାତ୍ର ଶେଷ କଥା ନିଶ୍ଚୟ ନୁହେଁ । ଏହା ଶେଷର ଆରମ୍ଭ ମାତ୍ର । ତେଣୁ ସେଥି ନିମନ୍ତେ 'ଦୁଃଖଦତ୍ତ ଜ୍ଞାନ ଚକ୍ଷୁରେ ସମଗ୍ର ଜଗତକୁ ଦେଖିବାରେ 'ଅଭ୍ୟସ୍ତ' ହେବାର କୌଣସି ଅର୍ଥ ହୁଏ ନାହିଁ । ସୁଖର ଅନୁଭବ ଦୁଃଖର ଜନକ । କବିଙ୍କ ମତରେ ତେଣୁ "ଯାହାଲାଗି ଭବ ଯେତେ ସୁଖ / ତାହାଲାଗି ପୁଣି ତେତେ ଦୁଃଖ"—"ମଙ୍ଗଳମୟ ପରମେଶ୍ୱର କେଉଁ ଅଭିପ୍ରାୟ ସାଧନ ନିମନ୍ତେ ଏପରି ଦୁଃଖଦାନ କରନ୍ତି, ତାହା ତାଙ୍କୁହିଁ ଗୋଚର । ତାଙ୍କର ଉଦ୍ଦେଶ୍ୟ ମାନବର ଜ୍ଞାନସୀମାର ବହିର୍ଭୂତ । ହୃଦୟ ପାଷାଣ ଖୋଦିତ ଦୁଃଖରେଖାକୁ କାଳସ୍ରୋତ ମଳିନ କରେ, ମାତ୍ର ଲୁପ୍ତ କରିପାରେ ନାହିଁ ।" [ ଗଙ୍ଗାଧର ପତ୍ରାବଳୀ—ପୃ. ୭୦।୪।୭।୧୪ର ପତ୍ର ' "ଦୁଃଖ-ପ୍ରହାର ଜର୍ଜରି" କବିମନ ବିଶ୍ୱ-ନିୟନ୍ତାଙ୍କର ସର୍ବବ୍ୟାପୀ ଶକ୍ତି ବିରୁଦ୍ଧରେ ପ୍ରତିବାଦ କରିପାରିନାହିଁ । ପୂର୍ଣ୍ଣ ସମର୍ପଣରେ ଈଶ୍ୱରଙ୍କ ପଦତଳେ ଲୋଟିଯାଉଛି । ପ୍ରତିବାଦ ନିରର୍ଥକ / ନିତାନ୍ତ ଅରଣ୍ୟ ରୋଦନ । ତେଣୁ ସହିବା / ବହିବା ଛଡ଼ା ଗତି କାହିଁ ? ଜୀବନ-ଦର୍ଶନର ଏହି ଭିତ୍ତିଭୂମି ରୂପରେ ରାଧାନାଥୀ ସାହିତ୍ୟର ପୃଷ୍ଠଭୂମିରେ ପ୍ରୋଜ୍ଜ୍ୱଳ ଭାବରେ ଫୁଟି ଉଠିଥିଲା, ଏହା କହିବା ବାହୁଲ୍ୟ ମାତ୍ର ।

ପାରିବାରିକ ପରିବେଶ / ପିତାମହ / ପିତାମହୀ / ପିତା / ମାତା ଏମାନଙ୍କ ଜୀବନର ସରଳତା / ଉଦାରତା / ଦୟା / କ୍ଷମା / ବିନୟ ଭାବ / ସତ୍ୟାନୁରକ୍ତି / ନିର୍ଭୀକତା ପ୍ରଭୃତିରୁ କବି ଅଶେଷ ଭାବରେ ପ୍ରଭାବିତ ହୋଇଥିଲେ । ଜୀବନ-ବିଦ୍ୟାଳୟରୁ କବିଙ୍କର ଯେଉଁ ଶିକ୍ଷା ହୋଇଥିଲା, ତାହାହିଁ ତାଙ୍କର ଭବିଷ୍ୟତ ସାଂସାରିକ ଜୀବନକୁ କଳଙ୍କ-ମୁକ୍ତ କରିରଖିବାରେ ସହାୟକ ହୋଇଥିଲା । ଆଧ୍ୟାତ୍ମିକତା ମଧ୍ୟରେ କବି ନିଜର ସମସ୍ତ ଦୁଃଖର ପ୍ରତିକାର ଖୋଜି ପାଇବା ନିମନ୍ତେ ସମର୍ଥ ହୋଇଥିଲେ । ସାରବାନ୍ ମାଟି ସବଳ ବୃକ୍ଷର ସ୍ରଷ୍ଟା । ସେଇଭଳି ବାଲ୍ୟକାଳରୁ କବିଙ୍କ ହୃଦୟରେ ଈଶ୍ୱରାନୁରକ୍ତିର ଯେଉଁ ବୀଜ ଉପ୍ତ ହୋଇଥିଲା, ଯଥାକାଳରେ ତାହା 'ଫଳଚ୍ଛାୟା ସମନ୍ୱିତ ହୋଇ ସମଗ୍ର ସଂସାରର ପ୍ରୀତିପ୍ରଦ ହୋଇଥିଲା' । ସୃଷ୍ଟିକୁ ସ୍ରଷ୍ଟାଙ୍କର 'ପ୍ରସାଦ' ରୂପେ ଚିହ୍ନାଇ ଦେଇଥିଲା । ତେଣୁ କବି ଲେଖିଥିଲେ, "କି ଦେଇ ପୂଜିବି ଯାହା ମୁଁ ଦେଖୁଛି ସବୁ ତୁମ୍ଭର ପସାଦ/ ଯାହା ପରସାଦ ତାଙ୍କୁ ଅରପିଲେ ହେବସିନା ଅପରାଧ—" କବି ବୁଝିଥିଲେ, ଅହଂକାର ମାନବଜାତିର ସମସ୍ତ ଅବନତିର କାରଣ । ତେଣୁ ପ୍ରଥମରୁ ସେଇଟିକୁ ଈଶ୍ୱରଚରଣରେ ନିବେଦନ କରିବାକୁ ଯାଇ କବି ଲେଖିଥିଲେ, "ମୁଁ କାର ମାତର ମୋର ନୁହେଁ ବୋଲି କହିବାକୁ ନାହିଁ ବାଟ / ଦୁଃଖ ଶ୍ରୀ ଚରଣେ ଅର୍ପଣ କରୁଛି ଯେଣେ ତା ବିଶ୍ୱ ସମ୍ରାଟ—" ( ଅର୍ଘ୍ୟଥାଳୀ—ଗଙ୍ଗାଧର ଗ୍ରନ୍ଥାବଳୀ - ପୃ ୨୫୯ )

ଏଇ ଦୁରିତ୍ତ/ସମ୍ମାନ ଜଣାଇବାର ଏଇ ବିନୀତଭାବ ତାଙ୍କର ସମଗ୍ର ଜୀବନକୁ ନିୟନ୍ତ୍ରିତ କରିଥିଲା । ସମ୍ମାନାସ୍ପଦଙ୍କୁ ଖୁବ୍ ପାଖରୁ ଅନୁଭବ କରିବାର କାମନାକୁ ସେ ଔଦ୍ଧତ୍ୟ ବୋଲି ମନେ କରୁଥିଲେ । ଏହାକୁ ବୈଷ୍ଣବ ସାହିତ୍ୟର ପ୍ରଭାବରୂପେ ଗ୍ରହଣ କରାଯାଇପାରେ ।

ଗଙ୍ଗାଧରଙ୍କ ନିକଟରେ ସାଧନା ସହିତ ନମ୍ରତାର ଏକ ସମନ୍ୱୟ ଦେଖିବାକୁ ମିଳିଥାଏ । କବି 'ଉଚ୍ଚପଦ' ବା 'ଉନ୍ନତ ବେଶଭୂଷାର' ଲାଳସୀ ନ ହୋଇ, 'ଦରିଦ୍ରଭାବରେ ଜୀବନଯାପନକରି

ସାଧୁତା ରକ୍ଷା'କୁ 'ଜୀବନର ଏକମାତ୍ର ଲକ୍ଷ୍ୟ' ରୂପେ ଗ୍ରହଣ କରିନେଇଥିଲେ । ତାହା ମନରେ ନିଜର କୌଣସି ଆଚରଣ ଯୋଗୁଁ ଯେଉଁଭଳି ସାମାନ୍ୟତମ ଆଘାତ ନ ପହଞ୍ଚେ, ସେ ସମ୍ପର୍କରେ କବିଙ୍କର ସାଧନାର ଅନ୍ତ ନଥିଲା । ଏ ବିନୟ/ଏ ନମ୍ରତା କବି ପାରିବାରିକ ଜୀବନରୁ ପାଇଥିଲେ । ଅବଶ୍ୟ ଦାରିଦ୍ର୍ୟକୁ ଏହାର ଅନ୍ୟ ଏକ କାରଣ ରୂପେ ଗ୍ରହଣ କରାଯାଇପାରେ । ଶେଷତଃ ପାରମ୍ପରିକ ବିଦ୍ୟାଧ୍ୟୟନ ତାହାଙ୍କୁ ବିନମ୍ରୀ କରିଥିବାର ମଧ୍ୟ ଅନୁମାନ କରାଯାଇପାରେ । ବିନୟ ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱ ସହିତ ମିଶିଯାଇଥିଲା, ଯେଉଁଥିରୁ ତାହାଙ୍କୁ ବିଚ୍ଛିନ୍ନ କରି ସ୍ୱତନ୍ତ୍ରଭାବରେ ବିଚାର କରାଯାଇ ପାରିବ ନାହିଁ । ଶ୍ରୀ ବ୍ରଜମୋହନ ପଣ୍ଡାଙ୍କୁ କବି ଲେଖିଥିଲେ, "ଆପଣ ମୋପରି ଶତ ସଂଖ୍ୟକ ଲୋକ ପରିପୋଷଣ କରିପାରନ୍ତି । ଏପରି ଅବସ୍ଥାରେ ମୋତେ ମହତ୍‌ଜନ ମଧ୍ୟରେ ଗଣନା କରିବାରୁ ମୁଁ ଅତ୍ୟନ୍ତ ଲଜ୍ଜିତ ଅଛି ।" (ଗଙ୍ଗାଧର ପତ୍ରାବଳୀ - ୧୯୧୦ର ପତ୍ର - ପୃ ୩) ଏହି ପତ୍ର ଲେଖିଲାବେଳକୁ ଗଙ୍ଗାଧର ପରିଣତ ବୟସ୍କ ଏବଂ ଓଡ଼ିଶାର ଜଣେ ପ୍ରସିଦ୍ଧ କବି ହିସାବରେ ପ୍ରତିଷ୍ଠିତ । ଏହି କୃତିତ୍ୱ କିନ୍ତୁ ତାଙ୍କ ମନରେ କୌଣସି ଅହଂଭାବ ସୃଷ୍ଟି କରିପାରି ନାହିଁ । ତେଣୁ ନିଜର ପୁତ୍ର ପ୍ରତିମ ଜଣେ ଗୁଣମୁଗ୍ଧ ବ୍ୟକ୍ତିଙ୍କ ନିକଟରେ ସେ ନିଜକୁ ଏଇଭଳି ଭାବରେ ପ୍ରକଟିତ କରିଅଛନ୍ତି । ନିଜ ସ୍ୱାର୍ଥ ନିମନ୍ତେ ଅନ୍ୟର ସାହାଯ୍ୟକୁ ସେ ସର୍ବଦା ଯତ୍ନର ସହିତ ପରିହାର କରିଯାଇଅଛନ୍ତି । ଶ୍ରୀ ବ୍ରଜମୋହନ ପଣ୍ଡାଙ୍କ ସହିତ ବିନିମୟ ହୋଇଥିବା ଅନେକ ପତ୍ରରୁ ଏହାର ଦୃଷ୍ଟାନ୍ତ ମିଳିଥାଏ । ସାରସ୍ୱତ-ବିଳାସୀ କବିଙ୍କର ଏକ ଆବକ୍ଷ ପ୍ରତି-ରୂପ ରକ୍ଷାକରିବା କାମନାରେ ଶ୍ରୀ ପଣ୍ଡା ତାହାଙ୍କୁ 'ଫଟୋ ଦେବା' ନିମନ୍ତେ ବାରମ୍ବାର ଅନୁରୋଧ ଜଣାଇ ଏହାର ସମ୍ପୂର୍ଣ୍ଣ ବ୍ୟୟଭାର ନିଜେ ବହନ କରିବା ନିମନ୍ତେ ପ୍ରତିଶ୍ରୁତି ଦେଇଥିଲେ । ଏଭଳି ଆତ୍ମପ୍ରଚାର ଗଙ୍ଗାଧରଙ୍କର ମନଃପୂତଃ ହୋଇ ନ ଥିଲେ ହେଁ କେବଳ ବ୍ରଜମୋହନଙ୍କୁ ସନ୍ତୁଷ୍ଟ କରିବା କାମନାରେ ସେ ଏହି ପ୍ରସ୍ତାବରେ ରାଜି ହୋଇଥିଲେ । ପରସ୍ପର ମଧ୍ୟରେ ଏ ସମ୍ବନ୍ଧରେ ଅନ୍ୟୂନ ଛଅଖଣ୍ଡି ପତ୍ର ବିନିମୟରୁ ଏହା ଅନୁମାନ କରାଯାଇପାରେ । ୨୮/୧୦/୧୦ ଫଟୋ ଉଠାଇବା ପ୍ରସ୍ତାବ ତାରିଖରୁ ୨୯/୧୧/୧୦ ଫଟୋ ଉଠାହେବାର ସମ୍ବାଦ ଦିଆଯିବାର ତାରିଖ ପର୍ଯ୍ୟନ୍ତ ମାସାଧିକ କାଳ ଅତିବାହିତ ହୋଇଯାଇଥିଲା । ଅବଶ୍ୟ ଏହାର "ଟ ୪ ଖର୍ଚ୍ଚ ମୁଁ ନିଜେ ପୂର୍ଣ୍ଣରୂପେ ବରଣ କରି" "ଆପଣଙ୍କ କୌତୂହଳ ପୂର୍ଣ୍ଣକରିବାର ବାସନା କରିଅଛି" ବୋଲି ମଧ୍ୟ ଇତିମଧ୍ୟରେ ବ୍ରଜମୋହନଙ୍କୁ ଜଣାଇ ଦିଆଯାଇଥିଲା । ଏହା ବିନମ୍ରୀ କବି-ଚରିତ୍ରର ଏକ ପ୍ରାମାଣିକ ଦୃଷ୍ଟାନ୍ତ ନୁହେଁ କି ? ଏହାପରେ ମାତ୍ର ଗୋଟିଏ ଦୃଷ୍ଟାନ୍ତ ଦେଇ ଆମ୍ଭେମାନେ ଏ ପ୍ରସଙ୍ଗର 'ଇତି' କରିବୁଁ । ଘଟଣାଟି ୧୯୨୦ ମସିହାରେ ଘଟିଥିବାର ସମ୍ବଲପୁରର କବିପୁତ୍ର ସ୍ୱର୍ଗୀୟ ଶ୍ରୀ ହରିଚନ୍ଦ୍ର ନାୟକ ବିବୃତ କରିଅଛନ୍ତି । ପେନ୍‌ସନ୍-ଭୋଗୀ କବି ସେତେବେଳେ ସାମାନ୍ୟ କେଇଟା ପେନ୍‌ସନ୍ ଟଙ୍କା ନେବା ନିମନ୍ତେ ବରଗଡ଼ ଆସି ଅଫିସ ଖୋଲିବା ଅପେକ୍ଷାରେ ବାରଣ୍ଡାର ଧୂଳିଶଯ୍ୟାରେ ଶୋଇ ରହିଥିଲେ । ବୟୋବୃଦ୍ଧ କବିଙ୍କର ଏ ଦୁରବସ୍ଥା/ଅସହାୟତା ସାହିତ୍ୟପ୍ରେମୀ ହରିଚନ୍ଦ୍ରଙ୍କର ଚକ୍ଷୁରେ ବ୍ୟଥାର ଅସୁମାରି ଫୁଲ ଫୁଟାଇ ଦେଇଥିଲା । ଚୌକି ଉପରେ ବସିବା ନିମନ୍ତେ ଅନୁରୁଦ୍ଧହୋଇ ବିନମ୍ରଭାବରେ ତାହା ପ୍ରତ୍ୟାଖ୍ୟାନକରି କବି କହିଥିଲେ, "ନା ନା ମୁଁ ଗରିବ ଲୋକ, ଏଠାରେ ବସିବା ଯୋଗ୍ୟନୁହେଁ । ମୋତେ କ୍ଷମାକରନ୍ତୁ ।" ଯେଉଁ କନେଷ୍ଟବଲ ତାଙ୍କୁ ଯୋତାରେ ଠେଲି ଉଠାଇଥିଲା, କ୍ଷମାପ୍ରାର୍ଥୀ ତାହାକୁ ମଧ୍ୟ କବିଙ୍କର ବିନୟପୂର୍ଣ୍ଣ/ସସ୍ମିତ ଉତ୍ତର, "ନା ବାବା ! ତୁମ୍ଭର କିଛି ଦୋଷନାହିଁ—" (କବି ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱ—ଶ୍ରୀ ହରିଚନ୍ଦ୍ର ନାୟକ - ଡଗର, ଗଙ୍ଗାଧର ବିଶେଷାଙ୍କ—ପୃ ୨୭ ) । ବିନୟର/ନମ୍ରତାର ଏ ଉଦାହରଣ ରାଧାନାଥଙ୍କ ଜୀବନୀରୁ ମଧ୍ୟ ଦେଖିବାକୁ ମିଳିଥାଏ । ମହତ ଜୀବନ ବିଶ୍ୱମାନବ-ଜାତିର

ସମାନ୍ୟତମ ପ୍ରାଣୀଙ୍କ ନିକଟରେ କେଉଁଭଳି ଶ୍ରଦ୍ଧା ଓ ଶୁଭେଚ୍ଛାରେ ପୂର୍ଣ୍ଣ, ସ୍ୱୟଂ ପ୍ରସ୍ତୁତ ହୋଇ ମଧ୍ୟ ପ୍ରତିଦ୍ୱନ୍ଦ୍ୱୀ ପ୍ରତି କେଉଁଭଳି କ୍ଷମାଶୀଳତାରେ ନମ୍ର ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତରୂପେ ଏହି ଘଟଣାଟିକୁ ଗ୍ରହଣ କରାଯାଇପାରେ ।

ଜୀବନ କବିଙ୍କୁ ଦେଇଥିଲା ସଂଗ୍ରାମର ଦୀକ୍ଷା । ଆତ୍ମସମ୍ମାନ ବଜାୟ ରଖି ନିର୍ଭୀକଭାବରେ ବଞ୍ଚିବା ହିଁ ଯଥାର୍ଥ ବଞ୍ଚିବା—ଏହା ହିଁ କବିଙ୍କର ଜୀବନବେଦ ଥିଲା । ଅବଶ୍ୟ କବିଙ୍କର ମାନ/ଅପମାନର ସଂଜ୍ଞା ପୂର୍ଣ୍ଣ ସ୍ୱତନ୍ତ୍ର ଥିଲା । ତେଣୁ ସେ ବ୍ରଜମୋହନ ପଣ୍ଡାଙ୍କୁ ଲେଖିଥିଲେ, "ଯାହାର ମାନଥାଏ, ତାହାର ମାନହାନି ହୁଏ । ଯାହାର ମାନ ଆଦୌ ନାହିଁ, ହାନି ହେବ କଣ ? ମୋତେ ଯେତେବେଳେ ଯେଉଁ ମାନ ଟିକିଏ ମିଳେ, ମୁଁ ତତ୍‌କ୍ଷଣାତ୍ ତାକୁ ଦୂର କରିଦିଏ । ତାହା ଯଦି ମୋ'ଠାରେ ରହୁଥାନ୍ତା, ତେବେ ବା ହାନି ହୁଅନ୍ତା—" ( ଗଙ୍ଗାଧର ପତ୍ରାବଳୀ - ପୃ ୨୦୯—୨୦-୧୧-୧୯୧୫ ର ପତ୍ର ) ସମ୍ମାନ ପ୍ରତ୍ୟାଶୀ ହେଲେ ପ୍ରଥମେ ନିଜର ଅଭିମାନଟିକୁ ଦୂରେଇ ଦେବାକୁ ହୁଏ, ଏହି ତତ୍ତ୍ୱଟିକୁ କବି ଯଥାର୍ଥ ଭାବରେ ପାଳନ କରୁଥିଲେ । ତେଣୁ ନିର୍ଭୀକ କବି ଲେଖିପାରିଥିଲେ, "ମୁଁ ରାଜ ସେବାର ଲାଳସୀ ନୁହେଁ । ଇଂରେଜଠାରୁ ବଳି ବଡ଼ ରାଜା କିଏ ଅଛି ? ଯେତେବେଳେ ସେ ରାଜାଙ୍କ ସେବାରେ ବୈରାଗ୍ୟ ଜନ୍ମି ଆସିଲାଣି ଅନ୍ୟ କେଉଁ ରାଜାଙ୍କର ସେବାକୁ ଇଚ୍ଛା କରିବି ?" ( ଗଙ୍ଗାଧର ପତ୍ରାବଳୀ - ପୃ ୨୦୯ )

ନିଜ ନିମନ୍ତେ କାହାରିକୁ କିଛି ଅନୁରୋଧ କରିବା / କାହାରିଠାରେ ପ୍ରତ୍ୟାଶୀ ହେବା ତାଙ୍କ ଚିନ୍ତାର ବାହାରେ ଥିଲା । ନିଜର ପୁସ୍ତକ ପ୍ରକାଶନ ନିମନ୍ତେ କୌଣସି ଧନୀବ୍ୟକ୍ତିର ସହାୟତା ଲୋଡ଼ିବା ତେଣୁ ତାଙ୍କୁ ଲଜ୍ଜାକର ବୋଧ ହେଉଥିଲା । ତତ୍କାଳରେ କବିଙ୍କଠାରୁ ଯୋଗ୍ୟତାରେ ବହୁ ନିମ୍ନରେ ଥିବା ବ୍ୟକ୍ତି ନାନାପ୍ରକାର ରାଜଦତ୍ତ ଉପାଧି ମଣ୍ଡିତ ହୋଇଥିଲେ ହେଁ, ନିଜର ନିସ୍ପୃହତା ନିମନ୍ତେ ଗଙ୍ଗାଧର ସେଥିରୁ ବଞ୍ଚିତଥିଲେ । ସହାୟତାର ପ୍ରାର୍ଥନା ବ୍ୟକ୍ତିସତ୍ତ୍ୱକୁ ନ୍ୟୁନ କରିଦିଏ । ବନ୍ଧୁତ୍ୱର ସ୍ୱାଭାବିକ ସ୍ଫୂର୍ତ୍ତି ମ୍ଳାନ ପଡ଼େ । ତେଣୁ କବିଙ୍କ ମତରେ, "ଅଳ୍ପ ବେଶି ସମସ୍ତଙ୍କର ଅଭାବ ଅଛି, ରାଜା ମହାରାଜାଙ୍କୁ ସୁଦ୍ଧା ଏହା ଛାଡ଼ିନାହିଁ । କିଛି ଦେବାକୁ ଅନେକଙ୍କର କଷ୍ଟ ହୁଏ, କାହାରି ମନରେ କଷ୍ଟ ଦେବା କିମ୍ବା ନିଜ ଭଦ୍ରତା କ୍ଷୁର୍ଣ୍ଣ କରିବା ଉଚିତ ନୁହେଁ—" ( ଶ୍ରୀ ରାଘବ ମିଶ୍ର—ଝଙ୍କାର : ଗଙ୍ଗାଧର ବିଶେଷାଙ୍କ - ପୃ ୨୯ ) । ଏହି 'କାହାରିକୁ କଷ୍ଟ ଦେବା' ଏବଂ 'ଭଦ୍ରତା କ୍ଷୁର୍ଣ୍ଣ କରିବା' ବ୍ୟାପାରଟିକୁ ଗଙ୍ଗାଧର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦୃଷ୍ଟିରେ ଦେଖୁଥିଲେ ।

ସମ୍ବଲପୁରର "ଆଶା କିଶୋରପାଦ କବି ହୃଦୟର ଅଭିନ୍ନ ବନ୍ଧୁ ଶ୍ରୀ ବ୍ରଜମୋହନ ପଣ୍ଡା କବିପୁତ୍ର ଶ୍ରୀ ଭଗବାନ୍ ମେହେରଙ୍କୁ ନିଜ ଗ୍ରାମ ଲରମ୍ବାରେ ପ୍ରତିଷ୍ଠିତ ସ୍କୁଲରେ ଜଣେ ଶିକ୍ଷକରୂପେ ଗ୍ରହଣ କରିବା ନିମନ୍ତେ ବାରମ୍ବାର ଅନୁରୋଧ କରିଥିଲେ ହେଁ, ଗଙ୍ଗାଧରଙ୍କୁ ସମ୍ମତ କରାଇପାରି ନଥିଲେ । ଗଙ୍ଗାଧରଙ୍କର ଆଶଙ୍କା ଥିଲା, ସେଠାରେ ଆତ୍ମସମ୍ମାନ ବଜାୟ ରଖି ଚାକିରି କରିବା ଭଗବାନ୍‌ଙ୍କ ପକ୍ଷରେ ଅସମ୍ଭବ ହେବ । କାରଣ ଭଗବାନ କୌଣସି 'ସାର୍ଟିଫିକେଟ' ପ୍ରାପ୍ତ ନୁହନ୍ତି । କେବଳ ବନ୍ଧୁତ୍ୱର ଜୋର୍‌ରେ ଜଣେ ସାର୍ଟିଫିକେଟହୀନ ବ୍ୟକ୍ତି ସ୍କୁଲରେ ଯୋଗଦେଇ ଛାତ୍ରମାନଙ୍କଦ୍ୱାରା ଉପହସିତ ହେବ, ଏ କଳ୍ପନା କବିଙ୍କ ପକ୍ଷରେ କ୍ଷୋଭପ୍ରଦ ଥିଲା । ତେଣୁ ସେ ଶ୍ରୀ ପଣ୍ଡାଙ୍କୁ ଲେଖିଥିଲେ, "ଭଗବାନ ଲରମ୍ବା ନ ଯିବାରୁ ଆପଣ ମୋ ପ୍ରତି ଅସନ୍ତୁଷ୍ଟ ହୋଇନାହାନ୍ତି ତ ? ଲରମ୍ବା ସ୍କୁଲ ଡି: କା: ର ଅଧୀନ ଥିବାରୁ ଏବଂ ଭଗବାନ ଏଣ୍ଟ୍ରାନ୍‌ସ ପାସ୍ କରି ନ ଥିବାରୁ କର୍ତ୍ତୃପକ୍ଷଙ୍କ ଦ୍ୱାରା

ଅପମାନ ପାଇବାର ବଡ଼ ଆଶଙ୍କା ହେବାରୁ ତାକୁ ପଠାଇବାରେ ଦ୍ୱିଧା ହେଲା । ଗୁରୁମାନେ ମଧ୍ୟ ସନ୍ଦେହ କରି ଅନାଗ୍ରହ କଲେ, ସ୍କୁଲର ଅବନତ ହେବ ବୋଲି ଭାବିଲ । ଆପଣଙ୍କ ସ୍ନେହ ଏହିବା ମୋ' ପକ୍ଷରେ ଉଚିତ ନୁହେଁ, ତଥାପି ସ୍କୁଲର ଉନ୍ନତରେ ବାଧା ହେବ ଭାବି ସେପରି କରିଅଛି—"

[ ଗଙ୍ଗାଧର ପତ୍ରାବଳୀ—ପୃ. ୧୦୫ ]

୧୯୧୧ ମସିହାର କଥା । ସେତେବେଳକୁ କବି ସମ୍ବଲପୁରରେ ଅବସ୍ଥାପିତ । ସମ୍ବଲପୁରର 'ଉତ୍କଳ ଦର୍ପଣ' ପ୍ରେସ ସୋନପୁର ମହାରାଜାଙ୍କ ଦ୍ୱାରା କ୍ରୀତ ହୋଇ 'ସୋନଭୂଷଣ' ନାମରେ ପ୍ରତିଷ୍ଠିତ ହେଲା । ଖଣ୍ଡେ ସାପ୍ତାହିକ ସମ୍ବାଦପତ୍ର ଓ ନବ୍ୟକାବ୍ୟମାନ ପ୍ରକାଶ କରିବା 'କାବ୍ୟରସିକ ଓ ସାହିତ୍ୟ ପ୍ରେମିକ' ମହାରାଜାଙ୍କର ଉଦ୍ଦେଶ୍ୟ ଥିଲା । ଏଥି ନିମନ୍ତେ ସେ ଟ ୫୦୯ ବେତନରେ ଜଣେ 'ସୁଲେଖକ ଓ ସୁକବିଙ୍କ' ଅନ୍ୱେଷଣରେ ଥିବାର ସମ୍ବାଦ କବିପାଇଥିଲେ । ସେହି 'ପଦ' ନିମନ୍ତେ ବ୍ରଜମୋହନ ସେତେବେଳେ 'ଉତ୍କଳ ବାର୍ତ୍ତା'ର ସମ୍ପାଦକ 'ଶ୍ରୀ ବୈଦ୍ୟନାଥ ଦାସ'ଙ୍କ ନିମନ୍ତେ ଚେଷ୍ଟା କରିବାକୁ ଅନୁରୋଧ ଜଣାଇଛନ୍ତି, ସେତେବେଳେ ଗଙ୍ଗାଧର ଏଥି ନିମନ୍ତେ 'ଯଥାସାଧ୍ୟ ଚେଷ୍ଟା' କରିବା ନିମନ୍ତେ ଅଙ୍ଗୀକାରବଦ୍ଧ ହୋଇଛନ୍ତି । ଏହି 'ପଦ' ନିମନ୍ତେ ତତ୍କାଳରେ ଗଙ୍ଗାଧର ଅଯୋଗ୍ୟ ନଥିଲେ । ବରଂ ମହାରାଜାଙ୍କର ପ୍ରତ୍ୟାଶାର ପୂର୍ଣ୍ଣ ଯୋଗ୍ୟତା ତାଙ୍କଠାରେ ହିଁ ରହିଥିଲା । ସେ ସମୟକୁ କବି ସ୍ୱୟଂ ମାତ୍ର ଟ ୩୦ / ୩୫୯ ବେତନର ସାଧାରଣ କର୍ମଚାରୀ ଥିଲେ । ତାହା ଅପେକ୍ଷା 'ସମ୍ପାଦକତ୍ୱ'ର ପଦଗୌରବ ଯେ ଯଥେଷ୍ଟ, ଅଧିକ ଏ ସମ୍ବାଦ କବିଙ୍କୁ ଅଜଣା ନଥିଲା । ଅବଶ୍ୟ 'ସୋନପୁର ମହାରାଜାଙ୍କ ସହିତ' କବିଙ୍କର 'ସାକ୍ଷାତ୍କାର ବା ପରିଚୟ ଆଳାପ' ନଥିଲା । ତେବେ ସେ ମହାରାଜଙ୍କ ନିକଟରେ ଅପରିଚିତ ନଥିଲେ । ତେଣୁ ସୁଯୋଗ ଦେଖି ପତ୍ର ଲେଖିବା ଅସଙ୍ଗତ ହେବ ନାହିଁ ବୋଲି କବି ସାହସ ବାନ୍ଧିଥିଲେ ।

ନିଜ ସମ୍ପର୍କରେ ଯଦି କବିଙ୍କର ସାମାନ୍ୟ ମାତ୍ର ଚିନ୍ତା ଥାଆନ୍ତା, ତେବେ ପ୍ରଥମରୁ ହିଁ ସେ ଉପରୋକ୍ତ ପଦ ନିମନ୍ତେ ନିଜକୁ ଭାବି ଥାଆନ୍ତେ ଏବଂ ସେ କ୍ଷେତ୍ରରେ ମୁହଁରୁ କଥା ପଦୁଟିଏ ମାତ୍ର ଖସାଇ ଥିଲେ, କବିଙ୍କୁ ସେଥି ନିମନ୍ତେ ବରଣକରି ନିଆଯାଇଥାଆନ୍ତା । ମାତ୍ର କବି ତାହା ନକରି ଅନ୍ୟ ନିମନ୍ତେ ସୁପାରିଶ୍ କରିବାକୁ ଅଣ୍ଟା ଭିଡ଼ିଛନ୍ତି ।

ଏଠାରେ ମଧ୍ୟ କବିଚରିତ୍ରର ସେଇ ଆତ୍ମସମ୍ମାନ ବୋଧ / ସଂଗ୍ରାମୀ ମନୋଭାବ । ନିଜ ନିମନ୍ତେ ଅନ୍ୟର ଦୟାପ୍ରାର୍ଥୀ ହୋଇ ଏକ ଚିରନ୍ତନ ଦାସତ୍ୱର ଜୀବନ ବରଣ କରିଦେବା ଅପେକ୍ଷା ନୀରବ ରହିବାକୁ ହିଁ କବି ଅଧିକ ଶ୍ରେୟ ମଣିଥିଲେ । ଆନନ୍ଦର ସଂସାରରେ ବ୍ୟକ୍ତିର ବହୁ ବନ୍ଧୁ / ଅନେକ ପ୍ରତ୍ୟାଶୀ । ମାତ୍ର ଦୁଃଖବେଗ ତାକୁ ସମ୍ପୂର୍ଣ୍ଣ ଏକାକୀ ହିଁ କରିବାକୁ ପଡ଼ିଥାଏ । ଦୁଃଖର / ବେଦନାର ଭାଗ ନେବାକୁ କେହି ଆଗେଇ ଆସେ ନାହିଁ । କବି ତେଣୁ ନିଜ ସମ୍ମାନବୋଧର ମନୋଭାବରେ ଅପମାନର ଭୟରେ ଏଥିରୁ ନିଜକୁ ଦୂରେଇ ନେଇ ଅଛନ୍ତି ।

ଗଙ୍ଗାଧର ପାଶ୍ଚାତ୍ୟ ଜାତୀୟତା ସହ ପରିଚିତ ହେବାର ସୁଯୋଗ ପାଇ ନଥିଲେ ହେଁ, ସେ କାଳରେ ଦେଶ / ଜାତି ପ୍ରତି ମମତ୍ୱ ବୋଧର ଯେଉଁ ଝଡ଼ ବହୁଥିଲା, ସେଥିରୁ ନିଜକୁ ଦୂରେଇ ରଖିପାରି ନଥିଲେ । ଜଣେ ଚିନ୍ତାଶୀଳ ବ୍ୟକ୍ତି ହିସାବରେ ଦେଶ ଓ ଜାତିର ତାତ୍କାଳୀକ ଦୁରବସ୍ଥା ତାଙ୍କର ସମ୍ବେଦନଶୀଳ ହୃଦୟରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ଏହି ଆଲୋଡ଼ନର

ଝଙ୍କାର ତାଙ୍କ ସାହିତ୍ୟ କ୍ଷେତ୍ରରେ ଦେଖିବାକୁ ମିଳେ । ଉତ୍କଳ ଲକ୍ଷ୍ମୀ / ଉତ୍କଳ ଭାରତୀଙ୍କ ନିବେଦନ / ଉତ୍କଳ ଭାରତୀଙ୍କ ଉକ୍ତି / ଭାରତୀ ରୋଦନ ଭାରତୀ ଭାବନା ପ୍ରଭୃତି ଏହାର ଫଳଶ୍ରୁତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏକ ଉନ୍ନତ / ସମୃଦ୍ଧ ଭାଷା ଜାତୀୟ ଅସ୍ମିତାର ପରିଚାୟକ । ଏଣୁ ଭାଷାର ଉନ୍ନତି କଳ୍ପେ ବହୁ ବଳିଷ୍ଠ ସୂକ୍ତି ଗଙ୍ଗାଧରଙ୍କ ଲେଖନୀରୁ ସୃଷ୍ଟି ହୋଇଥିଲା । ଦୀର୍ଘକାଳ ଧରି ନିଜ ଭାଷା ବ୍ୟବହାର କରି ନପାରିବାର / ନିଜ ପ୍ରଦେଶ ସହିତ ମିଶିରହି ଗୃହବାସରେ ଯଥାର୍ଥ ଆନନ୍ଦ ଉପଭୋଗ କରିନପାରିବାର ଯେଉଁ କ୍ଷୋଭ କବିଙ୍କ ମନରେ ଥିଲା, ତାହା ତାଙ୍କ ସାହିତ୍ୟରେ ପ୍ରକଟିତ ହେଲା । ଭାଷାସୂତ୍ରରେ ପ୍ରଦେଶ ଗଠନର ଯେଉଁ ସ୍ୱପ୍ନ ଶ୍ରୀ ମଧୁସୂଦନ ଦାସ ଦେଖୁଥିଲେ, ତାହା ଗଙ୍ଗାଧରଙ୍କ କଳ୍ପନାଠାରୁ ସ୍ୱତନ୍ତ୍ର ନଥିଲା । "ଉତ୍କଳ ଲକ୍ଷ୍ମୀ"ରେ ଉତ୍କଳର ଯଥାର୍ଥ ସୀମା ନିରୂପଣରୁ ଏହାର ସତ୍ୟତା ପ୍ରମାଣିତ ହୁଏ । ଉତ୍କଳ ସମ୍ମିଳନୀ ସହିତ କବିଙ୍କର ଘନିଷ୍ଠ ଯୋଗାଯୋଗରୁ ମଧ୍ୟ ଏହି ସତ୍ୟ ସମର୍ଥିତ ହୋଇଥାଏ । ଇଂରେଜ ଶକ୍ତି ବିରୁଦ୍ଧରେ ଖୋଲାଖୋଲି ବିଦ୍ରୋହ କରି ଜେଲ୍ ବରଣ କରିନଥିଲେ ହେଁ, କବିଙ୍କର ଦେଶ ପ୍ରେମବୋଧର / ଜାତୀୟତାର ତୁଳନା ନାହିଁ ।

ଗଙ୍ଗାଧରଙ୍କର ବ୍ୟକ୍ତିତ୍ୱର ତିନୋଟି ଦିଗ ହିଁ ଏଠାରେ ଆଲୋଚନା କରାଗଲା । ପରିବେଶ ମଣିଷ ଗଢ଼େ । ପ୍ରସ୍ତୁତିର ପର୍ଯ୍ୟାୟରେ କବି ଯେଉଁ ପାରିବାରିକ ପରିବେଶ ପାଇଥିଲେ, ତାହାହିଁ ଭବିଷ୍ୟତ ଜୀବନରେ ତାଙ୍କୁ ସତ୍ୟବାଦୀ ବିନୟୀ ସହନଶୀଳ ସାଧୁକରି ପ୍ରତିଷ୍ଠା କରିବାରେ ସହାୟକ ହୋଇଥିଲା । ପାଷାଣ-ଉତ୍କୀର୍ଣ୍ଣ ରେଖା ଭଳି ଏଇ ସବୁ ଗୁଣରାଜି ତାଙ୍କ ହୃଦୟରେ ଚିରନ୍ତନ ହୋଇଥିଲା । କବିଙ୍କର ଜାତୀୟତା ଦୀର୍ଘକାଳ ପାଷାଣ-ସ୍ତୂପ ପଡ଼ିଥିବା ଏକ ବୀଜର ଜାତୀୟତା-ନୂତନ ଆଲୋକ / ପରିଷ୍କୃତ ବାୟୁ ନିମନ୍ତେ ଯାହାର ବ୍ୟାକୁଳତା ସ୍ୱତଃସ୍ଫୂର୍ତ୍ତ । ଦୀର୍ଘକାଳର ସାରସ୍ୱତ ସଙ୍ଗ ଏହାକୁ ମାର୍ଜିତ କରିଥିଲା ମାତ୍ର । ନିଜ ଜୀବନ କାଳ ମଧ୍ୟରେ କବି ଉତ୍କଳର ପ୍ରାତଃସ୍ମରଣୀୟ / ଜ୍ଞାନୀ, ଗୁଣୀ, ପଣ୍ଡିତ ବ୍ୟକ୍ତିମାନଙ୍କର ଦୁର୍ଲଭ ସାହଚର୍ଯ୍ୟ ଲାଭ କରିବାର ସୌଭାଗ୍ୟ ପାଇଥିଲେ । ଏମାନଙ୍କ ମଧ୍ୟରେ ଥିଲେ, ରାଧାନାଥ, ମଧୁସୂଦନ, ନନ୍ଦକିଶୋର, ଫକୀର ମୋହନ ପ୍ରଭୃତି ତତ୍କାଳୀନ କବିମଣ୍ଡଳୀ, ବିଶ୍ୱନାଥ, ନୀଳମଣି ବିଦ୍ୟାରତ୍ନ, ଗୌରୀଶଙ୍କର ପ୍ରଭୃତି ଦୁର୍ଦ୍ଧର୍ଷ ସମ୍ପାଦକ ମଣ୍ଡଳୀ, ବ୍ରଜମୋହନ, ରମନାରାୟଣ ପ୍ରଭୃତି ଜାତୀୟବାଦୀ ଯୁବକ ଶ୍ରେଣୀ ଏବଂ ବହୁଦେଶୀୟ ରାଜ୍ୟର ରାଜନ୍ୟମଣ୍ଡଳୀ । ଏମାନେ ସମସ୍ତେ ଗଙ୍ଗାଧର-ପ୍ରତିଭାର ଯଥାର୍ଥ ବୋଦ୍ଧା ଥିଲେ । ଏମାନଙ୍କ ସମ୍ପର୍କରୁ କବି ଅନେକ ଲାଭବାନ୍ ହୋଇଥିଲେ । କବିପ୍ରତିଭା ମନୋଜ୍ଜ୍ୱଳ ଦୀପ୍ତିରେ ଉଦ୍ଭାସିତ ହୋଇଥିଲା । ପ୍ରତିଭା-ଲବ୍ଧ ଦର୍ଶନ ଶକ୍ତି ସାହାଯ୍ୟରେ କବି ଯାହା ଲେଖୁଥିଲେ, ତାହା ତତ୍କାଳୀନ ପଣ୍ଡିତମଣ୍ଡଳୀର ଆଦରର ଧନ ହେଉଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ, କବିବର ରାଧାନାଥ ବାରମ୍ବାର ନିଜ ରଚନା ନିମନ୍ତେ ତିକ୍ତ ସମାଲୋଚନାର ଶରବ୍ୟ ହୋଇଥିଲେ ହେଁ, ଗଙ୍ଗାଧରଙ୍କ ଭାଗ୍ୟରେ ତାହା ଘଟି ନାହିଁ । ଜୀବନ ଭଳି ସାହିତ୍ୟ କ୍ଷେତ୍ରରେ ମଧ୍ୟ କବି ସର୍ବଦା ବିବାଦକୁ ସଯତ୍ନରେ ପରିହାର କରିଆସିଛନ୍ତି । ପ୍ରଖ୍ୟାତ 'ଇନ୍ଦ୍ରଧନୁ / ବିଜୁଳି'ର ତଥାକଥିତ ସାହିତ୍ୟିକ ବିବାଦ ( ଯାହା ନିଛକ ବ୍ୟକ୍ତିଗତ ଈର୍ଷ୍ୟା / ଅସୂୟା ଦ୍ୟୋତକ ବୋଲି ପ୍ରମାଣିତ ) ସମୟରେ କବିଙ୍କର ନୀରବତାରୁ ହିଁ ଏହା ପ୍ରମାଣିତ ହୋଇଯାଏ । ବାରମ୍ବାର ନିନ୍ଦିତ ହୋଇ କବିବର ରାଧାନାଥଙ୍କର ଧୈର୍ଯ୍ୟର ଚୂଡ଼ା ପ୍ରକମ୍ପିତ ହୋଇଥିଲା । ନିଜ ଭଳି ନିଜର ବିଶାଳ ସାହିତ୍ୟ ସୃଷ୍ଟି କାଳେ ଘୃଣିତ ହେବ, ଏଇ ଆଶଙ୍କାରେ କବିମନ ହୋଇଥିଲା ନିୟତ ପୀଡ଼ିତ । ତେଣୁ ସେ ଆକୁଳ ପ୍ରାଣରେ ନିଜର ଅଜସ୍ର

ପାଠକଙ୍କୁ ନିବେଦନ କରି କହିଥିଲେ, "ସଂସାର ନିକଟରେ ମୋହୋର କରପୁଟରେ ନିବେଦନ, ମୋହର ଦୁଷ୍କର୍ମ ସକାଶେ ମୋହୋର ଲେଖାକୁ ଯେପରି କେହି ଦୋଷ ନ ଦିଅନ୍ତି । ମୁଁ ଯାହା ଲେଖିଥିଲି ସରଳ ମନରେ ଲେଖିଥିଲି, ପ୍ରକୃତ ପକ୍ଷେ ସେହି ପୁସ୍ତକର ସହସ୍ର ଗୁଣ ଭକ୍ତି, ସହସ୍ର ଗୁଣ ପକ୍ଷପାତ ମୁଁ ମହାପାପୀ ହେଲେହେଁ, 'ଧର୍ମ ଏକା ସିନା ମହତ ପଣିଆ'—ଏହାହିଁ ମୋହର ମନର କଥା—" [ ରାଧାନାଥ ଜୀବନୀ—୧୯୪୧—ପୃ. ୪୭୧ ] ଏଇ ପ୍ରବଳ ପ୍ରତାପାନ୍ୱିତ ପ୍ରତିଭାର ଏଇ ମର୍ମନ୍ତୁଦ ହାହାକାର ଯେ ଗଙ୍ଗାଧରଙ୍କ ଦୃଷ୍ଟିରେ ପଡ଼ି ନଥିବ, ଏ କଥା ବୋଲିଯାଇ ନପାରେ । ତେଣୁ ନିଜ ନିମନ୍ତେ ବିବାଦର ସମସ୍ତ ପଥ ଏଡ଼ାଇ ଚାଲିବାକୁ କବି ନିଶ୍ଚିତ ଭାବରେ ନିଷ୍ପତ୍ତି ଗ୍ରହଣ କରିଥିବେ ଏହା ଅନୁମାନ କରିବା କଷ୍ଟସାଧ୍ୟ ନୁହେଁ ।

ବ୍ୟକ୍ତିଠାରୁ ତାହାର କର୍ମକୁ ପୃଥକ୍ ଭାବରେ ବିଚାର କରିବାର ପ୍ରଥା ଏ ଦେଶରେ ନାହିଁ । ବ୍ୟକ୍ତି ସତ୍ତ୍ୱା / ସାହିତ୍ୟିକ ସତ୍ତ୍ୱା ମଧ୍ୟରେ ଯେଉଁ ସୂକ୍ଷ୍ମ ବ୍ୟବଧାନଟି ରହିଛି, ତାହା ଏଠାର ଅଜସ୍ର ପାଠକ ଜାଣନ୍ତି ନାହିଁ, ଜାଣିବାର କଥା ମଧ୍ୟ ନୁହେଁ । ତେଣୁ ରାଧାନାଥଙ୍କର ଏଇ ଆକୁଳ ସ୍ୱୀକାରୋକ୍ତି ତତ୍କାଳରେ ଅରଣ୍ୟ ରୋଦନରେ ପରିଣତ ହୋଇଥିବା ସ୍ୱାଭାବିକ । ଗଙ୍ଗାଧର କବିଖ୍ୟାତି ନିମନ୍ତେ ଏହିଭଳି ଏକ 'ବିବଦମାନ 'ବ୍ୟକ୍ତିତ୍ୱ' ହେବାକୁ ଚାହିଁ ନଥିଲେ । ତେଣୁ ମୂଳରୁ ସେ 'ପ୍ରତିବାଦ'ର ପଥଟିକୁ ରୋଧ କରିଦେବା ନିମନ୍ତେ ଯତ୍ନବାନ୍ ଥିଲେ । ଚାରିତ୍ରିକ ବିନୟ ଏବଂ ସାଧୁତା ଏଥିରେ ତାଙ୍କର ସହାୟକ ହୋଇଥିଲା । 'ନିଜେ ଭଲ ହେଲେ ଦୁନିଆଁ ଭଲ' ଏଇ ଆପ୍ତବାକ୍ୟଟିକୁ ସେ ପୂର୍ଣ୍ଣ ପ୍ରାଣରେ ବିଶ୍ୱାସ କରି ଆଚରଣ ମଧ୍ୟ କରୁଥିଲେ । ତେଣୁ ସେ ହୋଇପାରିଥିଲେ 'ଅଜାତ ଶତ୍ରୁ' । କବିବର ରାଧାନାଥ ତାଙ୍କ ସମ୍ପର୍କରେ କି ଉଚ୍ଚଭାବ ପୋଷଣ କରୁଥିଲେ, ତାହା ନିମ୍ନ ପଂକ୍ତିରୁ ଜଣାଯିବ--" ଆପଣଙ୍କଠାରୁ ପତ୍ର ପାଇବା ଓ ପତ୍ରଦେବା ମୋ ଜୀବନର ଉପଭୋଗ ବିଶେଷ । ଆପଣ ନିଶ୍ଚୟ ଜାଣିଥିବେ, ଆପଣ ସୁକବି ଏବଂ ସୁଲେଖକ କେବଳ ଏହି କଥା ମନେକରି ମୁଁ ଯେ ଆପଣଙ୍କୁ ଶ୍ରଦ୍ଧାକରେ, ତାହା ନୁହେଁ; ମୁଁ ଜାଣେ ଆପଣ ପବିତ୍ର ହୃଦୟ ସାଧୁପୁରୁଷ । ଆପଣ କେବଳ ମୋହର ଶ୍ରଦ୍ଧା ଆକର୍ଷଣ କରିଅଛନ୍ତି ତାହା ନୁହେଁ; ସେହି ଶ୍ରଦ୍ଧା ସଙ୍ଗେ ଆନ୍ତରିକ ଭକ୍ତି ମଧ୍ୟ ଆକର୍ଷଣ କରିଅଛନ୍ତି । ଅର୍ଥୈକ ଦୃକ୍ ପଦୈକ ଦୃକ୍ ସ୍ୱାର୍ଥପର ସଂସାର ଚକ୍ଷୁରେ ଆପଣ ଯେତେ ସାମାନ୍ୟ ହେଲେ ହେଁ ମୋହର ଚକ୍ଷୁରେ ଆପଣଙ୍କ ମୂଲ୍ୟ କୋହିନୂର ଅପେକ୍ଷା ଅଧିକ । × × × ଓଡ଼ିଶାକୁ ଯେବେ ସ୍ନେହ କରିବାର ଅନ୍ୟ କୌଣସି କାରଣ ନଥାନ୍ତା, ଏକମାତ୍ର ଆପଣଙ୍କ ହେତୁରୁ ମୁଁ ଓଡ଼ିଶାକୁ ସ୍ନେହ କରନ୍ତି—"

[ ଡଗର ଗଙ୍ଗାଧର ବିଶେଷାଙ୍କ—ପୃ. ୨୮ ]

ରାଧାନାଥଙ୍କ ଲେଖନୀରେ ଗଙ୍ଗାଧରଙ୍କର ଯେଉଁ ବ୍ୟକ୍ତିତ୍ୱଟି ପରିସ୍ଫୁଟ, ସେଥିରୁ ତାହାଙ୍କର ସାଧୁତା / ପବିତ୍ରତା / ନିଃସ୍ୱାର୍ଥପରତା ସହଜରେ ଧରାପଡ଼େ । ତେଣୁ ରାଧାନାଥଙ୍କ ଭଳି ଜ୍ଞାନୀ / ଗୁଣୀ ମଧ୍ୟ ତାଙ୍କୁ 'ଆନ୍ତରିକ ଭକ୍ତି'-କରି ତାହାଙ୍କୁ 'କୋହିନୂର'ଠାରୁ ଅଧିକ ମୂଲ୍ୟବାନ୍ ମନେ କରନ୍ତି । ଏକମାତ୍ର ତାଙ୍କ ନିମନ୍ତେ ପୁଣି 'ଓଡ଼ିଶା' ରାଧାନାଥଙ୍କର ସ୍ନେହର ପାତ୍ର । ଏହା ଅପେକ୍ଷା ଆଉ, କେଉଁ ଭାଷାରେ କବି-ବ୍ୟକ୍ତିତ୍ୱର ଯଥାର୍ଥ ମୂଲ୍ୟାୟନ କରାଯାଇ ପାରିବ ?



*"Literature is a vital record of what men have seen in life; what they have experienced of it, what they have thought and felt about those aspects of it—"*

**Hudson.**

ଜୀବନ ସମ୍ପର୍କୀୟ ଆତ୍ମାଭିବ୍ୟକ୍ତିର ତୀବ୍ର ବାସନାରୁ ସାହିତ୍ୟର ସୃଷ୍ଟି । ଏହି ଆତ୍ମ-ଚିନ୍ତନଧାରାର ବୈଶିଷ୍ଟ୍ୟ / ଜନ-ଜୀବନ ପ୍ରତି ଅସାଧାରଣ ମମତ୍ୱବୋଧ/ ବାସ୍ତବ ଆଉ କଳ୍ପନାର ଜଗତ ମଧ୍ୟରେ ଏକ ଆନୁପାତିକ ସମନ୍ୱୟବୋଧ / ରୂପ-ଦର୍ଶନ ନିମନ୍ତେ ଏକ ଅନ୍ତଦୃଷ୍ଟି ପ୍ରଭୃତିରୁ ସାହିତ୍ୟିକକୁ ଜଣାଯାଇଥାଏ ।

ଗଙ୍ଗାଧର "ସାହିତ୍ୟ ଚର୍ଚ୍ଚା ରୂପ ମହାପାପର ପ୍ରାୟଶ୍ଚିତ୍ତ" କରିବା ନିମନ୍ତେ ବ୍ୟାକୁଳିତ ହୋଇଥିଲେ ହେଁ ସାହିତ୍ୟ ଥିଲା, ତାଙ୍କର ଏକମାତ୍ର ଧ୍ୟାନ / ଧାରଣାର ବିଷୟ । ଏଥି ନିମନ୍ତେ ଅନବରତତା ନିବଂଧନ ବିରକ୍ତି ସମଗ୍ର ପତ୍ରାବଳୀରେ ଦେଖିବାକୁ ମିଳୁଛି । ରାଧାନାଥ କହୁଥିଲେ, "ସାହିତ୍ୟ ଚର୍ଚ୍ଚା ଗୋଟିଏ ଜୀବନ-ବ୍ୟାପୀ ବ୍ରତ । ପୁଣି ସାହିତ୍ୟାନୁରାଗ ଗୋଟିଏ ଈଶ୍ୱରଦତ୍ତ ପଦାର୍ଥ । ଲକ୍ଷେ ବ୍ୟକ୍ତିଙ୍କ ମଧ୍ୟରେ ଜଣେ ଦୁଇଜଣ ସାହିତ୍ୟାନୁରାଗୀ ହୁଅନ୍ତି—" ( କବି-ପରିଚୟ : ରାଧାନାଥ—ଶ୍ରୀ କ୍ଷେତ୍ରବାସୀ ନାୟକ - ପୃ ୧୧ ) ରାଧାନାଥଙ୍କ ଏହି ମନ୍ତବ୍ୟର ସାର୍ଥକତା ଗଙ୍ଗାଧରଙ୍କ ଜୀବନରେ ପୂର୍ଣ୍ଣମାତ୍ରାରେ ହୋଇଥିବାର ଦେଖାଯାଏ ।

ଅଧ୍ୟୟନକାଳରେ କବି-ପ୍ରତିଭାର ପ୍ରସ୍ଫୁଟ ଆରମ୍ଭ ହୋଇଥିଲା । ପାରିବେଶିକ ସଙ୍କୀର୍ଣ୍ଣତା 'ଆହରଣ' ନିମଂତେ କବିଙ୍କୁ ବିଶେଷ ସୁଯୋଗ ଦେଇ ନ ଥିଲା । ତାଙ୍କ ସମ୍ମୁଖରେ ଥିଲା ପ୍ରାଚୀନ ଓଡ଼ିଆ ସାହିତ୍ୟର କେତେଖଣ୍ଡି ଗ୍ରନ୍ଥ ମାତ୍ର । ତାହାକୁ ଆଶ୍ରାକରି କବି କଳ୍ପନା ଲତିକାରେ ମୁକୁଳ ଧରିବାକୁ ଆରମ୍ଭ କରିଥିଲା । ବିଦ୍ୟା-ଶିକ୍ଷା ଶେଷ ହେବା ପରେ ପରେ ଆତ୍ମାଭିବ୍ୟକ୍ତିର ତୀବ୍ର ମାନସିକ ଯନ୍ତ୍ରଣାରୁ ମୁକ୍ତି ଲଭିବା ନିମଂତେ କବି ଲେଖନୀ ଚାଳନା କରି ପ୍ରଥମେ "ଶ୍ଳେଷ ଶ୍ଳେଷ କେତେକ କବିତା ପୂର୍ବ ଧରଣରେ" ଲେଖନ୍ତି ଏବଂ ଏଗୁଡ଼ିକ ମଧ୍ୟରେ "ରସ ରତ୍ନାକର" ବଡ଼ି । ଏହାର ରଚନା ୧୮୮୨ ରୁ" ଅହଲ୍ୟା ସ୍ତବ ରଚିତହେବା ପୂର୍ବରୁ ଅର୍ଥାତ୍ ୧୮୯୧ ମଧ୍ୟରେ କୌଣସି ସମୟରେ ହୋଇଥିବା ସମ୍ଭବପର ।

କବି-ପ୍ରତିଭାର ସୃଷ୍ଟି ଲଗ୍ନ ମହା ଆଡ଼ମ୍ବରପୂର୍ଣ୍ଣ ଥିଲା । ରୀତିଯୁଗୀୟ କାବ୍ୟଶୈଳୀର ବିଶୁଦ୍ଧ ଅନୁସରଣରୁ ଏହା ହିଁ ପ୍ରମାଣିତ । ଏହି ସମୟକୁ ରାଧାନାଥୀ ପ୍ରତିଭାର ପୂର୍ଣ୍ଣ ବିକାଶ ଘଟିସାରିଥିଲା । କାରଣ ୧୮୭୩ ରୁ ୧୮୯୨ ଭିତରେ ରାଧାନାଥ 'ମେଘଦୂତ', 'କବିତାବଳୀ', 'କେଦାରଗୌରୀ', 'ଚନ୍ଦ୍ରଭାଗା', 'ନନ୍ଦିକେଶ୍ୱରୀ', 'ଉଷା', 'ଚିଲିକା', 'ପାର୍ବତୀ', 'ମହାଯାତ୍ରା', ଇତ୍ୟାଦି ଲେଖି ସାରିଥିଲେ । ଗଙ୍ଗାଧର ଅବଶ୍ୟ ଏଗୁଡ଼ିକୁ ଦେଖିବାର ସୁଯୋଗ ଲଭ କରିଥିବେ । ରୁଚିପରିବର୍ତ୍ତନର ଯେଉଁ ସଙ୍କେତ

ଏହି କାବ୍ୟଗୁଡ଼ିକ ବହନ କରୁଥିଲା, ତାହା କବି-ମାନସରେ ଚିନ୍ତା-ସଂଘର୍ଷ ଉପସ୍ଥିତ କରାଇବା ନିମନ୍ତେ ପର୍ଯ୍ୟାପ୍ତ ଥିଲା । ତଥାପି କବିଙ୍କର ବିଶିଷ୍ଟ ସୃଷ୍ଟି 'ଅହଲ୍ୟାସ୍ତବ' ପାରମ୍ପରିକତାର ମୋହରୁ ନିଜକୁ ମୁକ୍ତ ରଖି ପାରିନାହିଁ । ପରମ୍ପରାର ମୋହ ବଡ଼ ମୋହ । ସୃଷ୍ଟିକ୍ଷମ ପ୍ରତିଭା ହିଁ ଏହାକୁ ଏଡ଼ାଇ ପାଇପାରେ । ଆଲୋଚ୍ୟ ସମୟକୁ ଗଙ୍ଗାଧରଙ୍କର ସର୍ଜନା-ଶକ୍ତିର ପୂର୍ଣ୍ଣବିକାଶ ଆହୁରି ହୋଇ ପାରିନଥିଲା । ପରବର୍ତ୍ତୀକାଳରେ ମଧ୍ୟ କବି ଏଥିରୁ ସମ୍ପୂର୍ଣ୍ଣଭାବେ ମୁକ୍ତ ହୋଇଥିଲେ ବୋଲି କୁହାଯାଇ ନପାରେ । କାରଣ ୧୯୧୨ ବେଳକୁ କବି ଏହା ସ୍ୱୀକାରକରି ଲେଖିଛନ୍ତି, "ପ୍ରାଚୀନ ବିଷୟମାନଙ୍କର କବିତା ଆଜକାଲି ମାସିକ ପତ୍ରମାନଙ୍କରେ ସ୍ଥାନ ପାଇବାର ଅନୁପଯୁକ୍ତ ବିବେଚିତ ହେଉଥିବା ପରି ବୋଧ ହୁଏ । ସେହି ହେତୁରୁ ମୁକୁରରେ 'ତପସ୍ୱିନୀ' କାହାରୁ ନଥିବ—" (ଗଙ୍ଗାଧର ପତ୍ରାବଳୀ ପୃ. ୧୬/୧୭) ତେବେ କବି ନିଜକୁ ପରିବର୍ତ୍ତିତ କରୁଥିଲେ । ଅଭିବ୍ୟକ୍ତିର ଧାରାରେ ରୁଚିପରିବର୍ତ୍ତନର ଆଦ୍ୟସଂକେତ "ଇନ୍ଦୁମତୀ"ରେ ଦେଖିବାକୁ ମିଳିଥାଏ । ରାଧାନାଥ ଏହି ଗ୍ରନ୍ଥ ପାଠକରି ମନେ କରିଥିଲେ, "ଇନ୍ଦୁମତୀ'ର ଆଉ ଗୋଟିଏ ପ୍ରଧାନ ଗୁଣ ଏହି ଯେ, ଏଥିରେ ଏପରି କୌଣସି ଭାବ ବା ଶବ୍ଦ ନାହିଁ, ଯାହା ଆଧୁନିକ ରୁଚି ଅନୁସାରେ ବର୍ଜନୀୟ ବୋଲି ବିବେଚିତ ହେବ ।" ପ୍ରସ୍ତୁତି ପର୍ବ ସମ୍ପୂର୍ଣ୍ଣ ହୋଇଗଲା । ଏଣିକି ବିଜୟଯାତ୍ରାର ଆରମ୍ଭହେଲା ।

ପ୍ରତିଭା-ପ୍ରସ୍ତୁତିର ଆଦ୍ୟ ପର୍ବରେ ଆଉ ଜଣେ ବ୍ୟକ୍ତିଙ୍କର ପ୍ରରୋଚନା ଗଙ୍ଗାଧରଙ୍କର ଦିଗଦର୍ଶକ ହୋଇଥିଲା । ସେ ହେଉଛନ୍ତି ବିଦ୍ୟାଳୟ-ସବ୍‌-[illegible] ଶ୍ରୀ [illegible] ମିଶ୍ର । ଶ୍ରୀ ମିଶ୍ରଙ୍କର ଶିକ୍ଷିତ / ପରିଶୀଳିତ ଚକ୍ଷୁରେ ଗଙ୍ଗାଧରଙ୍କ ପ୍ରତିଭାର ସ୍ୱଚ୍ଛନ୍ଦ ବିଗତି ସହଜରେ ପରିସ୍ଫୁଟ ହୋଇଥିଲା । ସେ ଜାଣିପାରିଥିଲେ, ପ୍ରତିଭାର ଏହି ବାଳ ଲତିକାଟିକୁ ଉତ୍ସାହ / ପ୍ରେରଣା-ନୀର ଦାନରେ ପରିଚର୍ଯ୍ୟା କରିପାରିଲେ ସମୟରେ ଏହା ସୁବାସିତ ପୁଷ୍ପର ଜନନୀ ହୋଇପାରିବ । ତେଣୁ ଗଙ୍ଗାଧର ତାଙ୍କର ନିୟତ ଅନୁଯୋଗର ପାତ୍ର ହୋଇଥିଲେ । ଶ୍ରୀ ମିଶ୍ର ହିଁ ପ୍ରଥମେ ଗଙ୍ଗାଧରଙ୍କୁ ଯୁଗସଂକେତ ସମ୍ପର୍କରେ ସୂଚନା ଦେଇ ପ୍ରୟୋଜନାନୁକୂଳ ଆଧୁନିକ ସ୍ତରର କାବ୍ୟ-କବିତା ସର୍ଜନାକରିବା ନିମନ୍ତେ କହିଥିଲେ । କବିର ସଦା-ପ୍ରଶଂକାତର ମନ ଯେଉଁ ପ୍ରେରଣା ଟିକିକ କାମନା କରୁଥିଲା, ଶ୍ରୀ ମିଶ୍ର ସେତିକ ତାଙ୍କୁ ଯୋଗାଇଦେଲେ । ତେଣୁ ସୃଷ୍ଟିଧାରା ତାହାର ଗତି ପରିବର୍ତ୍ତନ କରି ଉପଯୁକ୍ତ ପଥରେ ବହିଯିବାକୁ ଆରମ୍ଭକଲା ।

ପଶ୍ଚିମ ଓଡ଼ିଶାର ଦୁର୍ଗମ ମୂଲକର ଏକ ପ୍ରାୟ ଅପରିଚିତ ବ୍ୟକ୍ତିଠାରୁ 'ଇନ୍ଦୁମତୀ' ଭଳି କାବ୍ୟ ଉପହାର ପାଇ କବିବର ରାଧାନାଥ ବିସ୍ମୟାଭିଭୂତ ହୋଇଥିଲେ । ରାଧାନାଥ ଅନୁଭବ କରିଥିଲେ, "ଗ୍ରନ୍ଥକାର ଉଚ୍ଚଶିକ୍ଷାର ସୁବିଧାପାଇ ନଥିଲେ, ମାତ୍ର ତାହାଙ୍କର ନୈସର୍ଗିକ ପ୍ରତିଭା ସେହି ଅଭାବ ପୂରଣ କରିଦେଇଅଛି । ସେହି ପ୍ରତିଭା ବଳରେ ସେ ପ୍ରକୃତିର ସୌନ୍ଦର୍ଯ୍ୟ ବିଶେଷ ଭାବରେ ପୁସ୍ତକରେ ନ ଦେଖି ସେଥିରେ ବୃକ୍ଷ ଓ ପ୍ରତ୍ୟକ୍ଷ କରିଅଛନ୍ତି ଏବଂ ଯାହା ଦେଖି ଅଛନ୍ତି, ତାହା ଯଥାଯଥ ବର୍ଣ୍ଣନା କରିଅଛନ୍ତି—" ତତ୍କାଳରେ ଆଧୁନିକ ଓଡ଼ିଆ କାବ୍ୟ ଜଗତର ମୁକୁଟ ବିହୀନ ସମ୍ରାଟ୍ ରାଧାନାଥଙ୍କ ଠାରୁ ଏହି ମନ୍ତବ୍ୟ ଲାଭକରିବା କିଛି ସାମାନ୍ୟ ବ୍ୟାପାର ନଥିଲା । ଏହା ଯେ କବିମନରେ ଦୃଢ଼ ଆତ୍ମବିଶ୍ୱାସର ଜନକ ହୋଇଥିବ, ଏଭଳି ଅନୁମାନ କରିବା କଷ୍ଟକର ନୁହେଁ ।

କବି ପ୍ରତିଭାର ଆଦ୍ୟ ଓଁକାର ଧ୍ୱନି 'ରସରତ୍ନାକର' (୧୮୮୫) ମାଧ୍ୟମରେ ଶୁଣାଯାଇଥିଲା । କବି ଏହାକୁ 'ପୂର୍ବାଧରଣରେ' ଏକ ବଡ଼ କବିତା ମାତ୍ର ବୋଲି ଉଲ୍ଲେଖ କରିଥିଲେ ହେଁ, ଯଥାର୍ଥତଃ

ଏହା ବିଭିନ୍ନ ଛନ୍ଦରେ ରଚିତ ଆଠଟି ସର୍ଗ ବିଶିଷ୍ଟ ଏକ କାବ୍ୟ । ଏଥିରେ ଆଦ୍ୟପ୍ରାନ୍ତ 'ବ କାର' ନିୟମକୁ ବିଶ୍ୱସ୍ତ ଭାବରେ ଅନୁସରଣ କରାଯାଇଛି । ଏହାକୁ ମଧ୍ୟଯୁଗୀୟ କାବ୍ୟ-ପରମ୍ପରାର ଏକ ସାର୍ଥକ ପ୍ରତିବିମ୍ବ ବୋଲି ଗ୍ରହଣ କରାଯାଇପାରେ । ଶବ୍ଦର ଆଡ଼ମ୍ବର ପୂର୍ଣ୍ଣ ଗୁମ୍ଫନ / ଭାଷା ପ୍ରୟୋଗର ଆଭିଜାତ୍ୟ ପୂର୍ଣ୍ଣ ଶିଳ୍ପକୌଶଳ / ଆଳଙ୍କାରିକତାର ରୀତିଯୁଗୀୟ ବିନ୍ୟାସ ତଥା ରସସୃଷ୍ଟିର ନିରବଚ୍ଛିନ୍ନ ଉଦ୍ୟମର ପୂର୍ବୋଦ୍ଦୃଷ୍ଟିରେ ଉପରୋକ୍ତ ମନ୍ତବ୍ୟର ସାର୍ଥକତା ପ୍ରମାଣିତ ହୋଇଯାଏ । ବର୍ଣ୍ଣନା-ପରିପାଟୀ ମାଧ୍ୟମରେ ନିଜକୁ ଅଭିବ୍ୟକ୍ତ କରିବାର ଏକ ଆନ୍ତରିକ ପ୍ରଚେଷ୍ଟା ମଧ୍ୟରୁ ମଧ୍ୟଯୁଗୀୟ କାବ୍ୟ-ପରମ୍ପରାର ସୃଷ୍ଟି । ବିଷୟବସ୍ତୁ ଉପସ୍ଥାପନର ମୌଳିକ କୌଶଳ / ଚରିତ୍ରରେ ନାଟକୀୟତା / ଚମତ୍କାରିତା / ଆକସ୍ମିକତା / ଆଦର୍ଶ ଭାବର ପ୍ରୟୋଗ ଯେ ଉନ୍ନତ କାବ୍ୟ-ପରମ୍ପରାର ଜନକ ମଧ୍ୟଯୁଗୀୟ କାବ୍ୟ-ପରମ୍ପରାରେ (ଯାହା ପୁଣି ସଂସ୍କୃତ-କାବ୍ୟ ପରମ୍ପରାର କାବ୍ୟିକ ପରିପ୍ରକାଶ ମାତ୍ର) ଏହା ସ୍ୱୀକୃତ ହୋଇନଥିଲା । ତେଣୁ ଏହି କାବ୍ୟରେ କବିତାର 'Form' ନେଇ କୌଣସି କବି ମୁଣ୍ଡ ଖେଳାଇ ଥିବାର ଦେଖାଯାଏ ନାହିଁ । ସାହିତ୍ୟ କ୍ଷେତ୍ରରେ ଆଧୁନିକ ରୀତି ପୂର୍ଣ୍ଣମାତ୍ରାରେ ପାଶ୍ଚାତ୍ୟ ସଂସର୍ଗର ଫଳ, ଯାହା ବଙ୍ଗଳା ଭାଷାରେ ସର୍ବପ୍ରଥମେ 'ମାଇକେଲ୍ ମଧୁସୂଦନ ଦତ୍ତ' ପ୍ରଚଳନ କରାଇଥିଲେ । ରାମାୟଣ / ମହାଭାରତରୁ 'ବିଷୟବସ୍ତୁ' ସଂଗ୍ରହ କରିଥିଲେହେଁ କଥାବସ୍ତୁର ମୌଳିକ-ଉପସ୍ଥାପନ ହିଁ ତାଙ୍କ କବି-କୃତିର ପ୍ରଧାନ ବୈଶିଷ୍ଟ୍ୟରୂପେ ଗ୍ରହଣୀୟ ହେଲା । କବିବର ରାଧାନାଥ ବିଭିନ୍ନ କ୍ଷେତ୍ରରେ 'ମାଇକେଲ୍'ଙ୍କୁ ନିଜର ଆଦର୍ଶରୂପେ ଗ୍ରହଣ କରିଥିଲେ । ତେଣୁ 'କାବ୍ୟ-ରଚନା'ର ଏହି ନୂତନ ରୀତିଟିକୁ ସେ ନିଜପାଇଁ ଗ୍ରହଣ କରିନେଇ ଥିବାର ଅସମ୍ଭବ ନୁହେଁ । କାବ୍ୟ କ୍ଷେତ୍ରରେ ଏହି ପ୍ରାୟୋଗିକ ନୂତନତା ସମ୍ପର୍କରେ କିଛି ଜାଣିବା / କିମ୍ବା ଜାଣିଥିଲେ ତାହାର ସଫଳ ପ୍ରୟୋଗ ନିମନ୍ତେ ଉଦ୍ୟମୀ ହେବା, ଗଙ୍ଗାଧରଙ୍କ ପକ୍ଷରେ ସମ୍ଭବ ନଥିଲା । ତାହା ଛଡ଼ା ହଠାତ୍ ପରମ୍ପରାର ବନ୍ଧନ ଭାଙ୍ଗି ନୂତନ ଏକ କାବ୍ୟ-ରୀତିକୁ ନିଜର କରିନେବା ନିମନ୍ତେ ଗଙ୍ଗାଧରଙ୍କର ସଦା-ରକ୍ଷଣଶୀଳ କବିସତ୍ତା ପ୍ରସ୍ତୁତ ନଥିଲା । ତେଣୁ ଏଠାରେ ଆଦର୍ଶ ସଂଘର୍ଷର ପ୍ରଶ୍ନ ନଥିଲା । ଗଙ୍ଗାଧର ଦୀର୍ଘ କୋଡ଼ିଏ ବର୍ଷକାଳ ପରମ୍ପରା ମଧ୍ୟରେ ବଢ଼ି ଉଠିଥିଲେ । ଯୁଗ ପରିବର୍ତ୍ତନର ସଙ୍କେତ ବହନ କରୁଥିବା ରାଧାନାଥୀ କାବ୍ୟ-ପରମ୍ପରାର ଚମତ୍କାରିତା ତାଙ୍କର ପ୍ରତିଭାଶାଳୀ କବି ମନରେ ଧରାପଡ଼ିଯାଇ ଥିଲେହେଁ ସହସା ଏଇ ନୂତନରୀତିକୁ ଗ୍ରହଣକରି ସେଥିରେ ନିଜକୁ ପ୍ରକଟିତ କରିବା ସହଜବ୍ୟାପାର ନଥିଲା । ତେଣୁ ଅନୁଶୀଳନ ଜାରି ରହିଥିଲା ଏବଂ ଏହି ଅବସରରେ ଅଭିବ୍ୟକ୍ତିର ଯନ୍ତ୍ରଣାରୁ ମୁକ୍ତିଲାଭ ନିମନ୍ତେ 'ଛୋଟ ଛୋଟ କେତେକ କବିତା ପୂର୍ବଧରଣର' ଲିଖିତ ହୋଇଥିବା ସମ୍ଭବପର । ଏଗୁଡ଼ିକ ମଧ୍ୟରେ 'ରସରତ୍ନାକର' ବଡ଼ ବୋଲି କୁହାଯାଇଛି ।

କବିପ୍ରତିଭାର ବିକାଶ ନିମନ୍ତେ ଏକ ଆଦର୍ଶର ନିତାନ୍ତ ପ୍ରୟୋଜନ । ମଧ୍ୟ-ଯୁଗୀୟ କାବ୍ୟ-ପରମ୍ପରାର ବିପୁଳତା ତଥା ପ୍ରତିଷ୍ଠିତ ଧାରା କବି-ସତ୍ତାକୁ ଅଧିକ ପ୍ରଭାବିତ କରିଥିବା ତେଣୁ ଯୁକ୍ତିଯୁକ୍ତ । ଆଲୋଚ୍ୟକାଳ ମଧ୍ୟରେ 'ପରିବର୍ତ୍ତନବାଦୀ' କାବ୍ୟ / କବିତା କହିଲେ କେବଳ ରାଧାନାଥଙ୍କର କତିପୟ ରଚନା, ଯେଉଁଗୁଡ଼ିକ ପୁଣି ନିଜର ଅଭିନବତା ନିମନ୍ତେ ବହୁମୁଖରେ ସମାଲୋଚିତ ହେଉଥିଲା । ରାଧାନାଥ ନିଜ ନିମନ୍ତେ ଏକ ସ୍ୱତନ୍ତ୍ର / ପୂର୍ଣ୍ଣ ନୂତନ ମାର୍ଗ ଗଠନରେ ବ୍ୟସ୍ତ ଥିଲେ, ପାରମ୍ପରିକ / ଗତାନୁଗତିକ କାବ୍ୟମାର୍ଗର ସମାନ୍ତରାଳ ସୃଷ୍ଟି ଭାବରେ ନୂତନତାର ଭଲ / ମନ୍ଦ ଉତ୍ତମରୂପେ ପ୍ରତିଷ୍ଠିତ ନ ହେବା ପର୍ଯ୍ୟନ୍ତ ତାହା ସର୍ବଜନ ସ୍ୱୀକୃତ ହୁଏନାହିଁ । ତେଣୁ ତାହାର

ରାଧାନାଥଙ୍କର ଏହି ନୂତନ ମାର୍ଗକୁ ସାବଧାନତାର ସହିତ ଲକ୍ଷ୍ୟ କରୁଥିଲେ ହେଁ, ନିଜେ ସେହି ମାର୍ଗର ପଥିକ ହେବା ନିମନ୍ତେ ସାହସ କରିପାରି ନଥିଲେ । ସଦା-ବିନମ୍ର କବିମନ ଅନ୍ୟର ଭର୍ତ୍ସନା-ଭୀଷଣ-ବିମୁଖୀ ଥିଲା । ୧୮୯୪ ସାଲରେ ରଚିତ ହୋଇଥିବା 'ଉତ୍କଳ-ଲକ୍ଷ୍ମୀ' ଯେତେବେଳେ ୧୮୯୭ ମସିହାରେ 'ହିତୈଷିଣୀ' ଦ୍ୱାରା ମୃଦୁ-ସମାଲୋଚିତ ହେଲା, ଗଙ୍ଗାଧରଙ୍କର ସ୍ପର୍ଶ କାତର କବି-ସତ୍ତା ବିଚଳିତ ହୋଇ ଉଠିଲା । 'ହିତୈଷିଣୀ' ପ୍ରଥମରୁ 'ରଚନାକୁ ସ୍ଥାନେ ସ୍ଥାନେ ମଧୁର' ବୋଲି ସ୍ୱୀକାର କରି 'କବିଙ୍କୁ' ଜଣେ ପ୍ରତିଭାଶାଳୀ ବ୍ୟକ୍ତି ବୋଲି ବର୍ଣ୍ଣନା କରି ଏପରି ଅକଅଷ୍ଟିତକର କାର୍ଯ୍ୟରେ ହସ୍ତକ୍ଷେପ କରିବା ପ୍ରତିଭାର ଅପବ୍ୟବହାର' ବୋଲି ମନେ କରିଥିଲେ । ସଦା-ସଙ୍କୁଚିତ ଗଙ୍ଗାଧରଙ୍କୁ ସଂକୁଚିତ କରିଦେବା ନିମନ୍ତେ ଏତିକି ହିଁ ଯଥେଷ୍ଟ ଥିଲା । କବିପୁରୁଷ କିଛିପରି ଦୁର୍ଭେଦ୍ୟ-ବର୍ମରେ ଆତ୍ମ ଗୋପନ କଲା । ଆତ୍ମପ୍ରକାଶ ପୁନର୍ବାର ଘଟିଲା ୧୯୦୩ ମସିହାରେ । ତେଣୁ ସମାଲୋଚନା ବିମୁଖୀ / ସ୍ୱଶକ୍ତି ଅନଭିଜ୍ଞ ଗଙ୍ଗାଧର ଯେ ରାଧାନାଥୀ-କାବ୍ୟ ମାର୍ଗର ଦୁଃସାହସିକ ଅନୁସରଣରୁ ନିବୃତ୍ତ ରହିଥିଲେ, ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ପ୍ରାଚୀନ-ଆଦର୍ଶରେ 'ରସ-ରତ୍ନାକର' ରଚିତ ହୋଇଥିଲେ ହେଁ କବି ଭଞ୍ଜ / ଦୀନକୃଷ୍ଣଙ୍କ ଠାରୁ ଯେ ଅଧିକ କିଛି କରିପାରି ନଥିଲେ, ଏହା ତାଙ୍କ ନିକଟରେ ଅଜଣା ନଥିଲା । ଯୁଗ-ପ୍ରୟୋଜନ 'ରସ ରତ୍ନାକର' ମଧ୍ୟରୁ ଏ ଭଳି କିଛି ପାଇବ ନାହିଁ, ଯାହା ପୂର୍ବ କବିମାନଙ୍କର ରଚନାରେ ନାହିଁ । ଏହି ନିର୍ମମ ସତ୍ୟ କବି ବୁଝିପାରିଥିଲେ । ଅବଶ୍ୟ ବିଷୟବସ୍ତୁ ନିର୍ବାଚନରେ ଭାରତୀୟ ଉପାଦାନ ନିମନ୍ତେ କବି ଚିତ୍ତ ସଙ୍କୁଚିତ ହୋଇଥିବ, ଏ ଭଳି ବୋଲିହେବ ନପାରେ । ଭାରତୀୟ ଉପାଦାନରେ ସେ ସମୟରେ ଅନେକେ କାବ୍ୟ କବିତା ରଚନା କରି ପ୍ରତିଷ୍ଠିତ ହୋଇଥିଲେ । ବଙ୍ଗ କବି ମାଇକେଲ୍ ତ ମୂଳତଃ ଭାରତୀୟ ଉପାଦାନ ମାଧ୍ୟମରେ ହିଁ ନିଜକୁ ପ୍ରକଟିତ କରୁଥିଲେ । ରାଧାନାଥଙ୍କ କାବ୍ୟ-ସମ୍ଭାରରେ ଭାରତୀୟ ଉପାଦାନର ଅଭାବ ନାହିଁ । ଏଣୁ ଏଭଳି ପରିସ୍ଥିତିରେ ଗଙ୍ଗାଧର ରାଧାନାଥଙ୍କ ଉତ୍ତରରେ 'ରସ-ରତ୍ନାକର'ର ପ୍ରସ୍ତୁତି ବନ୍ଦ ରଖିଥିଲେ, ଏଭଳି ଅନୁମାନ ନିରର୍ଥକ । ପାରମ୍ପରିକ ଚେତନାରେ ପ୍ରୟୋଜନୀୟତା ସମ୍ପର୍କରେ କବି-ଚିତ୍ତର ଦୋଳାୟିତ ମନୋଭାବକୁ ହିଁ ଏହାର ଏକମାତ୍ର କାରଣ ରୂପେ ନିର୍ଦ୍ଦେଶ କରିଯାଇପାରେ । ଅଦ୍ୟାବଧି ଅପ୍ରକାଶିତ ଏହି ରଚନାର କତିପୟ ଅଂଶ ମାତ୍ର ଗଙ୍ଗାଧର ଜୀବନୀରେ ପ୍ରକାଶିତ ।

କବି ମାନସର ତତ୍କାଳୀନ ସ୍ୱରୂପଟି ୨ । ୯ । ୧୧ ତାରିଖରେ ଶ୍ରୀ ବ୍ରଜମୋହନ ପଣ୍ଡାଙ୍କୁ ଲେଖିଥିବା ଚିଠିରୁ ଜଣାଯାଇଥାଏ । ଶ୍ରୀ ପଣ୍ଡାଙ୍କ ରଚନା ଉପରେ ମନ୍ତବ୍ୟ ଦେଇ କବି ଲେଖିଛନ୍ତି, "ଏତେବେଳକୁ ଆପଣ ପଠିତ ପୁସ୍ତକମାନଙ୍କର ଭାବ ଓ ଭାଷା ଉପରେ ନିର୍ଭର କରୁଅଛନ୍ତି । କ୍ରମେ କ୍ରମେ ତାହା ଦୂର ହୋଇ ନିଜର ହୃଦୟରୁ ସୁନ୍ଦର ସୁନ୍ଦର ଭାବ ଓ ଭାଷା ବହିର୍ଗତ ହେବ । ମୁଁ ମଧ୍ୟ ପ୍ରଥମରେ ସେହିପରି ଲେଖୁଥିଲି—" [ ଗଙ୍ଗାଧର ପତ୍ରାବଳୀ ପୃ. ୭୫ ] ଏହି ଆତ୍ମକଥନ 'ରସ ରତ୍ନାକର' ଏବଂ 'ନଳୋଦୟାସ୍ତବ' କ୍ଷେତ୍ରରେ ଏକାନ୍ତ ଭାବରେ ସତ୍ୟ । 'ପଠିତ ପୁସ୍ତକମାନଙ୍କର ଭାବ ଓ ଭାଷା ଉପରେ ନିର୍ଭର କରୁଥିବା, କବି-ଚିତ୍ତ ପ୍ରଥମରୁ 'ନିଜ ହୃଦୟରୁ ସୁନ୍ଦର ସୁନ୍ଦର ଭାବ ଓ ଭାଷା' ପାଇ ନାହିଁ । ତେଣୁ 'ଅବଲମ୍ବନ' ହିଁ କବିଙ୍କର ଏକମାତ୍ର ଉପାୟ ହୋଇଛି । ଅବଶ୍ୟ 'ସୁନ୍ଦର ଭାବ ଓ ଭାଷା' ନିମନ୍ତେ କବି ଅନ୍ୱେଷଣରୁ ନିବୃତ୍ତ ହୋଇନାହାନ୍ତି । ଏହାର ପରିଚୟ ତାହାଙ୍କର ପରବର୍ତ୍ତୀ ରଚନା ଗୁଡ଼ିକରୁ ମିଳିଥାଏ । 'ପଠିତ ପୁସ୍ତକର ଭାବ ଓ ଭାଷାର ନିର୍ଭର'

'ରସ ରତ୍ନାକର'ର ପ୍ରଚ୍ଛର କବିଚରିତ୍ରର ଅନୁମୋଦନ ଲାଭ କରିପାରି ନଥିବା, ଏହାର ଦ୍ୱିତୀୟ କାରଣ ରୂପେ ନିର୍ଦ୍ଦେଶ କରାଯାଇପାରେ ।

'ରସ ରତ୍ନାକର'ର ବିଷୟବସ୍ତୁ ଏ ଦେଶରେ ବହୁ ପ୍ରଚଳିତ । ବାଣାସୁର-ରାଜନନ୍ଦିନୀ ଊଷା ସହିତ ଶ୍ରୀକୃଷ୍ଣ ପୌତ୍ର ଅନିରୁଦ୍ଧର ଗୋପନ ପ୍ରଣୟ ବୃତ୍ତାନ୍ତର ମିଳନାତ୍ମକ ପରିଣତିକୁ ନେଇ ଏହି କାବ୍ୟଟି ରଚିତ । ପ୍ରଥମରୁ ଆମେ କହିଛୁଁ, କଥାବସ୍ତୁର ଉପସ୍ଥାପନରେ କୌଣସି ମୌଳିକ କୌଶଳ ଏଠାରେ ଅନୁସୃତ ହୋଇ ନାହିଁ । ବରଂ ବର୍ଣ୍ଣନା-ପରିପାଟୀ ହିଁ ଏହି ଗ୍ରନ୍ଥଟିର ଏକମାତ୍ର ଭାବ-ସମ୍ପଦ । ଏହି ବର୍ଣ୍ଣନା ପରିପାଟୀ ପୁଣି ଭଞ୍ଜ / ଦୀନକୃଷ୍ଣ / ଅଭିମନ୍ୟୁ ପ୍ରଭୃତି ରୀତି କବିମାନଙ୍କର ପ୍ରୟୋଗର ବିଶ୍ୱସ୍ତ ଅନୁସରଣ । ଊଷାର ରୂପ ବର୍ଣ୍ଣନା / ସ୍ୱପ୍ନାନ୍ତର ବିଳାପ ପ୍ରଭୃତିରୁ ଏହା ପ୍ରମାଣିତ ହୋଇଯାଏ । ଏହି ଅନୁସରଣ ପଦ୍ଧତିକୁ ଗଙ୍ଗାଧରଙ୍କ ନିଜ ଭାଷାରେ ପ୍ରକାଶ କରାଯାଇପାରେ । "ଗୋଟିଏ ହସ୍ତୀ ସ୍ୱାଧୀନ ଭାବରେ ଚାଲିଗଲେ, ତାହାର ଗତିର ଯେଉଁ ଶୋଭା ଥାଏ, ଅନ୍ୟ ଗୋଟିଏ ହସ୍ତୀ ପୂର୍ବଗାମୀ ହସ୍ତୀର ଠିକ୍ ପଦଚିହ୍ନ ଉପରେ ପଦକ୍ଷେପ କରି କରି ଚାଲିଲେ ସେ ଶୋଭା ରହିପାରେ ନାହିଁ; କିନ୍ତୁ ସେହି ମାର୍ଗରେ ହଂସର ନୈସର୍ଗିକ ଗତି ଦର୍ଶନୀୟ ହୋଇଥାଏ—" [ ପ୍ରଣୟ ବଲ୍ଲରୀ—ଭୂମିକା ] ଆମ ମତରେ 'ରସ ରତ୍ନାକର'ରେ ଗଙ୍ଗାଧରଙ୍କ ପଦ ବିନ୍ୟାସ ପୂର୍ବ ହସ୍ତୀର ପଦ ଚିହ୍ନ ଉପରେ ପଦପାତ କରି କରି ଅନ୍ୟଏକ ହସ୍ତୀର ଅଗ୍ରସର ହେବା ସହିତ ତୁଳିତ ହୋଇପାରେ ଏବଂ ଏହି ମାର୍ଗରୁ ଅନ୍ୟ ଏକ ହଂସର ନୈସର୍ଗିକ ଗତିର ଦର୍ଶନୀୟ ସୌନ୍ଦର୍ଯ୍ୟ ଏଥିରେ ନାହିଁ । ଏହାର ଅର୍ଥ ନୁହେଁ ଯେ, ଗଙ୍ଗାଧର ଶକ୍ତିଶାଳୀ କବି ନଥିଲେ । ତାହାଙ୍କ ରଚନା ଯେ ସୌନ୍ଦର୍ଯ୍ୟବିହୀନ ଏହା ମଧ୍ୟ ପ୍ରମାଣ କରିବା ଆମର ଉଦ୍ଦେଶ୍ୟ ନୁହେଁ । କେବଳ ବିଶାଳ ମଧ୍ୟଯୁଗୀୟ ସାହିତ୍ୟରୁ 'ଗଙ୍ଗାଧର'ଙ୍କର ସ୍ୱତନ୍ତ୍ର କବିସତ୍ତାଟିର ଅସଫଳ ଅନ୍ୱେଷଣ ହିଁ ଆମର ଏହିଭଳି ମନ୍ତବ୍ୟର ପ୍ରଭବ କର୍ତ୍ତା । 'ରସ-ରତ୍ନାକର'ରେ ଆମେ 'ଉପେନ୍ଦ୍ର'ଙ୍କୁ ଦେଖୁଛୁଁ । ଦେଖିପାରୁଛୁ ଦୀନକୃଷ୍ଣ / ଅଭିମନ୍ୟୁ ପ୍ରଭୃତି ଅନେକ ପ୍ରସିଦ୍ଧ କବିଙ୍କୁ; କିନ୍ତୁ ଦେଖି ପାରୁ ନାହିଁ, ଏକ ନୂତନ-ପ୍ରତିଭାଶାଳୀ କବି-ସତ୍ତାକୁ, ଯାହାଙ୍କର ନାମ ଗଙ୍ଗାଧର ।

'ରସ ରତ୍ନାକର' ମାଧ୍ୟମରେ କବି ପ୍ରତିଭାର ଆଦ୍ୟ ଓଁକାର ଧ୍ୱନି ବିନିର୍ଗତ ହୋଇଥିଲେ ହେଁ ଏହା ଉତ୍କଳୀୟ କାବ୍ୟରସ ପିପାସୁ ଶ୍ରୋତ୍ରକୁ 'ଅନନ୍ତ ତୃପ୍ତି' ପ୍ରଦାନ କରି ନଥିଲା, ଏହା ପୂର୍ବରୁ ବୁଝାଯାଇଛି । ଏଥିରୁ ପ୍ରତିଭାଧର-କବି-ସତ୍ତାର ସମ୍ପୂର୍ଣ୍ଣ ନିଜସ୍ୱ ବୋଲି ଯାହା ପ୍ରତୀୟମାନ ହୁଏ, ତାହା ହେଉଛି, କବିଙ୍କର ସୂକ୍ଷ୍ମ ରସଗ୍ରାହିତା ଏବଂ ପରିଶୀଳିତ ସୌନ୍ଦର୍ଯ୍ୟବୋଧ । କବି ମାତ୍ରେ ସୁନ୍ଦରର ପକ୍ଷପାତି ଏବଂ ସେମାନଙ୍କ ନିକଟରେ ଚିରନ୍ତନ ସୌନ୍ଦର୍ଯ୍ୟ ଶାଶ୍ୱତ ଆନନ୍ଦର ଜନକ । ଏହି ସୌନ୍ଦର୍ଯ୍ୟ ବର୍ଣ୍ଣନ ସାଧାରଣର କର୍ମ ନୁହେଁ । 'ଦୃଷ୍ଟିକୁ ସୃଷ୍ଟି କର୍ମର ମୂଳ ଉପାଦାନ' ରୂପେ ସ୍ୱୀକାର କରିଗଲେ, ଏକ 'ଅନ୍ତର୍ଦୃଷ୍ଟି ( Vision )ର ଜଙ୍ଘପା'ରୁ କବି-କର୍ମର 'ଭାବମୂର୍ତ୍ତି' ନିର୍ମିତ ହୋଇଥାଏ ବୋଲି ବୁଝାଯାଇପାରେ । 'ଅନ୍ତର୍ଦୃଷ୍ଟିର ସୂକ୍ଷ୍ମତା / ତୀକ୍ଷ୍ଣତା' କବିକର୍ମରେ 'ଶକ୍ତି' ତଥା 'ଭାବୋଚ୍ଛଳତା'ର ସ୍ରଷ୍ଟା । କବିପୁରୁଷର ଜୀବନ ଓ କାବ୍ୟ ମହାଣ୍ଡାର ଉପଲବ୍ଧି ଏହି ଦୃଷ୍ଟୀୟ ନୟନର ଅନୁଶୀଳନରୁ ହିଁ ଜନ୍ମିଥାଏ । ଦୃଷ୍ଟୀୟ ନୟନ ମଧ୍ୟ କବିର ବୋଧଦୃଷ୍ଟି ଓ ରସ ଦୃଷ୍ଟିର ପରିଚୟ ଦିଏ ଏବଂ ଏହି ଦୁଇଟି ଦୃଷ୍ଟିର ମିଶ୍ର ଫଳରୁ ସମଗ୍ର କବି-ସତ୍ତାର ପ୍ରମୂର୍ତ୍ତନ ଓ ପରିପୁଷ୍ଟି ସାଧିତ ହୁଏ । [ କବି ଚରିତ : ରାଧାନାଥ—ପୃ. ୮୭ — ଶ୍ରୀ କ୍ଷେତ୍ରବାସୀ ନାୟକ ] ଗଙ୍ଗାଧର ଏହି ନୈସର୍ଗିକ ଅନ୍ତର୍ଦୃଷ୍ଟି (vision)ର ଅଧିକାରୀ ଥିଲେ, ତାହାର ପରିଚୟ ଆମ୍ଭେମାନେ 'ରସ-ରତ୍ନାକର'ରୁ

ପାଇଥାନ୍ତି । ବର୍ଣ୍ଣନା-ମାଧ୍ୟମରେ ସୌନ୍ଦର୍ଯ୍ୟ ସୃଷ୍ଟି କରିବା ଏବଂ ସେହି ବର୍ଣ୍ଣନା ସାହାଯ୍ୟରେ ହିଁ ପୁନର୍ବାର ରସପରିବେଷଣ କରିବାରେ ଗଙ୍ଗାଧରଙ୍କର କୃତିତ୍ୱ ତାଙ୍କର ତୀବ୍ର ଅନ୍ତର୍ଦୃଷ୍ଟିର ପରିଚୟସୂଚକ । 'ରସରତ୍ନାକର' ହେଉଛି, ଗଙ୍ଗାଧରଙ୍କ କାବ୍ୟ-ସୌଧର ସେହି ଭିତ୍ତି-ପ୍ରସ୍ତର, ଯାହାର ଅନେକାଂଶ ଅନାବଶ୍ୟକ ହେଲେହେଁ, ଭିତ୍ତି-ଦୁର୍ବଳତାର ଦ୍ୟୋତକ ନୁହେଁ । ବରଂ ଏକ ସୁଦୃଢ଼ / ପ୍ରାଚୀନ ଉପାଦାନ ଯାହା ଉପରେ ସମଗ୍ର ସୌଧଟିର ସୌନ୍ଦର୍ଯ୍ୟ ତଥା ସ୍ଥୈର୍ଯ୍ୟ ନିର୍ଭରଶୀଳ ।

ପ୍ରସ୍ତରୀଭୂତା ଅହଲ୍ୟାର ଶାପମୋଚନ ଆଖ୍ୟାନ ଉପରେ ବହୁଚର୍ଚ୍ଚିତ ଉପାଦାନର ଅବଲମ୍ବନରେ ରଚିତ ହୋଇଥିବା କବିଙ୍କର ଦ୍ୱିତୀୟ ରଚନା 'ଅହଲ୍ୟାସ୍ତବ' (୧୮୯୨) ମଧ୍ୟ 'ଗଙ୍ଗାଧରୀ ପ୍ରତିଭାର ପ୍ରଥମ ପର୍ଯ୍ୟାୟର ରଚନା । ଓଡ଼ିଆ ଭାଷାରେ ସଂସ୍କୃତ ଛନ୍ଦ ପ୍ରୟୋଗର ଏକ ଆୟାସ ସାଧ୍ୟ କିନ୍ତୁ ସଫଳ ପ୍ରଚେଷ୍ଟା ଏଥିରେ କରାଯାଇଛି । ସଂସ୍କୃତ 'ଶାର୍ଦ୍ଦୂଳ ବିକ୍ରୀଡ଼ିତ' ବୃତ୍ତରେ ରଚିତ ଏହି କ୍ଷୁଦ୍ର ପୁସ୍ତିକାଟିର ପ୍ରାପ୍ତି ସ୍ୱୀକାର ୩୧-୧-୧୮୯୩ ରେ ରାଧାନାଥଙ୍କ ଦ୍ୱାରା କରାଯାଇଥିବାର ଦେଖିବାକୁ ମିଳୁଛି । ପ୍ରାଚ୍ୟ ପରମ୍ପରା ଅନୁରକ୍ତ କବି 'ଅହଲ୍ୟାସ୍ତବ' ରାଧାନାଥଙ୍କଠାକୁ ପଠାଇଦେଇ ଅପେକ୍ଷାକରି ରହିଥିଲେ ମନରେ ଆଶଙ୍କା ଆଉ ସନ୍ଦେହରେ । 'ଅହଲ୍ୟାସ୍ତବ' କବିବରଙ୍କର ପ୍ରୀତିଭାଜନ ହେବତ ?

'ଅହଲ୍ୟାସ୍ତବ' ହାତରେ ରାଧାନାଥ କିନ୍ତୁ ଯଥାର୍ଥରେ ଚମତ୍କୃତ ହୋଇଯାଇଥିଲେ । ପ୍ରତିଭା ପ୍ରତିଭାକୁ ଚିହ୍ନିନେବାରେ ମୁହୂର୍ତ୍ତେମାତ୍ର ବିଳମ୍ବ ହୋଇନଥିଲା । ସମ୍ବଲପୁରର ଅଗମ୍ୟ ଅଞ୍ଚଳରେ ଏଭଳି ପ୍ରତିଭା ! କିନ୍ତୁ ଏ କିଏ ? ପରିବର୍ତ୍ତନର ବାଳାଂଶୁ କିରଣରେ ଯେତେବେଳେ ସମଗ୍ର ସାହିତ୍ୟ କ୍ଷେତ୍ର-ପ୍ଲାବିତ, ସେତେବେଳେ ପୁଣି ଅନ୍ଧକାରର ଆବାହନ କାହିଁକି ? ପ୍ରତିଭା ଅପଚୟର ଏ ପ୍ରଚେଷ୍ଟା କାହିଁକି ?

ରାଧାନାଥ କାଳବିଳମ୍ବ କରିନଥିଲେ । କବିତାଟିର ଅଜସ୍ର ପ୍ରଶଂସାକରି ସାମ୍ପ୍ରତିକକାଳରେ ଏହିଭଳି କବିତାର 'ଆଦର' ନ ହୋଇପାରେ ବୋଲି ସୂଚନାମାତ୍ର ପ୍ରଦାନ କରିଥିଲେ । କବିଙ୍କର ସାମାନ୍ୟ ଇଙ୍ଗିତ ହିଁ ଗଙ୍ଗାଧରଙ୍କ ନିମନ୍ତେ ଯଥେଷ୍ଟ ଥିଲା । ଗଙ୍ଗାଧରୀ-ପ୍ରତିଭା ସାହିତ୍ୟର ତୋରଣ ଦ୍ୱାରରେ ଦଣ୍ଡାୟମାନ ହୋଇ ଉପଯୁକ୍ତ ପଥ ଅନ୍ୱେଷଣ କରୁଥିବାବେଳେ ରାଧାନାଥ ହିଁ ତାଙ୍କୁ ହାତଧରି ସମ୍ମାନର ସହିତ ବାଟ ଚାଲାଇ ଦେଇଥିଲେ । କବି ହିସାବରେ ଏହାପୂର୍ବରୁ ଏତେ ସମ୍ମାନ / ଆଦର ପାଇବା ଗଙ୍ଗାଧରଙ୍କ ଭାଗ୍ୟରେ ଘଟି ନଥିଲା । ତେଣୁ କୃତଜ୍ଞ କବି-ଚିତ୍ତ ଆମରଣ ରାଧାନାଥଙ୍କ ଉଦାରତାର ଚିରନ୍ତନ ସ୍ୱାକ୍ଷରୀ ହୋଇ ରହିଥିଲା ।

ନିଜ ରଚନା ଶୈଳୀର ସଫଳତା ସମ୍ପର୍କରେ ସ୍ୱୟଂ ଗଙ୍ଗାଧରଙ୍କର ସନ୍ଦେହ ରହିଥିଲା । ରାଧାନାଥଙ୍କ ମନ୍ତବ୍ୟ ତାଙ୍କ ମନର ସେଇ ସଂଶୟକୁ ଦୃଢ଼ୀଭୂତ କରିଥିଲା । ତେଣୁ ସେ ଅଚିରେ 'ଶାର୍ଦ୍ଦୂଳ-ବିକ୍ରୀଡ଼ିତ' ପରିତ୍ୟାଗ କରି 'ବଙ୍ଗଳା ଶ୍ରୀ' ଅବଲମ୍ବନରେ 'ଅହଲ୍ୟାସ୍ତବ'ର ପୁନଃ-ନିର୍ମାଣ କଲେ । ଗଙ୍ଗାଧରୀ ପ୍ରତିଭାର ଅରୁଣୋଦୟ ଘଟିଲା ।

'ଅହଲ୍ୟାସ୍ତବ'ର ଜନ୍ମ ପ୍ରାଚ୍ୟ-ପରମ୍ପରାରୁ ପୁଣି ସେଥିର ଅଙ୍ଗଭୂଷଣ ହୋଇଛି, ଶାର୍ଦ୍ଦୂଳ-ବିକ୍ରୀଡ଼ିତ' ଛନ୍ଦ । ଶବ୍ଦ ବିନ୍ୟାସରେ ଯତିପାତ ନିୟମକୁ ଯଥାଯଥ ଭାବରେ ଅନୁସରଣ କରିବା ନିମନ୍ତେ ପ୍ରଚେଷ୍ଟା କରାଯାଇଛି । ଫଳରେ ଏହା କୌଣସି କୂଳର ହୋଇପାରିନାହିଁ । ନା ଏଥିରେ ଅଛି

ସଂସ୍କୃତ ସାହିତ୍ୟର ସ୍ମରଣୀୟ ବର୍ଣ୍ଣନା-ବିଳାସ-ନା ଅଛି ଆଧୁନିକ ଓଡ଼ିଆ ସାହିତ୍ୟର ଶୈଳ୍ପିକ ପରିପାଟୀ । କ୍ଷୀରବିଧିତନୟା ସୁକୋମଳକର-ସ୍ନେହରୁହ ମର୍ଦ୍ଦିତ ଯେ / ତ୍ରୈଲୋକ୍ୟାଧିପତି-ଶିରୀ ସୁରଧୁନୀ ଯତ୍ପାଦରୁ ଜାତ ଯେ; ପ୍ରଭୃତିରୁ କବି-ପୁରୁଷର ଅଭିବ୍ୟକ୍ତି-ଯନ୍ତ୍ରଣା ବୋଧଗମ୍ୟ ହେଲେ ମଧ୍ୟ, ଏହାର ଧାରିଟି ନିଶ୍ଚୟ ପ୍ରଭାବଶାଳୀ ହୋଇପାରି ନାହିଁ । ମଧ୍ୟଯୁଗୀୟ ସାହିତ୍ୟରେ ଭାଷାର ଆଡ଼ମ୍ବର ପ୍ରୟୋଗରୁ ଏକ ପ୍ରକାର ସାବଲୀଳତାର ସୃଷ୍ଟି ହୋଇଥାଏ । 'ଅହଲ୍ୟାସ୍ତବ'ର ପ୍ରଥମ ରୂପରେ ଏହି ସ୍ୱଚ୍ଛନ୍ଦତାଟି ଅନୁପସ୍ଥିତ । ବିଷୟବସ୍ତୁ 'ତୁଳସୀ ରାମାୟଣ / ଦାଣ୍ଡି ରାମାୟଣ / ବୈଦେହୀଶ ବିଳାସ ପ୍ରଭୃତି କାବ୍ୟରୁ ସଂଗୃହୀତ । ଏଥି ମଧ୍ୟରେ କବି-ପୁରୁଷର 'ଅଧ୍ୟାତ୍ମ-ପ୍ରବଣତା' ଦିଗଟି ସ୍ପଷ୍ଟ ଭାବରେ ପ୍ରକଟିତ । କବି-ରୁଚି ଯେ ପ୍ରାଚ୍ୟ-ବିଷୟାନୁକୂଳ ଏହାର ପରିଚୟ ମଧ୍ୟ ଏଥିରୁ ମିଳିଥାଏ । କବିତାର 'ଭାବ' ଏଠାରେ ବଡ଼ କଥା ନୁହେଁ । ବରଂ 'ରସ' ହିଁ ଏଠାରେ ମୁଖ୍ୟସ୍ଥାନ ଅଧିକାର କରିଛି । ପରବର୍ତ୍ତୀକାଳର ରଚନାରେ 'ଭାବ' ପୁରାପୂରି ଅବହେଳିତ ନ ହୋଇଥିଲେ ହେଁ ଗଙ୍ଗାଧରଙ୍କର ସମସ୍ତ ରଚନା ହିଁ 'ରସ ପ୍ରଧାନ' । ଗଙ୍ଗାଧର ଚପଳାର ଚମକିତ-ଦ୍ୟୁତି ନେଇ ଓଡ଼ିଆ ସାହିତ୍ୟରେ ଆତ୍ମପ୍ରକାଶ କରିନଥିଲେ ବରଂ ଶୀତାଂଶୁର ପ୍ରୀତି-ସାନ୍ଦ୍ର ଦୀପ୍ତି ବୈଭବ ଦ୍ୱାରା ସାହିତ୍ୟ ଦିଗନ୍ତରେ ଏକ ଶାଶ୍ୱତ ସ୍ଥାନ କରିନେବା ନିମନ୍ତେ ତାହାଙ୍କର ଉଦୟ ଘଟିଥିଲା । 'ଅହଲ୍ୟାସ୍ତବ'ରୁ ଏହାର ସାର୍ଥକତା ସନ୍ଧାନ କରିବା କଷ୍ଟସାଧ୍ୟ ନୁହେଁ ।

'ଅହଲ୍ୟାସ୍ତବ'ର ପରିବର୍ତ୍ତିତ ରୂପ ଏକ ପ୍ରତିଭାଶାଳୀ କବି-କର୍ମର ସ୍ମାରକ । ଏଥିରେ 'ରସ' ସହିତ 'ଭାବ'ର ଆଗମନ ଘଟିଛି । ଭାଷା ପୁଣି ସାବଲୀଳ ହୋଇ କବିତାଟିରେ ପ୍ରାଣସଞ୍ଚାର କରିଛି । 'ଶାର୍ଦ୍ଦୂଳ ବିକ୍ରୀଡ଼ିତ'କୁ ବର୍ଜନ କରି 'ବଙ୍ଗଳା ଶ୍ରୀ'ର ଆଶ୍ରୟରେ ପୂର୍ବୋଦ୍ଧୃତ ପଙ୍କ୍ତି 'କ୍ଷୀରବିଧିତନୟା ସୁକୋମଳ କରେ କରନ୍ତି ଯାକୁ ମର୍ଦ୍ଦନ/ଯହୁଁ ସୁରଧୁନୀ ତ୍ରୈଲୋକୀ ପାବନୀ ହୋଇଛନ୍ତି ଉତପନ୍ନ—'ରେ ରୂପାନ୍ତର ଲଭିଛି । ଏହି ରୂପାନ୍ତର କେବଳ କାବ୍ୟର ନୁହେଁ, କବି ପୁରୁଷର ମଧ୍ୟ ଘଟ ପରିବର୍ତ୍ତନ ବୋଲି ଧରିନେବାକୁ ପଡ଼ିବ । ଗୋଟି-ପୋକର ଆବରଣ ତ୍ୟାଗକରି ବାହାରି ଆସିଛି ବହୁବର୍ଣ୍ଣର ଚର୍ଚ୍ଚିତ ପ୍ରଜାପତି । କବି-ସତ୍ତା ଏହିଠାରେ ଏକ ଦୋ-ଛକି ଉପରେ ଠିଆ ହୋଇ, ଉପଯୁକ୍ତ ମାର୍ଗର ସନ୍ଧାନ କରୁଥିବାବେଳେ ରାଧାନାଥଙ୍କ ସହାୟତାରେ ଉପଯୁକ୍ତ ମାର୍ଗର ସଂଧାନ ପାଇଥିଲା । ଏହି ଘଟ ପରିବର୍ତ୍ତନର ମୁହୂର୍ତ୍ତଟି ତେଣୁ କବି ଜୀବନର ଏକ ସ୍ମରଣୀୟ କାଳ । ଏକ ପକ୍ଷରେ ପ୍ରାଚୀନର ଆକର୍ଷଣ / ପରମ୍ପରାର ମୋହ, ଅନ୍ୟ ଦିଗରେ ଆଧୁନିକତାର ଦୁର୍ବାର ଆହ୍ୱାନ । କିଏ ଗ୍ରହଣୀୟ ? କୌଣସିଟିକୁ ତ ଛାଡ଼ି ହେବନାହିଁ । କାହାରିକୁ ତ ଅବହେଳା କରାଯାଇ ପାରିବନାହିଁ । ତେଣୁ ଏଇ ଦୁଇଟିର ସମନ୍ୱୟ । ଏମାନେ ରହିଲେ, ଗଙ୍ଗାଧର ରହିବେ । ନବରୂପରେ ଗଙ୍ଗାଧରଙ୍କର ସମନ୍ୱୟବାଦୀ ହେବା ବ୍ୟତିରେକ ଉପାୟ କଣ ? 'ଅହଲ୍ୟାସ୍ତବ'ର ସଂଶୋଧିତ ରୂପ ଏହି ସମନ୍ୱୟ ମନୋବୃତ୍ତିର ପ୍ରଥମ ଦୃଷ୍ଟାନ୍ତ ।

କବି-ପୁରୁଷ ଯୁଗର ଦାବୀ ନିକଟରେ ମୁଣ୍ଡନୁଆଇଁ ନିଜ ସଂପତ୍ତିରୁ ଅଧା ଛାଡ଼ି ଦେଇଛନ୍ତି । ପୁରା ଛାଡ଼ି ଦେବାକୁ ତାଙ୍କର ରୁଚି ହୋଇନାହିଁ । 'ରୁଚି' ରହିଛି ଅପରିବର୍ତ୍ତିତ । ୧୮୯୩ ରେ ରଚିତ ହୋଇଥିବା 'ଇନ୍ଦୁମତୀ'ରୁ ଏହା ସ୍ପଷ୍ଟ ହୋଇଯାଏ । ସ୍କୁଲ ଜୀବନର ଶେଷ ଭାଗରେ ପଢ଼ିଥିବା 'ରଘୁବଂଶ'ର 'ଅଜ/ଇନ୍ଦୁମତୀ' ବୃତ୍ତାନ୍ତରୁ କଥାବସ୍ତୁ ସଂଗୃହୀତ ହୋଇ ଦ୍ୱିଭାଗ ସମନ୍ୱିତ 'ବଙ୍ଗଳା ଶ୍ରୀରାଗ' ଗୁଂଫିତ ଏହି ନାତିଦୀର୍ଘ କାବ୍ୟ ଖଣ୍ଡଟି ରଚିତ । ମୂଳ କାବ୍ୟଟି 'ଅଜ'ଙ୍କର ପ୍ରାଧାନ୍ୟ ଦେଖାଇ ଥିବା

ସ୍ଥଳେ କବି ନିଜ ନାୟିକା-ପ୍ରଧାନ କାବ୍ୟରେ 'ଇନ୍ଦୁମତୀ'ଙ୍କୁ ଶ୍ରେଷ୍ଠ ସ୍ଥାନ ପ୍ରଦାନ କରିଅଛନ୍ତି । ତେଣୁ ଆହରଣ ଏବଂ ସମୀକରଣରେ କବିଙ୍କର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୋଇଥାଏ । ☆

ଅନେକ ସମୟରେ ପ୍ରତିଭା 'ନବ ନବ ଉନ୍ମେଷଶାଳିନୀ' ନ ହୋଇ ଅଭିବ୍ୟକ୍ତି ନିମନ୍ତେ ଏକ ଆଶ୍ରୟ ଖୋଜେ । ଏହି 'ଆଶ୍ରୟ'ର ପୁଣି ତିନୋଟି ରୂପ — (କ) ଅନୁସରଣ, (ଖ) ଅନୁକରଣ ଓ (ଗ) ଅବଲମ୍ବନ । ଏମଧ୍ୟରୁ 'ଅନୁସରଣ' ଏବଂ 'ଅବଲମ୍ବନ' ଦୁଇଟି ପ୍ରତିଭା କ୍ଷେତ୍ରରେ ସ୍ୱାଗତଯୋଗ୍ୟ । ଶେଷ 'ଅନୁକରଣ' ସ୍ରଷ୍ଟା-ସମାଦୃତ ହୋଇନଥାଏ । ମୂଳ ଲେଖାର ଉପସ୍ଥିତି ଅନୁଭବରେ କରିଯାଇ ଥିଲେ ହେଁ ଯେଉଁଠାରେ ବର୍ତ୍ତମାନ ଲେଖକର ସ୍ପର୍ଶ ପଦେ ପଦେ ମିଳିଥାଏ, ସେହିଠାରେ 'ଅନୁସରଣ' କ୍ରିୟା ଜାରିଥାଏ । ଗଙ୍ଗାଧରଙ୍କର ସମଗ୍ର ରଚନା 'ଅନୁସରଣ' କ୍ରିୟାର ଦୃଷ୍ଟାନ୍ତ । 'ଇନ୍ଦୁମତୀ'ରେ ଏହି 'ଅନୁସରଣ' କ୍ରିୟା ମୂଳ ବିଷୟବସ୍ତୁର ପୂର୍ଣ୍ଣ ଗ୍ରହଣ / ତଥା ବର୍ଣ୍ଣନାତ୍ମକ ବହୁ ଅଂଶର ବର୍ଜନ ଦ୍ୱାରା ସାଧିତ ହୋଇଛି । ଭାବ ବା ଶବ୍ଦରେ ଏଭଳି କିଛି ନାହିଁ, 'ଯାହା ଆଧୁନିକ ରୁଚି ଅନୁସାରେ ବର୍ଜନୀୟ' ହେବ । ବରଂ ଭାବ ଏବଂ ଭାଷା ଦୃଷ୍ଟିରେ ଏହା 'ଅଭିନବ' ଏବଂ 'ଉତ୍କୃଷ୍ଟ କାବ୍ୟ ରୂପେ' ଗ୍ରହଣୀୟ ହେବାର ଯୋଗ୍ୟ । ଏଥିରେ 'ଅନେକ ନୂତନ ଏବଂ ସୁନ୍ଦର ଭାବ' ସନ୍ନିବିଷ୍ଟ । ଭାଷା ପୁନର୍ବାର 'ସରଳ, ଅକ୍ଲିଷ୍ଟ ଏବଂ ଶ୍ରୁତି ମଧୁର' ।※

ରାଧାନାଥଙ୍କର ଏହି ମନ୍ତବ୍ୟରେ କାବ୍ୟର ସଫଳତାରେ ଏହାର ସାମୂହିକ ଶୈଳ୍ପିକ ସୌନ୍ଦର୍ଯ୍ୟ ସମ୍ପର୍କରେ କିଛି ହିଁ ଉକ୍ତ ହୋଇ ନାହିଁ, ଯାହା 'ଇନ୍ଦୁମତୀ'ର ଉତ୍କୃଷ୍ଟ କାବ୍ୟତ୍ୱର ଏକ ପ୍ରଧାନ ଆକର୍ଷଣ ।

'ଇନ୍ଦୁମତୀ'ର ବିଷୟବସ୍ତୁ ଏହି ମାଟିର ପାଣି / ପବନରେ ପୁଷ୍ଟିତ । ଆନନ୍ଦ ଏବଂ ଶୋକର ଏକ ଚମତ୍କାରୀ ନାଟକୀୟତା ଅଯୋଧ୍ୟା-ନରେଶ 'ଅଜ'ଙ୍କ ଜୀବନରେ ଯେଉଁ 'ଟ୍ରାଜେଡ଼ି' ସୃଷ୍ଟି କରିଥିଲା, ସେଥିରେ ଅସାଧାରଣତ୍ୱ ଥିଲା । କବିଚିତ୍ତକୁ ଆକର୍ଷଣ କରିବା ନିମନ୍ତେ ଏତିକି ଯଥେଷ୍ଟ । ଆହୃତ ବିଷୟ ସାହାଯ୍ୟରେ ଏକ ପ୍ରଭାବଶାଳୀ-ପରିବେଶ / ଗୋଟିଏ କାବ୍ୟିକ-ଆବହାଓ୍ୱା ସୃଷ୍ଟି କରିବା ନିମନ୍ତେ ଗଙ୍ଗାଧର ସକ୍ଷମ ହୋଇଛନ୍ତି । 'ଇନ୍ଦୁମତୀ'ର ରଚନା ସମୟକୁ ରାଧାନାଥଙ୍କର ପ୍ରାୟ ସମସ୍ତ ପ୍ରସିଦ୍ଧ କାବ୍ୟ, ଜଗନ୍ମୋହନ ଲାଲଙ୍କର ଭ୍ରମଭଞ୍ଜନ (୧୮୭୮) ତଥା ରାମଶଙ୍କରଙ୍କର ପ୍ରେମତରଙ୍ଗ ଗାଥା (୧୮୭୮) ପ୍ରଭୃତି ପ୍ରକାଶିତ ହୋଇ ଆଧୁନିକ କାବ୍ୟ-ସାହିତ୍ୟର ଏକ ବିଧିବଦ୍ଧ ମାର୍ଗ ପ୍ରସ୍ତୁତ ହୋଇସାରିଥିଲା । ବିଷୟ ବସ୍ତୁର ଶୈଳ୍ପିକ / କଳା ନିପୁଣ ବିନ୍ୟାସରେ, ଆବେଗର ମରମ ଛୁଆଁ ଝଙ୍କାରରେ ରାଧାନାଥୀ କାବ୍ୟର ଅଙ୍ଗସଜ୍ଜା ଯେଉଁ ଅଭିନବ ପରମ୍ପରା ସୃଷ୍ଟି କଲା, ତାହା ଗଙ୍ଗାଧରଙ୍କର କଳା-ଗ୍ରାହୀ ମନକୁ ଛୁଇଁଯିବା ସ୍ୱାଭାବିକ । ତେଣୁ 'ଇନ୍ଦୁମତୀ'ର ଅଙ୍ଗସଜ୍ଜାରେ ରାଧାନାଥ ପାଠକ ସମ୍ମୁଖରେ ପ୍ରଥମେ ଉଭା ହୁଅନ୍ତି । ଏକ ସଫଳ କଳାତ୍ମକ କବି କର୍ମ ହିସାବରେ ଗଙ୍ଗାଧରୀ-ସୃଷ୍ଟିର ଦ୍ୱିତୀୟ ପର୍ଯ୍ୟାୟର ଏହି ରଚନାର ପୃଷ୍ଠପୋଷକତା ତେଣୁ ପ୍ରଥମେ ରାଧାନାଥ ହିଁ କରିଛନ୍ତି ।

☆ ଏହି କାବ୍ୟଟି ପ୍ରଥମେ 'ଉତ୍କଳ ପ୍ରଭା'ର ୩ । ୧୧ । ୯୩ ଓ ୪ । ୧ । ୯୪, ଫେବ୍ରୁଆରୀ, ଏପ୍ରିଲ୍ ୧୮୯୪ ସଂଖ୍ୟାମାନଙ୍କରେ ପ୍ରକାଶିତ ହୋଇଥିଲା ଓ ପରେ ୨୨ । ୮ । ୯୪ ରେ ପୁସ୍ତକାକାରରେ ପ୍ରକାଶିତ ହେଲା ।

※ ମନ୍ତବ୍ୟ— ଶ୍ରୀ ରାଧାନାଥ ରାୟ—ଇନ୍ଦୁମତୀ ।

କବି-ପ୍ରତିଭାର ଆଦ୍ୟ ସଙ୍କେତ ଦ୍ୟୋତକ 'ଇନ୍ଦୁମତୀ'ରେ ଗଙ୍ଗାଧରଙ୍କର ମୌଳିକତାର ପରିମାଣ କିଛି କମ୍ ନୁହେଁ । କାବ୍ୟର ପ୍ରାରମ୍ଭ / ପ୍ରାରୋହ ତଥା ପରିସମାପ୍ତି ମଧ୍ୟରେ ଏକ ଭାବୀୟ ସମନ୍ୱୟ ଘଟାଇ ସମଗ୍ର କାବ୍ୟଟିକୁ ଗୋଟିଏ ଅପୂର୍ବ 'ଶିଳ୍ପ-ସୌନ୍ଦର୍ଯ୍ୟ' ପ୍ରଦାନ କରିବା ହେଉଛି କବିଙ୍କର ସ୍ମରଣୀୟ କୃତିତ୍ୱ । ଏଥି ନିମନ୍ତେ ପ୍ରୟୋଜନ ହୋଇଛି ରମ୍ୟ ଶବ୍ଦ ବିଭବ ତଥା କଳାପୂର୍ଣ୍ଣ 'ଭାବ'ର । କବି ଏଥିରେ ସଫଳତା ଲାଭ କରିଛନ୍ତି ।

ପ୍ରାଚ୍ୟ ଭାବଧାରାର ପ୍ରବକ୍ତା ଥିଲେ ହେଁ ଗଙ୍ଗାଧର କିନ୍ତୁ ତାହାଙ୍କର ଏହି ପ୍ରଥମ ପ୍ରକାଶିତ କାବ୍ୟଟିକୁ ଟ୍ରାଜେଡ଼ି-ଧର୍ମୀ କରିଛନ୍ତି । ଅବଶ୍ୟ ଜାଗତିକ-ଦୁଃଖ ଦାର୍ଶନିକତାର ଅତଳ ସମୁଦ୍ର ମଧ୍ୟରେ ବିଲୁପ୍ତ ହେବାର ଭାରତୀୟ ପରମ୍ପରାଟି ଏଥିରେ ବ୍ୟବହୃତ । ତେବେ ସମଗ୍ର ଗଙ୍ଗାଧର କାବ୍ୟ-ପରିମଣ୍ଡଳରେ ଦୁଃଖର ପ୍ରାଧାନ୍ୟ ଦେଖିଲେ, ତାହାଙ୍କୁ 'ଭବଭୂତି'ଙ୍କର ଯଥାର୍ଥ 'ଚେଲା' ବୋଲି କହିବାକୁ ମନହୁଏ ।

ଆଉ ଗୋଟିଏ କଥା ମଧ୍ୟ ଏହି କାବ୍ୟ ସମ୍ପର୍କରେ କୁହାଯାଇପାରେ । ପ୍ରକୃତ ତତ୍ତ୍ୱ-ପରିଶୀଳନରେ ଯେଉଁ ଗଭୀର ଆନ୍ତରିକତା କବି-କାବ୍ୟ-ସୌଧର ମୁଖ୍ୟ-ତୋରଣ ରୂପେ ପରିଗଣିତ ହେଲା, ତାହାର ସ୍ପଷ୍ଟ ସୂଚନା 'ଇନ୍ଦୁମତୀ'ରେ ଦେଖିବାକୁ ମିଳେ । ଶେଷରେ ଆସୁଛି ଦର୍ଶନର କଥା । ଭାରତର ପାଣି / ପବନ ପ୍ରତ୍ୟେକ ଭାରତୀୟଙ୍କୁ 'ଦାର୍ଶନିକ' କରି ଗଢ଼ିଥାଏ । ଏଥି ନିମନ୍ତେ ଆନୁଷ୍ଠାନିକ ଶିକ୍ଷାର କୌଣସି ପ୍ରୟୋଜନ ହୁଏ ନାହିଁ । ଜୀବନ-ବିଦ୍ୟାଳୟ ଗଙ୍ଗାଧରଙ୍କୁ ଯେଉଁ ନିର୍ମମ ସତ୍ୟର ଶିକ୍ଷା ଦେଇଥିଲା, ସେଥିରୁ ଗଙ୍ଗାଧର ସଂସାରରେ 'ମଣିଷ'ର ଅସହାୟତା ବୁଝିପାରିଥିଲେ । ଏକ ଅଦୃଶ୍ୟ-ସୂତ୍ରଧରର ଇଙ୍ଗିତ ଏଠାରେ ଆମକୁ ଯେଉଁ ଭଳି ଯଦୃଚ୍ଛା ପରିଚାଳନ କରେ ତାହାର ବିରୁଦ୍ଧରେ 'ନାଲିସ୍' ଜଣାଇବା ନିମନ୍ତେ କୌଣସି ବିଚାରାଳୟ ନାହିଁ । ତେଣୁ 'ଭାଗ୍ୟ' ଆଉ 'ଭବିତବ୍ୟ'ର ଅତ୍ୟାଚାର ଆମକୁ ନୀରବରେ ସହିବାକୁ ହିଁ ପଡ଼ିବ । ଏଠାରେ 'ଭାଗ୍ୟବାନ ସଦା ଭାଗ୍ୟଫଳ ଲଭେ' ଆଉ 'ଅଭାଗା ଲଭେ ଅଶିବ' । 'ସୌଭାଗ୍ୟ ସମୟେ ସମ୍ପଦରେ ଯାକୁ ଗଣି, ତାହା ପୁଣି ଅଭାଗ୍ୟ ସମୟେ × × ସବୁ ବିପଦର ଖଣି' ହୁଏ । 'ହବେ ଭବିତବ୍ୟ ଅବଶ୍ୟ ଘଟଇ', ଏହାର ଅନ୍ୟଥା ନାହିଁ । ଜନ୍ମମୃତ୍ୟୁ ସମ୍ପୂର୍ଣ୍ଣ 'କର୍ମ ଫଳ' ହେଉଛି । ଏହିସବୁ ସୂଚନାରୁ କବି-ଆତ୍ମାର ଯଥାର୍ଥ ସ୍ୱରୂପଟିକୁ ଚିହ୍ନିବାରେ ଅସୁବିଧା ହୁଏ ନାହିଁ । ପ୍ରଥମ ସଫଳ 'ରଚନା'ରୁ କବି ନିଜର ଜୀବନାନୁଭୂତିକୁ ପାଠକମାନଙ୍କ ଆଗରେ ବାଢ଼ି ଦେଇଛନ୍ତି । ରାଧାନାଥଙ୍କର ପ୍ରଥମ ସଫଳ ରଚନା 'କେଦାର ଗୌରୀ'ରେ କିନ୍ତୁ ଜୀବନାନୁଭୂତି ସମ୍ପର୍କରେ କବିଙ୍କର ନୀରବତା ଦେଖିବାକୁ ମିଳେ ।

ସୁଗୁଣ-ପୁଷ୍ପର ସୁରଭି ବ୍ୟର୍ଥ ଯାଏନାହିଁ । ଯୁଗେ ଯୁଗେ କାଳେ କାଳେ ଏହାକୁ ନିଜର କରିଦେବା ନିମନ୍ତେ କିଛି ବ୍ୟକ୍ତି ସର୍ବଦା ଉନ୍ମୁଖ ହୋଇ ଥାଆନ୍ତି । 'ଇନ୍ଦୁମତୀ'ର ପ୍ରଚୁର ଗଙ୍ଗାଧରୀ-ସୁରଭିର ପ୍ରସାର ସମଗ୍ର ଉତ୍କଳରେ ଘଟାଇ ତତ୍କାଳୀନ ଅନେକ ଜ୍ଞାନୀ / ଗୁଣୀଙ୍କର ଉଦାର ପ୍ରଶଂସାର କାରଣ ଘଟାଇଥିଲା । ସେନାପତି ଫକୀରମୋହନ ଲେଖିଲେ, "ଆପଣଙ୍କ କବିତାଟୁକୁଡ଼ିକ ଉତ୍କଳ ଭାଷା ଭଣ୍ଡାରରେ ଅମୂଲ୍ୟ ରତ୍ନ । ବହୁକାଳ ଯାବତ୍ ଆପଣଙ୍କ କୀର୍ତ୍ତି ଉତ୍କଳରେ ବିରାଜିତ ଥିବ" ( ତା ୧୫ । ୭ । ୧୮୯୮ ) । ନନ୍ଦକିଶୋର ଲେଖିଲେ, 'ପ୍ରଜାବନ୍ଧୁ' ପତ୍ରିକାରେ କବିତାର ସର୍ବ ନବ ପ୍ରଶସ୍ତି । 'ଇନ୍ଦୁମତୀ' କବିର 'ମୂର୍ତ୍ତି' ଅହରହ ତାଙ୍କ ନେତ୍ର ପଥରେ ନାଚୁଥିଲା । କବି ଯେବେ 'ସଭ୍ୟ ଉନ୍ନତ ଦେଶରେ' ଜନ୍ମି ଥାଆନ୍ତେ, ତେବେ 'ଇତିହାସରେ' ତାଙ୍କ ନାମ 'ବାଜି ଥାଆନ୍ତା' । ତେବେ

ଦରିଦ୍ରତା ନିମନ୍ତେ 'ବାଣୀ ଶକ୍ତି ନାଶି'ବାର ଉଚିତ ନୁହେଁ । କାରଣ 'ଯେତେଦିନ ଭବେ ଓଡ଼ିଆ ସାହିତ୍ୟ' ଥିବ ସେତେଦିନ 'ଗଗନକବି ଜୀବିତ' ରହିବେ ବୋଲି ମଧ୍ୟ ଆଶ୍ୱାସନାର ବାଣୀ ଶୁଣାଇ ଦିଆଯାଇଥିଲି ।* ଗଙ୍ଗାଧର ଏହାକୁ ନିଜର ପରମ-ପ୍ରାପ୍ତି ବୋଲି ମନେ କରିଥିଲେ । ନିଜ ସମ୍ପର୍କରେ ଏତେ ଉତ୍ସାହ ବାକ୍ୟ / ତାହା ପୁଣି ତତ୍କାଳୀନ ଉତ୍କଳର ଡାକସାଇଟେ ମହାଜନ ମାନଙ୍କ ଠାରୁ, ତାହା କବିମନକୁ ନବ-ପ୍ରେରଣା ଦାନ କରିଥିବା ସମ୍ଭବପର । ମାତ୍ର ପ୍ରତିଭା-ବୃକ୍ଷରୁ ଏହି ନବୋଦ୍ୟମର ଯେମନ୍ତ ଫଳାଗମର ଆଶା କରାଯାଉଥିଲି, ତାହା ଘଟି ନାହିଁ । ଅବଶ୍ୟ ଏହି ସବୁ ପ୍ରେରଣା 'ଗଙ୍ଗାଧର' 'ଇନ୍ଦୁମତୀ' ପ୍ରକୃତିତ ହେବା ସଙ୍ଗେ ସଙ୍ଗେ ପାଇ ନାହାନ୍ତି । ଏଥି ନିମନ୍ତେ କିଛି କାଳ ଅପେକ୍ଷା କରିବାକୁ ପଡ଼ିଛି । ତେବେ ରାଧାନାଥୀ—ପୃଷ୍ଠପୋଷକତା ତାହାଙ୍କୁ ସଙ୍ଗେ ସଙ୍ଗେ ମିଳିଥିଲି । ସେ କାଳରେ ତାହା ଅମୂଲ୍ୟ ଥିଲି, କହିବା ବାହୁଲ୍ୟ ମାତ୍ର । ତଥାପି କବି ପ୍ରାୟ ନିଷ୍କ୍ରିୟ ଥିଲେ କହିଲେ ଚଳେ । ହୁଏତ ପାରିବାରିକ ସମସ୍ୟା / ଦାରିଦ୍ର୍ୟର ତୀବ୍ର ଅନ୍ତର୍ଦାହ କବିମନକୁ ବିଚଳିତ କରି ରଖିଥିବ । ବଡ଼ କିଛି ଗୋଟାଏ କରିବାର ଦୁର୍ବାର ଆବେଗ ହୁଏତ କବି ମନରେ ପ୍ରକାଶିତ ହେଉଥିବ । ମାତ୍ର ସେଥିପାଇଁ ପରିବେଶ କାହିଁ ? ପ୍ରେରଣା କାହିଁ ? ତେଣୁ ଗଙ୍ଗାଧର ପରେ ବ୍ରଜମୋହନଙ୍କୁ ଲେଖିଥିଲେ, "ମୁଁ ଅନେକ ସମୟରେ କୌଣସି କୌଣସି ବିଷୟରେ କବିତା ଆରମ୍ଭ କରି ୪୦।୫୦ ପଂକ୍ତି ମାତ୍ର ଲେଖି, ଅସମ୍ପୂର୍ଣ୍ଣ କରି ପକାଇଅଛି ।" × × ଏହାର କାରଣ ? "କବିତା ଲେଖିବି, ଭଲ ହେବ କି ନାହିଁ, ପ୍ରକାଶିତ ହେବ କି ନାହିଁ; କବିତା ଭଲ ନ ହେଲେ ପ୍ରକାଶ ହେବ ନାହିଁ—" ଏଠାରେ ସେଇ ସଂଶୟ / ସେଇ ସ୍ୱ-ଶକ୍ତି ସମ୍ପର୍କୀୟ ଅଜ୍ଞତା କବି ମନକୁ ବିଚଳିତ କରିଛି । ମନ ଖୋଜୁଛି, କିଏ ଜଣେ କହନ୍ତା / ଉପଦେଶ ଦିଅନ୍ତା / ଅନୁରୋଧ କରନ୍ତା / ପ୍ରୟୋଜନରେ ବାଧ୍ୟ ବାଧକତାର ଆଶ୍ରୟ ମଧ୍ୟ ନିଅନ୍ତା, ତେବେ ତ କବି ଲେଖନୀ 'ଅଯୁତ ସ୍ରାବୀ' ହୋଇପାରନ୍ତା ! ତେଣୁ କବି ଲେଖିଛନ୍ତି "ଆପଣଙ୍କର ମୂଲ୍ୟମୟ ଉତ୍ସାହ ପାଇ ତହିଁରେ ଅଗ୍ରସର ହେବାକୁ ମନବଳୁ ଅଛି ।" ଏହି 'ମୂଲ୍ୟମୟ ଉତ୍ସାହ'ଟି କିନ୍ତୁ କବିଙ୍କୁ ୧୮୯୩ / ୯୪ ରେ ମିଳି ନଥିଲି । ଏଣୁ ପାରିବାରିକ ସମସ୍ୟା ଜନିତ ଅସ୍ଥିରତା ତଥା ଗ୍ରାହକତାର ଯଥାର୍ଥ ଅଭାବ, ତତ୍କାଳରେ ମେହେର ମାନସକୁ ଶ୍ଳଥକରି ଦେଇଥିବାର ଅନୁମାନ କରିହୁଏ । 'ଉତ୍କଳ ଲକ୍ଷ୍ମୀ' ଏଇଭଳି ଏକ ମାନସିକ ଦୁଃସ୍ଥିତିର ଜାତକ ।

ଅସମ୍ପୂର୍ଣ୍ଣ 'ଉତ୍କଳ ଲକ୍ଷ୍ମୀ' ୧୮୯୪ ମସିହାରେ ସର୍ବ ପ୍ରଥମେ ଶ୍ରୀ ସୂର୍ଯ୍ୟକୁମାର ମିଶ୍ର'ଙ୍କ ଆନୁକୂଲ୍ୟରେ ପ୍ରକାଶିତ ହୋଇଥିଲି ଏବଂ ୧୮୯୭ ମସିହାରେ 'ହିତୈଷିଣୀ' ଦ୍ୱାରା ମୃଦୁ ଭାବରେ ସମାଲୋଚିତ ହୋଇ ଗଙ୍ଗାଧରଙ୍କ ମନ ଭାଙ୍ଗି ଦେଇଥିଲି । ଅଭିମାନରେ ତେଣୁ କବି '୧୯୦୩' ମସିହା ପର୍ଯ୍ୟନ୍ତ ଉଲ୍ଲେଖଯୋଗ୍ୟ କିଛି ଲେଖି ପାରିନଥିଲେ । ପ୍ରଥମ ପ୍ରକାଶର ଦୀର୍ଘ କୋଡ଼ିଏ ବର୍ଷ ପରେ ୧୯୧୪ ମସିହାରେ ଲରମ୍ଭାର 'ପଣ୍ଡା ପରିବାର'ଙ୍କର ପୃଷ୍ଠପୋଷକତାରେ ଏହାର ମାର୍ଜିତରୂପ ପୁନର୍ବାର ଆତ୍ମ-ପ୍ରକାଶ କଲି । ଶ୍ରୀ ବ୍ରଜମୋହନ ଗଙ୍ଗାଧରଙ୍କ ସହିତ ପରିଚିତ ହେବା ଦିନଠାରୁ ବିଭିନ୍ନ ଉପାୟରେ 'ଉତ୍କଳ ଲକ୍ଷ୍ମୀ'କୁ ପୂର୍ଣ୍ଣାଙ୍ଗ କରିବା ନିମନ୍ତେ କବିଙ୍କୁ ସାହାଯ୍ୟକରି ଆସିଥିବାର ଗଙ୍ଗାଧର ପତ୍ରାବଳୀରୁ ଜଣାପଡ଼େ । ସମ୍ବଲପୁର ଗେଜେଟିଅର୍ ପ୍ରଭୃତି ଯୋଗାଡ଼ କରିବାଠାରୁ ଆରମ୍ଭକରି ସ୍ୱୟଂ ସେ ଏଥି ନିମନ୍ତେ ଅନ୍ୟତ୍ର ଉପାଦାନର ସଂଗ୍ରହ କରୁଥିଲେ । 'ଉତ୍କଳ ଲକ୍ଷ୍ମୀ' ନିମନ୍ତେ ଯାହାପାଇବେ,

* ଇନ୍ଦୁମତୀ' କାବ୍ୟ ପ୍ରଣେତା ଶ୍ରୀ ଗଙ୍ଗାଧର ମେହେରଙ୍କ ପ୍ରତି — ଗଙ୍ଗାଧର ଗ୍ରନ୍ଥାବଳୀ ।

ନୋଟକରି ରଖିଥିବେ" — ୭-୯-୧୨ ରେ ଗଙ୍ଗାଧରଙ୍କର ଏହି ଅନୁରୋଧ (ଗଙ୍ଗାଧର ପତ୍ରାବଳୀ— ପୃ. ୯୫)ରୁ ଏହାର ସତ୍ୟତା ପ୍ରମାଣିତ ହୁଏ । ଶେଷରେ ଶ୍ରୀ ପଣ୍ଡାଙ୍କ ଅଗ୍ରଜ ଶ୍ରୀ ମଧୁସୂଦନ ପଣ୍ଡା ଏହାର ପ୍ରକାଶନର ଭାର ଗ୍ରହଣକରି ସ୍ୱୀୟ ସାହିତ୍ୟ ପ୍ରୀତିର ପରିଚୟ ଦେଇଥିଲେ ।

ପଶ୍ଚିମ-ଓଡ଼ିଶାର ରମ୍ୟ-ପ୍ରକୃତିର ପରିଚୟ ପ୍ରଦାନ ତଥା ଉତ୍କଳର ଭାବଗ୍ରାହୀ ଜ୍ଞାନୀ / ଗୁଣୀ / ସାହିତ୍ୟପ୍ରେମୀ ବ୍ୟକ୍ତିଙ୍କ ସମ୍ପର୍କରେ ମନ୍ତବ୍ୟ ପ୍ରଦାନ : ଏହି ଦୁଇ ଉଦ୍ଦେଶ୍ୟ ନେଇ 'ଉତ୍କଳ ଲକ୍ଷ୍ମୀ'ର ସୃଷ୍ଟି । ଏହି କାବ୍ୟାଦର୍ଶ ପ୍ରଥମେ 'ରାଧାନାଥ' ଏବଂ ପରେ 'ଫକୀରମୋହନ'ଙ୍କ 'ଉତ୍କଳ ଭ୍ରମଣ' (୧୮୯୨)ର ଅନୁସରଣରେ ନିର୍ମିତ ହୋଇଥିବା ସମ୍ଭବପର । ରାଧାନାଥୀ ସାହିତ୍ୟରେ ପଶ୍ଚିମ ଓଡ଼ିଶାର ପ୍ରକୃତି କମ୍ବା କମ୍ବଦନ୍ତୀର ଅନୁସରଣ ନାହିଁ ପାଇପାରିନାହିଁ । ସୁରଣୀୟ କମ୍ବଦନ୍ତୀ ଏବଂ ବର୍ଣ୍ଣନୀୟ ପ୍ରକୃତି : ଏହି ଉଭୟ ସଂପଦରେ ସମ୍ବଲପୁର ଜନ୍ମ ଯଥାର୍ଥରେ ଋଦ୍ଧିମନ୍ତ । କବିବରଙ୍କ ଲେଖାରେ ଏହାର ଅନୁପସ୍ଥିତି ଗଙ୍ଗାଧରଙ୍କୁ ଯଥେଷ୍ଟ ଆହତ କରିଛି । ତେଣୁ 'ଉତ୍କଳ ଲକ୍ଷ୍ମୀ'ର ପରିକଳ୍ପନା ସ୍ୱାଭାବିକ। ଉତ୍କଳୀୟ ପ୍ରକୃତିର ପୂର୍ଣ୍ଣାଙ୍ଗ ଆଲେଖ୍ୟ ପାଇବାକୁ ହେଲେ ଆମକୁ 'ରାଧାନାଥ'ଙ୍କ ସହିତ 'ଗଙ୍ଗାଧର'ଙ୍କୁ ମିଶାଇ ପଢ଼ିବାକୁ ହେବ ।

ପ୍ରକୃତି ବର୍ଣ୍ଣନା ବ୍ୟତୀତ 'ଉତ୍କଳ ଲକ୍ଷ୍ମୀ' କବି ମାନସର ଉଗ୍ର ଜାତୀୟତାବୋଧର ଦ୍ୟୋତକ । ରାଧାନାଥ ଓଡ଼ିଆ ସାହିତ୍ୟରେ ଏହି ଜାତୀୟତାର ପ୍ରବକ୍ତା । ଗଙ୍ଗାଧର ରାଧାନାଥ-ସାହିତ୍ୟର ମୁଗ୍ଧ ପାଠକ ହୋଇଥିବାରୁ ତାହାର ପ୍ରତ୍ୟେକ ଉପାଦାନର ଗୁରୁତ୍ୱ ଗଙ୍ଗାଧରଙ୍କ କବି-ପୁରୁଷ ନିକଟରେ ସ୍ୱୀକୃତ ହୋଇଥିଲା । ତେଣୁ ରାଧାନାଥୀ ସାହିତ୍ୟର ଦୁଇ ମୁଖ୍ୟ ବିଭବ—ପ୍ରକୃତି ପ୍ରେମ ଏବଂ ଜାତୀୟତା— ଏହାର ଗଙ୍ଗାଧରୀ ରୂପ ହେଉଛି 'ଉତ୍କଳ ଲକ୍ଷ୍ମୀ' । ଇତିପୂର୍ବରୁ ପ୍ରକାଶିତ 'ଅହଲ୍ୟା ସ୍ତବ ଓ ଇନ୍ଦୁମତୀ' ରାଧାନାଥଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ସମଗ୍ର ଉତ୍କଳ ଯେତେବେଳେ ଏହି ନବାଗତ କବି ପ୍ରତି ଉଦାସୀନ, ସେତେବେଳେ ରାଧାନାଥ ହିଁ ଏକମାତ୍ର ବ୍ୟକ୍ତି ଯେକି ବାରମ୍ବାର ଲେଖିଛନ୍ତି । "ଏ କାବ୍ୟର କବି ସାମାନ୍ୟ ଶକ୍ତିଶାଳୀ ଲେଖକ ନୁହନ୍ତି / × ×ସେମାନେ ସୁଦ୍ଧା ଏହି କାବ୍ୟ ପାଠକରି ପଠନ ଶ୍ରମକୁ ପଣ୍ଡଶ୍ରମ ମଣିବେ ନାହିଁ /$ ସ୍ଥାନେ ସ୍ଥାନେ ରଚନା ଏପରି ସୁନ୍ଦର ହୋଇଅଛି ଯେ ତାହା ମହାକବିମାନଙ୍କର ଲେଖନୀର ଯୋଗ୍ୟ ବୋଲି ବିବେଚିତ ହୋଇପାରେ /✳ ଆପଣଙ୍କ ପରି ଗୁଣୀ ଓ ପ୍ରକୃତ ଶକ୍ତିଶାଳୀ ବ୍ୟକ୍ତି ସର୍ବଥା ମୋହର ପୂଜନୀୟ ଇତ୍ୟାଦି ★ ଗଙ୍ଗାଧର ନିଜ ପ୍ରତିଭାର ଏହି ଅଭାବିତ ସ୍ୱୀକୃତି ଜଣେ ଯଥାର୍ଥ ବୋଦ୍ଧାଙ୍କ ଠାରୁ ପାଇ ବିହ୍ୱଳ ହୋଇପଡ଼ିଥିବା ସ୍ୱାଭାବିକ । ସଦା-ବିନମ୍ର କବିଚିତ୍ତ ଏହି ସମବେଦନାର / ସହାନୁଭୂତିର ଯଥାଯୋଗ୍ୟ ପ୍ରତି-ଉପହାର ପ୍ରଦାନ କରି ନିଜ କୃତଜ୍ଞତା ପ୍ରକଟିତ କରିବା ନିମନ୍ତେ ବିଧିପରିକର ହୋଇଥିଲେ ।

'ଉତ୍କଳ ଲକ୍ଷ୍ମୀ' ଏହି ଉଦ୍ୟମର ଫଳଶ୍ରୁତି । ୧୮୯୪ ମସିହା ବେଳକୁ ରାଧାନାଥୀ ପ୍ରତିଭା ଘୋର ବିପର୍ଯ୍ୟୟର ସମ୍ମୁଖୀନ । ଏତେବେଳେକୁ 'ଇନ୍ଦ୍ରଧନୁ', 'ବିଜୁଳି'ର ସଂଘର୍ଷ ଚରମ ସୀମାରେ ଉପନୀତ । ଆଞ୍ଚଳିକ କଳାଚର୍ଚ୍ଚାର ଏହି ଅଭିନବ ପୁରସ୍କାର ପ୍ରଶଂକାତର କବିମନକୁ କରିଛି ବିଚଳିତ / ମନ ଉତ୍ପାଦ

---

$ ମନ୍ତବ୍ୟ-ଇନ୍ଦୁମତୀ-ଗଙ୍ଗାଧର ଗ୍ରନ୍ଥାବଳୀ ।

★ ରାଧାନାଥଙ୍କ ୨୪-୮-୯୪ ର ପତ୍ର ।

ଶ୍ରୀ ଦୈନ୍ୟ / ଶରୀର ଦୌର୍ବଲ୍ୟ । ଏହାର ସଂକେତ ଗଙ୍ଗାଧରଙ୍କୁ ଲେଖିଥିବା ପତ୍ରରେ ପ୍ରକଟିତ, "ନାନା କାରଣରୁ ମୋହର ଶରୀର ଅସୁସ୍ଥ ଏବଂ ମନ ବିକ୍ଷୁବ୍ଧ ଅଛି । ବର୍ତ୍ତମାନ ଅଧିକ କିଛି ଲେଖିପାରିବି ନାହିଁ ।"★ "ମୋହର ମାନସିକ ଅଶାନ୍ତି ଏବଂ ଶାରୀରିକ ଅସୁସ୍ଥତା ମୋହର ନିତ୍ୟ ନୈମିତ୍ତିକ ଅବଶ୍ୟ କରଣୀୟ କାର୍ଯ୍ୟରେ ସୁଦ୍ଧା ବ୍ୟାଘାତ ଘଟାଉ ଅଛି । ରଚନା କିମ୍ବା ସାହିତ୍ୟାନୁଶୀଳନ ତ ଅଧିକ କଥା ।"* ଯେଉଁ ରାଧାନାଥ କଳାଚର୍ଚ୍ଚା ନିମନ୍ତେ / ଶିକ୍ଷା ଉତ୍କଳ ଜନମାନଙ୍କୁ ଆଧୁନିକ ରୁଚି ସମ୍ମତ କାବ୍ୟାଳଙ୍କାରରେ ଭୂଷିତ କରିବା ନିମନ୍ତେ ନିଜର ବହୁମୂଲ୍ୟ ସମୟ / ସ୍ୱାସ୍ଥ୍ୟ ସମସ୍ତ ବିସର୍ଜନ ଦେଇଥିଲେ, ତାଙ୍କୁ ହିଁ ପୁଣି ଶୁଣିବାକୁ ପଡ଼ୁଛି, ତାଙ୍କର କଳ୍ପନା ଶକ୍ତି, "ଅଶ୍ରାବ୍ୟ, ଅପାଠ୍ୟ, ଜଘନ୍ୟ, ଘୃଣିତ, ଓ କଦର୍ଯ୍ୟ ଆଖ୍ୟାୟିକାମାନଙ୍କର ଜନ୍ମଦାୟୀ ଅଟେ ।"$ ଅପମାନାହତ କବି-ଚିତ୍ତ ତେଣୁ ଏହି ସମୟରେ ସାହିତ୍ୟାନୁଶୀଳନରୁ ନିଜକୁ ଦୂରେଇ ନେଇଛି । ଗଙ୍ଗାଧର ଦୂରରେ ଥାଇ କବିଚିତ୍ତର ଏଇ ବେଦନାବୋଧକୁ ମର୍ମେ ମର୍ମେ / ପ୍ରାଣେ ପ୍ରାଣେ ଅନୁଭବ କରିଥିଲେ । ଏହି ସମୟରେ କ୍ଷତାକ୍ତ କବିଚିତ୍ତରେ ଶାନ୍ତିର ଚନ୍ଦନ ବୋଳି, ଅନ୍ତତଃ ତାଙ୍କର ମନକୁ ଶାନ୍ତ କରିବା ଯେ ଏକାନ୍ତ ପ୍ରୟୋଜନ ଏହା ଗଙ୍ଗାଧରଙ୍କ ନିକଟରେ ଅଛପା ନଥିଲା । ଟିକିଏ ସହାନୁଭୂତି / ଆଶ୍ୱାସନାର ପଦେ କଥା ଯେ ଏ ସମୟରେ କେତେ ଉପକାରୀ ଜୀବନ ବିଦ୍ୟାଳୟରେ ବାରମ୍ବାର ଲାଞ୍ଛିତ ହୋଇଥିବା ଗଙ୍ଗାଧର ସେତିକି ଜାଣୁଥିଲେ । ତେଣୁ ସହାନୁଭୂତିର ଅର୍ଘ୍ୟ ପ୍ରସ୍ତୁତ ହେଲା । ସମବେଦନା ପ୍ରବଣ କବି ଲେଖନୀରୁ ସ୍ରବିଗଲା, "କାବ୍ୟ ହିଁ ଗଲେଣି କାବ୍ୟ ରଚିବାକୁ ରାଧାନାଥ ନାମ ବହି / ତାହାଙ୍କ ଭାରତୀ ବଳେ ଖ୍ୟାତ ହେବ ଭାରତେ ଉତ୍କଳ ମହୀ;" 'ଉତ୍କଳ ଲକ୍ଷ୍ମୀ'ଙ୍କର ବନ୍ଦନା ଗୀତି ଗାନ କରିବା ନିମନ୍ତେ ଜୀବନ୍ୟାସ ପାଇଛନ୍ତି ପୁଣି ବିଭିନ୍ନ ରାଧାନାଥୀ ଚରିତ୍ର ।- ଏଗୁଡ଼ିକର ବର୍ଣ୍ଣନାରେ ସେମାନଙ୍କର ସ୍ୱାଭାବିକ ସଙ୍ଗତି / ଅସଙ୍ଗତିର ସହାନୁଭୂତିଶୀଳ ବିଶ୍ଳେଷଣ ପ୍ରକାଶିତ ହୋଇଛି । ରାଧାନାଥୀ ଚରିତ୍ର ମାଳକଣ୍ଠ କାବ୍ୟର ବିଷୟୀଭୂତ ହୋଇଛନ୍ତି । ମାତ୍ର ସେଠାରେ ସୃଷ୍ଟି ଏବଂ ସ୍ରଷ୍ଟାଙ୍କ ପ୍ରତି ଯେଉଁଭଳି ତାଚ୍ଛଲ୍ୟ ପ୍ରକଟିତ ହୋଇଛି, ଗଙ୍ଗାଧର ସେପରି କରିନାହାନ୍ତି । ସୃଷ୍ଟି ପ୍ରତି ଏହି ଅକରୁଣ ମନ୍ତବ୍ୟରେ ଲେଖକ ହୃଦୟର ଅହଂମ୍ମନ୍ୟତା ହିଁ କେବଳ ପ୍ରକଟିତ ହୋଇଛି । ନିମ୍ନରେ ବିଭିନ୍ନ କବିଙ୍କ ରଚନାରେ ରାଧାନାଥୀ ସୃଷ୍ଟି ପ୍ରତି ମନ୍ତବ୍ୟ ଆଲୋଚିତ ହେଉଛି ।

(୧) ପାର୍ବତୀ-ପର୍ଯ୍ୟଙ୍କ ପାପ / ରସପାନେ କାମଚାପ / ସରସ୍ୱତୀ ଲୀଳା ଭଙ୍ଗେ ବିନାଶ ଯଥା—
[ ସମ୍ବାଦ ବାହିକା — ୩-୮-୧୮୯୩ ]

(୨) ଗଙ୍ଗେଶ୍ୱର ଦେବ ବନଭବନେ

(କ) ପୃଷ୍ଠ ଭରେ ହୋଇ ଛୁଡ଼ା / ଦେବୀଙ୍କ ରତନ ପଣତ କାନରେ ଢ଼ାକୁଥିଲେ ମୁଖବ୍ରୀଡ଼ା

(ଖ) କୌଶଲ୍ୟା ଆସିଲା ମୁଖ ଢ଼ାଙ୍କି ବାସେ, କଠାର କରେ ପାବଣ୍ଡ ।
[ ଗଙ୍ଗାଧର— ଉତ୍କଳ ଲକ୍ଷ୍ମୀ — ପୃ. ୧୯୯ (୧୮୯୪) ]

(୩) କଳିଶୁଳ ଗାଙ୍ଗ ଧଢ଼ଳ ଏବେ ନୟନେ ନାଚେ, କବିଙ୍କି ସୁନର ବସ୍ତ୍ରେ ମୁଁହ ଫେରିଅ ପଛେ ।
[ କୋଣାର୍କେ — ମାଳକଂଠ ]

---

★ ରାଧାନାଥଙ୍କ ପତ୍ର — ୨୪ । ୮ । ୯୪

* ରାଧାନାଥଙ୍କ ପତ୍ର — ୧ । ୧ । ୯୫

$ ଉତ୍କଳ ଦୀପିକା — ୩୦ । ୧୨ । ୧୮୯୧

(୪) ଶରତ୍ ଆର ଅସିଲାରେ / ଉପରିତନଦୀ-ଘାରେ / କାମାତୁର ରାଜବାଳା ତ୍ରାକଲ ଚମ୍ପା / ଛୁଟିଲେ ଦେଇ ଜଳାଞ୍ଜଳି / ନଣୀଥରେ ଗଲା ଚଳି / ନାୟକ ସମ୍ମୁଖେ ଥାପି ମୋହନ ଲଙ୍କା / ମ୍ଲେଛରାଇଲା ରାଜମଣି, ଫୁଲବାଣେ ବାଳାମଣି / ପ୍ରୀତିଆନ ହେଲେ ଆଉ କଏ କହନ୍ତା ?
[ ସମ୍ବାଦ ବାହିକା : ୩ - ୮ - ୯୩ ]

(୫) ନନ୍ଦିକା ଆସିଲା କଣ୍ଟକିତ ପଥେ ଲଙ୍ଘା—ଉପାନହ ପଦେ – ” [ ଉତ୍କଳ ଲକ୍ଷ୍ମୀ—ପୃ. ୧୯୯ ]

(୬) ଘରଗୁଡ଼ କମ୍ପା ଯିବେ ସେ ବାରବାଳା ନନ୍ଦିକା/ସହକାର ଦ୍ରୁମ ଗହନେ ଭେଦି କ୍ଷୀଣ ଚନ୍ଦ୍ରିକା/
[ କୋଣାର୍କେ — ମାଳକଣ୍ଠ ]

(୭) ଅମ୍ବୁନିଧି କୂଳେ ପୁଣି / ଚନ୍ଦ୍ରଘାଟେ ଅଛି ଶୁଣି / ନରେଶ ଅବଳାବାଳା କ୍ରୀଡ଼ନରତା / ବୁଡ଼ାଇ ମାରିଲା ତାକୁ / ଗୋଡ଼ାଇ ପ୍ରେମଶୀଳାକୁ / ପ୍ରେମେ ଉନମତ୍ତ ରାହାରାଜ ଦେବତା ।
[ ସମ୍ବାଦ ବାହିକା — ୩ - ୮ - ୯୩ ]

(୮) ଚନ୍ଦ୍ରହାସେ ବାଳା ଆସିବେ / ଚନ୍ଦ୍ରଭାଗା ସୁନ୍ଦରୀ / ଯବନାମା କବି ନାୟିକା / ନାହିଁ ନିଜ ଆର୍ଯ୍ୟରେ —”
[ କୋଣାର୍କେ — ମାଳକଣ୍ଠ ]

(୯) ନବୀନ ରବିଙ୍କ ଗାଢ଼ ଅନୁରାଗ ପେଷଣେ, ଚରଣ ତଳ / ରଙ୍ଗ ହୋଇଥିଲା ଚନ୍ଦ୍ରଭାଗା ସଖି ଆସିଲେ ହୋଇ ଚଞ୍ଚଳ —”
[ ଉତ୍କଳଲକ୍ଷ୍ମୀ — ପୃ. ୧୯୯ ]

ଉପରୋକ୍ତ ଉଦ୍ଧୃତିରୁ ଲେଖକମାନଙ୍କର ସୁସ୍ପଷ୍ଟ ଚିତ୍ର ପାଠକେ ପାଇପାଆନ୍ତି । ସମ୍ବାଦ ବାହିକା / କୋଣାର୍କେରେ କବି ପ୍ରତିଭା ପ୍ରତି ବ୍ୟକ୍ତିଗତ ବିରାଗ / ଅସୂୟା ଯେଉଁଭଳି ତୀବ୍ରଭାବରେ ପ୍ରକଟିତ ହୋଇଛି / ଗଙ୍ଗାଧରଙ୍କର ରଚନାରେ ଠିକ୍ ସେତିକି ସମ୍ଭ୍ରମ ରକ୍ଷା କରାଯାଇ ପାରିଛି । କବି କର୍ମ ଯେ ସର୍ବଦା ଉପଯୁକ୍ତ ଧାରାରେ ବହିଯିବ, ଏଭଳି ଆଶା କରାଯାଇ ନପାରେ । ଦୋଷତ୍ରୁଟିର ସମାଲୋଚନା ତେଣୁ ବାଞ୍ଛନୀୟ । ମାତ୍ର ସେ ସମାଲୋଚନା ପୂର୍ଣ୍ଣ ନୈର୍ବ୍ୟକ୍ତିକ ହେବା ବାଞ୍ଛନୀୟ । ବ୍ୟକ୍ତି ସତ୍ତାକୁ କବି ସତ୍ତା ସହିତ ଏକାକାର କରି ବିଚାରକଲେ କବିପ୍ରତି ଅନ୍ୟାୟ କରାଯାଏ । 'କୋଣାର୍କେ' ତଥା 'ସମ୍ବାଦବାହିକା'ରେ କବିଙ୍କ ସମ୍ପର୍କରେ ଯାହା ମନ୍ତବ୍ୟ ଦିଆଯାଇଛି ତାହା କୌଣସି ଗଠନଧର୍ମୀ ଆଲୋଚନା ନୁହେଁ ବରଂ ବ୍ୟକ୍ତିଗତ ଈର୍ଷ୍ୟା / ଅସୂୟାର ପ୍ରକାଶ ମାତ୍ର । ଗଙ୍ଗାଧର କବି କର୍ମର ଯଥାର୍ଥ ମହତ୍ତ୍ୱ ହୃଦୟଙ୍ଗମ କରିପାରିଛନ୍ତି । କଳା ମାତ୍ରେଇ ପବିତ୍ର / ସୁନ୍ଦର ଏବଂ ପାବନ / ସେଥିରେ ବ୍ୟକ୍ତିଗତ ଦୃଷ୍ଟିକୋଣ / ବିଦ୍ବେଷବୋଧ କାଳିମା ଲେପନ କରିଥାଏ । ଅପକ୍ଷପାତ- ସମାଲୋଚନା ନିମନ୍ତେ ପ୍ରୟୋଜନ ସମାନୁପାତ ଦୃଷ୍ଟିଭଙ୍ଗୀ । ଆଲୋଚ୍ୟ ଦୁଇ କାବ୍ୟାଂଶରେ ଏହାର ଘୋର ଅଭାବ ଦେଖିବାକୁ ମିଳିଥାଏ । ତେଣୁ ଆମେ ତାହାକୁ ରାଧାନାଥୀ କାବ୍ୟର ଯଥାର୍ଥ ସମାଲୋଚନା ବୋଲି ଗ୍ରହଣ କରିନପାରୁଁ । ଏକ ସମ୍ବେଦନଶୀଳ କବିମନ ନେଇ ମେଦ୍ଦେରି; ରାୟଙ୍କ ସୃଷ୍ଟି ଭୂମିଆଡ଼େ ଦୃଷ୍ଟି ବୁଲାଇଛନ୍ତି । ତେଣୁ ରାଧାନାଥ କବିଙ୍କ ଦୃଷ୍ଟିରେ ହୋଇଛନ୍ତି ଅଲୌକିକ ଶକ୍ତି ସମ୍ପନ୍ନ 'ଭର୍ଜ୍ଜପ୍ରବର' ଯାହାଙ୍କର ମାନ୍ତ୍ରିକ କୌଶଳ 'ମୃତ ପ୍ରାଣିଗଣ'ଙ୍କୁ ନବପ୍ରାଣ / ନବ କଳେବର' ଅର୍ପଣ କରିବା ଭଳି ଶକ୍ତିଶାଳୀ । ତେଣୁ ଘୃଣା ନୁହେଁ / ଆନ୍ତରିକତା ଦେଇ କବି-ପ୍ରତିଭାର ବିନମ୍ର ନିରାକରଣର ପ୍ରୟୋଜନ ।

ନିଷ୍ଠୁର ଉଦ୍ଦେଶ୍ୟବିହୀନ ସମାଲୋଚନା ପ୍ରତିଭା ପକ୍ଷରେ କି ଭଳି ହାନିକାରକ ହୋଇଥାଏ ଏହା ମେହେରଙ୍କ ଅପେକ୍ଷା ଅଧିକ କିଏ ଜାଣିଥିଲା ? ଆଘାତ ପରେ ଆଘାତ ପାଇ କବି ହୃଦୟ ଯେତେବେଳେ ଏକ ନିଃସଙ୍ଗ ବ୍ୟଥାରେ ବେଦନାତୁର, ସେତେବେଳେ ଆଶ୍ୱାସନାର ପଦେ କଥା ପ୍ରତିଭାର ଆତ୍ମବିଶ୍ୱାସ ଫେରାଇ ଆଣିବାରେ କିଭଳି ସହାୟକ ହୋଇଥାଏ ? ଏ କଥା ଗଙ୍ଗାଧର ମର୍ମେ ମର୍ମେ ଅନୁଭବ କରିଥିଲେ । 'ଉତ୍କଳ ଲକ୍ଷ୍ମୀ' ଏହି ଅନୁଭବର / ଏକ ବିଲୟମୁଖୀ ପ୍ରତିଭାର ପୁନଃ ପ୍ରତିଷ୍ଠାନର ଅମୃତମୟ ଫଳ ।

ଗଙ୍ଗାଧରଙ୍କର ଏହି ଉଦାରତା / କବି-କର୍ମ ପ୍ରତି ଏହି ବିନମ୍ର ଶ୍ରଦ୍ଧା ଜ୍ଞାପନ ରାଧାନାଥଙ୍କ ଆବେଗପ୍ରବଣ ମନରେ ସହଜରେ ପ୍ରତିଫଳିତ ହୋଇଥିଲା । ତେଣୁ ଗଙ୍ଗାଧର ହୋଇଥିଲେ କବିପ୍ରାଣର 'ଅନିବଂଧନ ବାନ୍ଧବ' । 'ଉତ୍କଳ ଲକ୍ଷ୍ମୀ'ର ଆଲୋଚନା ପ୍ରସଙ୍ଗରେ କେବଳ ଏତିକି ମାତ୍ର କୁହାଯାଇପାରେ ଯେ, ପାଠକ ଏଥିରେ ଏକ ନୂତନ ମେହେରଙ୍କୁ ଦେଖିବାକୁ ପାଆନ୍ତି, ଯାହାଙ୍କର ଅଦ୍ଭୁତ ସୌନ୍ଦର୍ଯ୍ୟ-ବୋଧ / ରସପରିବେଷଣର ଆନୁପାତିକତା ତଥା ଏକ ସାମୁହିକ ଶୈଳ୍ପିକ ମୂଲ୍ୟବୋଧ 'ଉତ୍କଳ-ଲକ୍ଷ୍ମୀ'ର ପ୍ରତ୍ୟେକ ଛତ୍ରରେ ଲିପିବଦ୍ଧ ହୋଇ ରହିଛି ।

ପୂର୍ବରୁ କୁହାଯାଇଛି ଯେ, ୧୮୯୪ ରେ 'ଉତ୍କଳ ଲକ୍ଷ୍ମୀ'ର ଖଣ୍ଡିତ ଅଂଶ ମାତ୍ର ପ୍ରଥମେ ପ୍ରକାଶିତ ହୋଇଥିଲା । ଏହି ଅଂଶଟି ବର୍ତ୍ତମାନ ଦେଖିବାକୁ ମିଳୁ ନଥିଲେ ହେଁ ଏହା ତତ୍କାଳରେ ସେତେ ପ୍ରଶଂସିତ ହୋଇ ନଥିଲା । ଏହି ସାରସ୍ୱତ କର୍ମ ଯଦି ଉଦ୍ଦେଶ୍ୟମୂଳକ ହୋଇଥାଏ ଏବଂ ରାଧାନାଥ ପ୍ରଶଂସା ଗାନ ଯଦି ଏହାର ଧ୍ୟେୟ ହୋଇଥାଏ, ତେବେ ସ୍ୱୀକାର କରିବାକୁ ହେବ ସେ କାଳରେ ଏହା ଏକ ନିତାନ୍ତ ବୈପ୍ଳବିକ / ଦୁଃସାହସିକ ଉଦ୍ୟମ । ସମସ୍ତ ସାରସ୍ୱତ-ପରିବେଶ ଯେତେବେଳେ ରାଧାନାଥ ବିରୁଦ୍ଧରେ ବିଷୋଦ୍‌ଗାରମୁଖର, ସେତେବେଳେ ଗଙ୍ଗାଧରଙ୍କର ପ୍ରଚେଷ୍ଟା ନିଶ୍ଚିତ ଭାବରେ ଅନନ୍ୟ । ତେଣୁ ସେତେବେଳେ 'ଉତ୍କଳ ଲକ୍ଷ୍ମୀ' ସମାଲୋଚିତ ହୋଇଥିବା ସମ୍ଭବପର । ରାଧାନାଥଙ୍କ ଦୁର୍ଦ୍ଦଶା, ସ୍ୱୟଂ ନିଜର ସମାଲୋଚନା ଏବଂ ନାନାପ୍ରକାର ଜାଗତିକ ସମସ୍ୟା କବିଚିତ୍ତକୁ ଏହାପରେ ଦୀର୍ଘକାଳ ବିକ୍ଷୁବ୍ଧ କରିରଖିଛି । ସୃଷ୍ଟି-ନିର୍ଝର କ୍ଷୀଣ ହୋଇଯାଇଛି ।

ବିପଦର ଶେଷ ହୋଇନାହିଁ । ଏହାରି ମଧ୍ୟରେ ପୁଣି ଦେଖାଦେଇଛି ଚରମଦୁର୍ବିପାକ । କବିଙ୍କର ଗୃହଭଗ୍ନ ହୋଇଛି । ଏତେବେଳକୁ ଗଙ୍ଗାଧରଙ୍କୁ ୩୫ ବର୍ଷ ମାତ୍ର । ସମଗ୍ର ସଂସାର ଶୂନ୍ୟ ହୋଇଯାଇଛି । ଜୀବନର ମଧୁ ପିଆଲା ପରିଣତ ହୋଇଛି ତୀବ୍ର ହଳାହଳରେ । ଏକ ଶାନ୍ତିପୂର୍ଣ୍ଣ ଦାମ୍ପତ୍ୟ ଜୀବନର ଅଭାବ ଯେ କିଭଳି ପୀଡ଼ାଦାୟକ, ତାହା ଯୁବକ ଗଙ୍ଗାଧର ଅନୁଭବ କରୁଥିଲେ । ମାତ୍ର ଅଳ୍ପଦିନ ପୂର୍ବେ ପତ୍ନୀ-ଶୋକ ବିଧୁର 'ଅଜ'ଙ୍କର ଚରିତ୍ର ଚିତ୍ରଣ କଲାବେଳେ ଫୁଲ୍ଲାରବିନ୍ଦମୁଖିମା-ପ୍ରଜ୍ୱଳିତ-ଚିତାନଳ କୋଳରେ ମହାନିଦ୍ରାରେ ଶାୟିତା ଇନ୍ଦୁମତୀଙ୍କର ଦୁରବସ୍ଥାରେ ଅଜ ହୃଦୟ ଶତଧା ବିଦୀର୍ଣ୍ଣ ହେବା ନିମନ୍ତେ କାମନା କରାଯାଇଥିଲା । ଏବେ କବି ସ୍ୱୟଂ ସେଇ ଅବସ୍ଥାର ସମ୍ମୁଖୀନ । ମାତୃହରା ସନ୍ତାନମାନଙ୍କର ବେଦନା ( ଅସହ୍ୟ-ଜୀବନ-ଦେବତାଙ୍କର ଏକ ନିଷ୍ଠୁର ପରିହାସ !

ସମୟର ସ୍ପର୍ଶରେ ଉତ୍ତରଳ ଶୋକ ଧୈର୍ଯ୍ୟ ରଜ୍ଜୁର ଆୟତ୍ତାଧୀନ ହୋଇଥାଏ । ସ୍ୱୟଂ କବି ଅନ୍ୟକୁ ସାନ୍ତ୍ୱନା ଦେବା ପ୍ରୟୋଜନରେ କବିଙ୍କ ଶିଷ୍ୟ ମୁଖରେ ଯାହା କୁହାଇଛନ୍ତି, ତାହାହିଁ ଏବେ ତାଙ୍କରି ସ୍ମରଣୀୟ ହୋଇଛି । ପୃଥ୍ୱୀରେ 'ଭବିତବ୍ୟ' ତାହା 'ଅବଶ୍ୟ' ଘଟିତ । 'ମାୟାମୟ ଭବହାଟ'ରେ କେହି କାହାର ନୁହନ୍ତି । 'ନିଜ ନିଜର କଉଡ଼ି ସରିଗଲେ ନିଜ ବାଟରେ ଫେରିଯାଇଛନ୍ତି ।$ ତେଣୁ ପରିଣାମ ଶୂନ୍ୟ ଅନୁଶୋଚନାରେ କି ପ୍ରୟୋଜନ ! ଝଡ଼ିଗଲା ଫୁଲ ଆଉ ଥରେ ବୃନ୍ତଶୋଭୀ ହେବ କି ?

ରଚନାର ଗତି ୧୮୯୪ ରୁ ଶ୍ଲଥ ହୋଇଥିଲା । ଏହି ସମୟରେ କବି ରଚନା କରିଛନ୍ତି । 'ଭାରତୀ ନିବେଦନ' (୧୮୯୪) ଏବଂ ଏହି କବିତାଟି ହିତୈଷିଣୀର ୩-୧୦-୧୮୯୪ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହାପରେ ରଚିତ ଏବଂ ପ୍ରକାଶିତ ହୁଏ 'ଉତ୍କଳ ଭାରତୀଙ୍କ ନିବେଦନ' । 'ହିତୈଷିଣୀରେ' ପ୍ରକାଶ କାଳ ୭-୩-୧୮୯୫ ଏହି ଉଭୟ ରଚନା ଗଙ୍ଗାଧରଙ୍କର ଜାତୀୟତା ଉଦ୍ରେକ । ୧୮୯୩/୯୪ ରେ ସମ୍ବଲପୁରର ଅବସ୍ଥା ଯାହାଥିଲା, ତାହାପୂର୍ବରୁ ଆଲୋଚିତ । ଓଡ଼ିଆଭାଷା ବିରୁଦ୍ଧରେ ସଂସ୍କୃତି ଲୋପ କାମନାରେ ଯେଉଁ ଚିନ୍ତାରେ ସେ ସମୟରେ ବୁଲୁଥିଲେ, ଉପରୋକ୍ତ ଦୁଇଟି କବିତାରେ ତାହାର ପ୍ରତିବାଦରେ କବିଚିତ୍ତର ମୁଖରତା ପ୍ରକଟିତ ।

ଏହା ପରର ରଚନା ହେଉଛି 'ମହିମା' (୧୮୯୭) ଏହି କ୍ଷୁଦ୍ର ପୁସ୍ତିକାଟି ୧୮୯୬ ଶେଷ ଭାଗରେ ରଚିତ ହୋଇଥିବା ସମ୍ଭବପର । ୧୮୯୭ ଜାନୁୟାରୀ 'ଉତ୍କଳ ସାହିତ୍ୟ'ରେ ଏହା ପ୍ରକାଶିତ ହୁଏ । ନୀତି-ଶିକ୍ଷାମୂଳକ / ଉପଦେଶାତ୍ମକ ଏହି କବିତାଟିରେ ଦାର୍ଶନିକ / ସଂସ୍କାରକ ଗଙ୍ଗାଧରଙ୍କର ଭାବମୂର୍ତ୍ତି ସହିତ ପାଠକ ପରିଚିତ ହୋଇଥାଆନ୍ତି । ମହତ୍ତ୍ୱ ଜୀବନ ପଠନ / ପାଠନ ଏବଂ ଅନୁଧ୍ୟାନରେ ମାନବ-ଜୀବନ ସଫଳ ହୋଇଥାଏ ବୋଲି କବି ଏଠାରେ ପ୍ରତିପାଦନ କରିବାକୁ ଉଦ୍ୟମୀ ହୋଇଅଛନ୍ତି । 'ସତ୍ୟ ଏହାର କଳେବର ଓ ଶିବ ଏହାର ଆତ୍ମା † ଏହି ରଚନାଟିର ଭାଷା ମାତ୍ର ଆଧୁନିକ । ପ୍ରାଚ୍ୟ-ଆତ୍ମାର ଶାଶ୍ୱତ ରୂପ ବର୍ଣ୍ଣନା ଏହାର ଅନ୍ତଃସ୍ୱର । ସ୍ଥାନେ ସ୍ଥାନେ ଆଧୁନିକ ଭାବ ମଧ୍ୟ ଏଥିରେ ରହିଛି । ଧନଗ୍ରାସେ ରବି / ରବିକରୋତ୍କୃଷ୍ଟ / ବାଷ୍ପରେ ଘନ ସଂଚର / ପ୍ରକୃତିରୁ ଏହାକୁ ପ୍ରମାଣ କରିଯାଇପାରେ । ଏହାର ଶୈଳ୍ପିକ ସୌନ୍ଦର୍ଯ୍ୟ ସମ୍ପର୍କରେ ବିଶେଷ କିଛି କହିବାର ନାହିଁ । ତେବେ ସମସ୍ୟା ଜର୍ଜରିତ କବିଚିତ୍ତ 'ମହିମା'ର ଉପଦେଶାବଳୀ ମଧ୍ୟରେ ନିଜ ଦୁର୍ଦ୍ଦଶା ନିରାକରଣର ସନ୍ଧାନୀ ହୋଇଥିବାର ଅନୁମାନ କରିଯାଇପାରେ ।

'ମହିମା'ର ପ୍ରାପ୍ତି ସ୍ୱୀକାର କରି ରାଧାନାଥ ଲେଖିଛନ୍ତି, "ମହିମା କ୍ଷୁଦ୍ର ରଚନା ସତ୍ୟ, ମାତ୍ର ଉତ୍କଳ ଭାଷାର ଏପରି ଅଳଙ୍କାର ଅଧିକ ନାହିଁ, ସୁତରାଂ ଅନାଦରର ପଦାର୍ଥ ନୁହେଁ ।"* ଆଲୋଚ୍ୟ କାଳରେ ରାଧାନାଥୀ ରଚନା ସବୁ ସ୍ୱୀୟ ନୀତିହୀନତା ନିମନ୍ତେ କଟୂକ୍ତିରେ ସମାଲୋଚିତ ହୋଇଥିବାରୁ ଚତୁର୍ଦ୍ଦିଗରେ 'ନୀତିବାନ୍' ସାହିତ୍ୟ ରଚନା କରିବାନିମନ୍ତେ / ଅଧ୍ୟୟନ କରିବାନିମନ୍ତେ ଏକଜାତିର

---

$ ଇନ୍ଦୁମତୀ — ଗଙ୍ଗାଧର ଗ୍ରନ୍ଥାବଳୀ — ପୃ ୧୮୨ / ୧୮୩ ।
† ଗଙ୍ଗାଧର ଜୀବନୀ — ଶ୍ରୀ ଅସିତ କବି — ପୃ. ୨୧୪ ।
* କବିଲିପି — ପୃ. ୮୦ / ୮୧ ।

ଆକାଙ୍କ୍ଷା ଦେଖା ଦେଇଥିଲା । 'ମହିମା' ଏହି ଆକାଂକ୍ଷାର ଏକ ବିନମ୍ର ପ୍ରକାଶ ବୋଲି ମଧ୍ୟ ଧରି ନିଆ ଯାଇପାରେ ।

ଆଲୋଚ୍ୟ ସମୟରେ ତିନୋଟି ପ୍ରବନ୍ଧ ମଧ୍ୟ ରଚିତ ହୋଇଥିବାର ଦେଖିବାକୁ ମିଳୁଛି । ଗଙ୍ଗାଧରଙ୍କ ଗଦ୍ୟଶୈଳୀ ଯେ ନିତାନ୍ତ ସାଧାରଣ ଏକଥା କୁହାଯାଇ ପାରିବ ନାହିଁ । ପ୍ରବନ୍ଧର ସାଧାରଣ ଧର୍ମ ସମ୍ପର୍କରେ ଡଃ ନଟବର ସାମନ୍ତରାୟଙ୍କ ମନ୍ତବ୍ୟ ହେଉଛି, "ବିଷୟବସ୍ତୁର ନୂତନ ପରିକଳ୍ପନା କିମ୍ବା ନୂତନ ଦୃଷ୍ଟିକୋଣରୁ ବିଷୟ ପର୍ଯ୍ୟାଲୋଚନା, ଭାବର ସଂଯତ ପରିପ୍ରକାଶ, ଭାଷାର ଭାବ ପ୍ରକାଶ କ୍ଷମତା, ବସ୍ତୁ ଭାବ ଓ ବିଷୟର ଗ୍ରନ୍ଥନ କୌଶଳ, ଉଚ୍ଚ ଚିନ୍ତା ସର୍ବୋପରି ଅନୁଭୂତ କଳ୍ପନାକୁ ରୂପାୟନ କରିବାରେ ଲେଖକଙ୍କର ଅପୂର୍ବ ପାରଦର୍ଶିତା★ ମୌଳିକ ପ୍ରବନ୍ଧ ରଚନା ନିମନ୍ତେ ତେଣୁ ଲେଖକଙ୍କର ଗଭୀର ଜ୍ଞାନର ଯେଉଁ ଭଳି ପ୍ରୟୋଜନ, ସେହିଭଳି ପ୍ରୟୋଜନ, ମୌଳିକ ଚିନ୍ତାଶକ୍ତି । ଏହି ମୌଳିକ ଚିନ୍ତା ଶକ୍ତି ପ୍ରତିଭା ପ୍ରସୂତ ହୋଇଥାଏ । ବାଚନିକ ଅର୍ଥରେ ଗଙ୍ଗାଧର ଉଚ୍ଚ ଶିକ୍ଷିତ ନଥିଲେ । ତେବେ ସ୍ୱଶକ୍ତି / ସାମର୍ଥ୍ୟ ଅନୁରୂପ ଜ୍ଞାନ ସଂଗ୍ରହ କରିବା ନିମନ୍ତେ ସେ କଦାପି ଶିଥିଳ ପ୍ରଯତ୍ନ ହୋଇ ନାହାନ୍ତି । ବ୍ୟାକରଣ / ସାହିତ୍ୟ / ବିଜ୍ଞାନ ପ୍ରଭୃତି ବିଭିନ୍ନ ବିଷୟରେ ତାହାଙ୍କର ବ୍ୟୁତ୍ପତ୍ତି ପ୍ରମାଣିତ । ଗଙ୍ଗାଧରଙ୍କର ବ୍ୟାକରଣ ଜ୍ଞାନ ରାଧାନାଥଙ୍କର ପ୍ରଶଂସା ଅର୍ଜନ କରିଥିଲା । ନିଜଲିଖିତ ବ୍ୟାକରଣ ଗ୍ରନ୍ଥର ପାଣ୍ଡୁଲିପି ସଂଶୋଧନ ନିମନ୍ତେ ଗଙ୍ଗାଧରଙ୍କୁ ପଠାଇ ବାରମ୍ବାର ସେଥିରେ ଥିବା 'ଭୁଲ୍ ନିର୍ଦ୍ଦେଶ' କରିବା ନିମନ୍ତେ ରାଧାନାଥ ଗଙ୍ଗାଧରଙ୍କୁ ଅନୁରୋଧ ଜଣାଇଥିବାର ଦେଖାଯାଉଛି ।

ପ୍ରବନ୍ଧ ତିନୋଟି ମଧ୍ୟରୁ 'ବ' ଭେଦ' 'ହିତୈଷିଣୀ'ର ୧୭-୩-୧୮୯୭ ସଂଖ୍ୟାରେ "ଋ ଓ ରୁ ଭେଦ", "ହିତୈଷିଣୀ" ୩୧-୮-୧୮୯୮ ସଂଖ୍ୟାରେ ଏବଂ "ଏହା କି ପୃଥିବୀର ଶବ୍ଦ" "ଉତ୍କଳ ସାହିତ୍ୟ" ଜୁଲାଇ ୧୯୦୦ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ପ୍ରଥମ ଦୁଇଟି ପ୍ରବନ୍ଧ ଲେଖକଙ୍କର ଭାଷା ଜ୍ଞାନ ସମ୍ପର୍କୀୟ ଗୋଟିଏ ଗୋଟିଏ ପ୍ରାମାଣିକ ଦଲିଲ୍ । ହିନ୍ଦୀ ଭାଷାରେ 'ବ' ଓ 'ୱ' ଏହି ଦୁଇଟିର ବ୍ୟବହାର କରାଯାଉଥିବା ସ୍ଥଳେ ଓଡ଼ିଆ ଭାଷାରେ ବର୍ଗ୍ୟ 'ବ' ଓ ଅନ୍ତସ୍ଥ 'ବ' ହି ଉଭୟ ମଧ୍ୟରେ କୌଣସି ବ୍ୟାବହାରିକ ପାର୍ଥକ୍ୟ ଦେଖାଯାଉ ନାହିଁ । "ବର୍ଗ୍ୟ 'ବ'ର ଉଚ୍ଚାରଣସ୍ଥାନ ଓଷ୍ଠ, ଅନ୍ତସ୍ଥ 'ବ'ର ଉଚ୍ଚାରଣ ସ୍ଥାନ 'ଦନ୍ତ' ଓ 'ଓଷ୍ଠ । * ହିନ୍ଦୀ ଅକ୍ଷରରେ ଉଭୟ ନିମନ୍ତେ ସ୍ୱତନ୍ତ୍ର ଚିହ୍ନର ବ୍ୟବହାର କରାଯାଉ ଥିବାରୁ ହିନ୍ଦୀଭାଷାଭାଷୀମାନଙ୍କୁ 'ଉଚ୍ଚାରଣ ଦୋଷରେ ଲିପ୍ତ' ହେବାକୁ ପଡ଼ୁନାହିଁ । ତେଣୁ ଓଡ଼ିଆ ଭାଷାରେ 'ବ'ର ପାର୍ଥକ୍ୟ ନିରୂପଣ କରିବା ନିମନ୍ତେ ସେହିଭଳି କୌଣସି ସ୍ୱତନ୍ତ୍ର ଚିହ୍ନର ବ୍ୟବହାର କରାଗଲେ ଭାଷା ଉଚ୍ଚାରଣ ଦୋଷଶୂନ୍ୟ ହୁଅନ୍ତା । ଭାଷାରେ ତାହାର ପ୍ରୟୋଜନୀୟତା ସମ୍ପର୍କରେ ମଧ୍ୟ କବିଙ୍କର ମନ୍ତବ୍ୟ ତାହାଙ୍କ ଗଭୀର ମନନର ଫଳ । ଅନ୍ତସ୍ଥ 'ବ' ନିମନ୍ତେ ଅନେକ 'ଓ' ତଳେ 'ଯ' ଫଳାର ବ୍ୟବହାର କରିଥା'ନ୍ତି । ମାତ୍ର 'ସ୍ୱରବର୍ଣ୍ଣରେ ବ୍ୟଞ୍ଜନ ଫଳା ଲଗାଇବା କଦାପି ଯୁକ୍ତି ସଙ୍ଗତ ନୁହେଁ ।' ପ୍ରବନ୍ଧଟି ଲେଖକଙ୍କର ମୌଳିକ ଚିନ୍ତା ଓ ବ୍ୟାପକ ଜ୍ଞାନର ପରିଚାୟକ ।

---

★ ଓଡ଼ିଆ ସାହିତ୍ୟର ଇତିହାସ — ପୃ. ୪୯୧

* 'ବ' ଭେଦ — ଗଙ୍ଗାଧର ମେହେର ।

ଦ୍ୱିତୀୟ ପ୍ରବନ୍ଧ 'ର' ଓ 'ଋ' ଭେଦ ଲେଖକଙ୍କର ସୂକ୍ଷ୍ମ ବ୍ୟାକରଣ ଜ୍ଞାନର ପରିଚୟସୂଚକ। ଏ ସମ୍ପର୍କରେ କବିଙ୍କର ମନ୍ତବ୍ୟ "ଉତ୍କଳ ଭାଷାରେ 'ର' ଓ 'ଋ' ର ଉଚ୍ଚାରଣ ଏକ ପ୍ରକାର, କିନ୍ତୁ ଅର୍ଥରେ ବିଶେଷ ପ୍ରଭେଦ ଅଛି । × × × ବର୍ଣ୍ଣର ପ୍ରଭେଦରେ ଲକ୍ଷ୍ୟ ନ ରଖି ଅଯଥା ପ୍ରକାରରେ ଲେଖିଲେ ଅର୍ଥରେ ଓ ବ୍ୟାକରଣ ସୂତ୍ରରେ ବାଧା ହୁଏ।"★ ଏହାର ନିରାକରଣ ନିମନ୍ତେ କବି ଯେଉଁ ବ୍ୟାକରଣ ସମ୍ମତ ଉପାୟମାନ ନିର୍ଦ୍ଦେଶ କରିଅଛନ୍ତି, ତାହା ତାଙ୍କର ଗଭୀର ଚିନ୍ତାର ଫଳ ବୋଲି କୁହାଯାଇପାରେ।

ତୃତୀୟ ପ୍ରବନ୍ଧ 'ଏହା କି ପୃଥିବୀର ଶବ୍ଦ' ସମ୍ପର୍କରେ ମଧ୍ୟ ଉପରୋକ୍ତ ମନ୍ତବ୍ୟ ଦିଆଯାଇପାରେ। ଏ ସମ୍ପର୍କରେ ଗଙ୍ଗାଧରଙ୍କର ଜିଜ୍ଞାସାର ଉତ୍ତର ଦେବାକୁ ନିଜର ଅସାମର୍ଥ୍ୟ ପ୍ରକାଶକରି କବିବର ରାଧାନାଥ ଲେଖିଥିଲେ, "ବିଜ୍ଞାନ ସମ୍ବନ୍ଧରେ ମୋହର ଜ୍ଞାନ ଯେପରି ସୀମାବଦ୍ଧ; ଆପଣଙ୍କ ପ୍ରଶ୍ନରେ କୌଣସି ପ୍ରକାର ମତବ୍ୟକ୍ତ କରିବାର ମୋହ ପକ୍ଷରେ ଅନଧିକାର ଚର୍ଚ୍ଚା ହେବ। ଆପଣଙ୍କ ପ୍ରଶ୍ନର ଉତ୍ତର ଦେବାକୁ ସକ୍ଷମ ସମସ୍ତ ଓଡ଼ିଶାରେ କେହି ଅଛନ୍ତି କି ନାହିଁ ସନ୍ଦେହ। ପୃଥିବୀର ଶବ୍ଦ ସମ୍ପର୍କରେ ଆପଣ ଯେଉଁ ଅନୁମାନ କରିଅଛନ୍ତି, ଅନ୍ୟ କୌଣସି ବ୍ୟକ୍ତି ମଧ୍ୟ ସେହିପରି ଅନୁମାନ କରିଥିବାର ମୁଁ ପୁସ୍ତକାଦିରେ ପଢ଼ିଅଛି, ମାତ୍ର ତାହା ମୀମାଂସା ନୁହେଁ — ଅନୁମାନ ମାତ୍ର । କଲିକତାରେ ଶବ୍ଦ ବିଜ୍ଞାନବିତ୍ ପଣ୍ଡିତ ସମ୍ଭବତଃ ୨ / ୪ ଅଛନ୍ତି। ସେମାନେ ଆପଣଙ୍କ ପ୍ରଶ୍ନର ସଦୁତ୍ତର ଦେଇପାରନ୍ତି।$ ଗଙ୍ଗାଧର ଆଲୋଚ୍ୟ ପ୍ରବନ୍ଧରେ ନିଜେ ନିଜ ଜିଜ୍ଞାସାର ଏକ ବିଜ୍ଞାନ ସମ୍ମତ ଉତ୍ତର ପ୍ରଦାନ କରିଅଛନ୍ତି।

ଦୁଃଖର କଥା 'ଗଙ୍ଗାଧର' ଏହିଭଳି ପ୍ରବନ୍ଧ ଅଧିକ ଲେଖିବାକୁ ଅବସର ପାଇନାହାନ୍ତି। ନଚେତ୍ ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଯେ ତାଙ୍କର ମୌଳିକ ଚିନ୍ତା ପ୍ରସୂତ ରଚନା ଦ୍ୱାରା ନିଜର ଦୈନ୍ୟ ଦାରିଦ୍ର୍ୟ ଘୁଞ୍ଚାଇବା ନିମନ୍ତେ ସମର୍ଥ ହୋଇପାରିଥାଆନ୍ତା, ଏଭଳି ଅନୁମାନ କରିବା କଷ୍ଟସାଧ୍ୟ ନୁହେଁ। |ନ୍ତା|

ସୁଦୀର୍ଘ ଆଠବର୍ଷ କବି ନିଜକୁ ସାରସ୍ୱତ ଜଗତଠାରୁ ଦୂରେଇ ନେଇଛନ୍ତି । ସୃଷ୍ଟିର ଯନ୍ତ୍ରଣାରେ ବ୍ୟାକୁଳିତ ହୋଇଛନ୍ତି। ଏକ ଅକୃତଜ୍ଞ ଜାତିର ନିଷ୍ଠୁରତା ବିରୁଦ୍ଧରେ ଅଭିମାନାହତ କବିଚିତ୍ତ ମୀରବରେ ପ୍ରତିବାଦ ଜଣାଇଛି । ଅନୁଯୋଗ କରିଛନ୍ତି ପଲ୍ଲୀକବି ବନ, "ଖଣ୍ଡେ କାବ୍ୟ ଲେଖିଦେଇ ରହିଲ ନିଷ୍ଫିକ୍ରି / ଯୌଶୀଶକ୍ତି ନାଶିକମେ ହେଲା କି ଉଚିତ ?" ତାଙ୍କର କଣ୍ଠରୁ ଉତ୍ସାହ ପ୍ରଦପ୍ରେରଣା ନିର୍ଗତ ହୋଇଛି, "ଅଛି କବିବାଣୀ "ଦୁଃଖ ପାଇ ଦୁଃଖୀ ଜନ / ଯେଉଁ ସୁଖ ପାଏ, ନପାଏ ତା ସୁଖୀ ଜନ—" କବିମନର ରୁଦ୍ଧ ଆବେଗକୁ ସ୍ୱାଭାବିକ ଧାରାରେ ପ୍ରବାହିତ କରିବାକୁ ଆଗେଇ ଆସିଛନ୍ତି ପଣ୍ଡିତମୋହନ — "କବିତାଗୁଡ଼ିକ ପଢ଼ି ମନ ମାନିଯାଏ / ଆଉ ସେ ଲେଖିବ କିଛି ବାଟ ଗୁହିଁଥାଏ—" ଗଙ୍ଗାଧର ନିଜକୁ ପ୍ରସ୍ତୁତ କରୁଥିଲେ। ପତ୍ନୀ ବିୟୋଗ ପରେ ପରେ ୧୯୦୨ ମସିହାରେ ଜ୍ୟେଷ୍ଠ ପୁତ୍ରର ମୃତ୍ୟୁ କବିଙ୍କର ମନକୁ ଅସାଡ଼ କରି ଦେଇଥିଲା। ଦୁଃଖ ଯାହାର ସମୁଦ୍ର ଭଳି ନିଃସୀମ / ଗଭୀର, ଶିଶିର ବିନ୍ଦୁ ଭଳି କଣାଏ ଦୁଃଖ ଆଉ ବା କେତେ ପୀଡ଼ା ଦାୟକ ହେବ ? ଏହି ଦୁର୍ଦ୍ଦିନରେ ପୁଣି

---

★ 'ର' ଓ 'ଋ' ଭେଦ — ଉତ୍କଳହିତୈଷିଣୀ — ୩୧-୮-୯୮।

$ କବିଲିପି — ପୃ. ୮୪।

କବି ଲେଖନୀ ସଚଳ ହୋଇ ଉଠିଛି । ରଚିତ ଏବଂ ପ୍ରକାଶିତ ହୋଇଛି "ବର୍ଷା ଶରତ" ( ଉତ୍କଳ ସାହିତ୍ୟ ୧୯୦୨ ଜୁନ୍ ) ।

ଯେଉଁ କବି ସୁଦୀର୍ଘକାଳ କଚ୍ଛପତୁଲ୍ୟ ନିଜ ଅଭିମାନର ଆବରଣ ମଧ୍ୟରେ ଆତ୍ମଗୋପନ କରିଥିଲେ, ବାରମ୍ବାର 'ଭାଗ୍ୟ'ର କଷାଘାତ ଖାଇ, ତାଙ୍କୁ ପୁଣି ଆତ୍ମ ପ୍ରକାଶ କରିବାକୁ ହୋଇଥିଲା । କବି ବୁଝିପାରିଥିଲେ ଯେ ଜାଗତିକ ଦୁଃଖ / ଯନ୍ତ୍ରଣାରୁ ମୁକ୍ତିଲାଭର ଏକମାତ୍ର ଉପାୟ ହେଉଛି ସାରସ୍ୱତ କର୍ମରେ ଆତ୍ମଲୀନ ହେବା । ବାଣୀ-ଆରାଧନାର କଠିନ ବର୍ମ ଭେଦକରି ସଂସାର-ସମସ୍ୟାର ଜ୍ୱାଳାମାଳା ସହଜରେ ବ୍ୟକ୍ତିକୁ ସ୍ପର୍ଶ କରିପାରେ ନାହିଁ । ଦୁଃଖ-ଯନ୍ତ୍ରଣାର ହଳାହଳକୁ ଜଗତ ନିମନ୍ତେ ଅମୃତରେ ପରିଣତ କରିବା ପ୍ରତିଭାର ଲକ୍ଷଣ । ପ୍ରତ୍ୟେକ ସ୍ମରଣୀୟ ସୃଷ୍ଟି ଦୁଃଖ ଗର୍ଭିତ, ତେଣୁ ତ କୁହାଯାଇଥାଏ, "Our Sweetest songs are those, that tell us our saddest thought—" ଦୁଃଖର ଗୀତି ହିଁ ମଧୁରତମ ଗୀତି । ଗଙ୍ଗାଧରଙ୍କ କ୍ଷେତ୍ରରେ ସତ୍ୟତା ପ୍ରମାଣିତ । ଆତ୍ମବିଶ୍ୱାସର ପରିଚୟକ ରୂପେ ଦୀର୍ଘଦିନର ନୀରବତାପରେ ୧୯୦୩ ମସିହାରେ ଯେଉଁ 'କୀଚକ ବଧ'ର ରଚିତ ହେଲା, ସେଥିରୁ ଏହି ମତର ପୋଷକତା ପ୍ରମାଣିତ ।

'କୀଚକ ବଧ' ୧୯୦୩ ମସିହାରେ ରଚିତ ଏବଂ ଶ୍ରୀ ମଧୁସୂଦନ ଦାସଙ୍କ ଦ୍ୱାରା ୧୯୦୪ରେ ପୁସ୍ତକାକାରରେ ପ୍ରକାଶିତ । ୨୭-୧୨-୧୯୦୯ ତାରିଖରେ ଶ୍ରୀ ବ୍ରଜମୋହନ ପଣ୍ଡାଙ୍କୁ କବି ଲେଖିଥିଲେ, 'ରାମାୟଣ ଅନୁବାଦ କରିନାହିଁ, କି କରୁନାହିଁ । ଫକୀରମୋହନ ବାବୁ ରାମାୟଣ ଅନୁବାଦ କରି ପ୍ରକାଶ କରି ସାରିଥିବା ସ୍ଥଳେ ଆଉ ସେପରି ଅନୁବାଦରେ ବିଶେଷ କିଛି ଫଳ ହେବ ବୋଲି ବୋଧ କରେ ନାହିଁ । ଶ୍ରୀ କୃଷ୍ଣଚନ୍ଦ୍ର ପଟ୍ଟନାୟକଙ୍କ ଅନୁବାଦିତ ରାମାୟଣ ମଧ୍ୟ ଅତି ସୁନ୍ଦର ଅଟେ । ମହାଭାରତର କଥା ମଧ୍ୟ ତା'ହା । ତେବେ ଉକ୍ତ ଗ୍ରନ୍ଥଦ୍ୱୟର କୌଣସି କୌଣସି ଉପାଖ୍ୟାନ ସୁନ୍ଦରତର କଲେ କିଛି ଫଳ ଲାଭ ହୋଇପାରେ ।★ ଏହି ସମୟକୁ ଗଙ୍ଗାଧର 'ଅହଲ୍ୟାସ୍ତବ' 'ଇନ୍ଦୁମତୀ' ଏବଂ 'କୀଚକ ବଧ'ର କଙ୍କାଳ 'ରାମାୟଣ' ଏବଂ ମହାଭାରତରୁ ସଂଗ୍ରହ କରି ବେଶ୍ ଭଲ ଫଳ ପାଇପାରିଥିଲେ । ପରବର୍ତ୍ତୀ କାଳରେ 'ତପସ୍ୱିନୀ' ଏବଂ 'ପ୍ରଣୟ ବଲ୍ଲରୀ' ନିମନ୍ତେ ମଧ୍ୟ କବି 'ରାମାୟଣ' ଏବଂ 'ମହାଭାରତ' ଉପରେ ହିଁ ନିର୍ଭର କରିଥିଲେ । ମୂଳତଃ ପ୍ରାଚ୍ୟ-ଆଦର୍ଶ ପ୍ରସୂତ ଗଙ୍ଗାଧର ରାମାୟଣ / ମହାଭାରତର ଅବଲମ୍ବନରେ ନିଜ ପ୍ରତିଭାକୁ ବିକାଶ କରାଇବାରେ ଦୃଢ଼ ବିଶ୍ୱାସୀ ଥିଲେ । 'କୀଚକବଧ'ର ମୂଳ-ଆଖ୍ୟାନ ଭାଗଟି ତେଣୁ 'ମହାଭାରତ'ରୁ ସଂଗୃହୀତ । ରାଧାନାଥ 'କୀଚକବଧ'ର ପାଣ୍ଡୁଲିପି ପାଠକରି ଲେଖିଥିଲେ, "କୀଚକ ବଧ" ପାଠକରି ସ୍ଥଳରେ ମୁଁ ଅତ୍ୟନ୍ତ ପ୍ରୀତ ହୋଇଅଛି । ପୁସ୍ତକ ସାଧାରଣରେ ପ୍ରଚ୍ଛର ହେଲେ ଆପଣଙ୍କର କବି ପ୍ରତିଷ୍ଠା ବହୁ ପରିମାଣରେ ବର୍ଦ୍ଧିତ ହେବ । ଆପଣ ଯେବେ ଆଉ କିଛି ନ ଲେଖନ୍ତି କେବଳ ଇନ୍ଦୁମତୀ ଓ 'କୀଚକବଧ' ଦ୍ୱାରା ଓଡ଼ିଆ ସାହିତ୍ୟ ଜଗତରେ ଆପଣ ଅମର ହୋଇ ରହିବେ ।※ ଏହି ସାଧାରଣ ମନ୍ତବ୍ୟରେ ସନ୍ତୁଷ୍ଟ ନ ହୋଇ ପୁନର୍ବାର କବି ଲେଖିଲେ, "× × ପ୍ରାଚୀନ କାହାଣୀକୁ କବି ଗଙ୍ଗାଧରଙ୍କ ରସମୟ ଲେଖନୀ ସମ୍ପୂର୍ଣ୍ଣ ନୂତନ ମୂର୍ତ୍ତିରେ ସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରିଅଛି । ପୂର୍ବତନରେ

---

★ ଗଙ୍ଗାଧର ପ୍ରତାବଳୀ — ପୃ. ୧

※ କବିଲିପି — ପୃ. ୯୪

ନୂତନତା ଏବଂ ଆଙ୍ଗିକରେ ମୌଳିକତା ପ୍ରତିଫଳିତ କରିବା ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର ଅଟେ । × × × ଗଙ୍ଗାଧର ଉଚ୍ଚ ଶ୍ରେଣୀର କବି । କି ବହିଃପ୍ରକୃତି କି ଅନ୍ତଃପ୍ରକୃତି ଉଭୟର ଯଥାଯଥ ଚିତ୍ରାଙ୍କନରେ ଗଙ୍ଗାଧର ସିଦ୍ଧହସ୍ତ । × × × 'ଇନ୍ଦୁମତୀ' ଦ୍ୱାରା ଯେଉଁ ସୃଷ୍ଟୋନ୍ମୁଖ ପ୍ରତିଭାର ଆଦ୍ୟ ସୌରଭ ବିକୀର୍ଣ୍ଣ ହୋଇ ଉତ୍କଳୀୟ ସାହିତ୍ୟ ସଂସାରକୁ ଆମୋଦିତ କରିଥିଲା, 'କୀଚକବଧ'ରେ ସେହି ପ୍ରତିଭା ପୂର୍ଣ୍ଣ ବିକାଶ ପାଇଥିବାର ପ୍ରତୀୟମାନ ହୁଏ ।*

ବିରାଟ-ନଗରରେ ଅଜ୍ଞାତବାସ କାଳରେ ଦ୍ରୌପଦୀ-ରୂପ-ଲୋଲୁପ କୀଚକ ଭୀମହସ୍ତରେ ଯେଉଁଭଳି ମୃତ୍ୟୁବରଣ କରିଥିଲା, ତାହାହିଁ ଏହି କାବ୍ୟର ବିଷୟବସ୍ତୁ । ବହୁ ଚର୍ଚ୍ଚିତ / ବହୁ ବନ୍ଦିତ ଏହି କୌତୁକାବହ 'ପୁରାତନ' ବିଷୟଟିରେ ଯଥାର୍ଥରେ 'ନୂତନତା' ପ୍ରକଟିତ କରିବାଦ୍ୱାରା ହିଁ ଗଙ୍ଗାଧରଙ୍କ ପ୍ରତିଭା ପ୍ରମାଣିତ ହୋଇଯାଇଥିଲା । ପାପ ବିରୁଦ୍ଧରେ ଧର୍ମର ବିଜୟ ଘୋଷଣା କେବଳ 'କୀଚକବଧ'ରେ ନୁହେଁ, ସମଗ୍ର ଗଙ୍ଗାଧର କାବ୍ୟ ପରମ୍ପରାରେ ପ୍ରତିଫଳିତ । ପାପ / ପୁଣ୍ୟର ଦ୍ୱନ୍ଦ୍ୱରେ ପାପର ବିଳୟ ଏବଂ ଧର୍ମର ପ୍ରତିଷ୍ଠା ଆମର ସମସ୍ତ ପୁରାଣ / କାବ୍ୟ ସାହିତ୍ୟର ପ୍ରତିପାଦ୍ୟ ହୋଇଛି । ସାମାଜିକ ଜୀବନରେ ଏହା ଏକ ନୀତି-ବାଣୀ ମାତ୍ର । ସିଧାସଳଖ ନୀତିର ବ୍ୟାଖ୍ୟାନ କୌଣସି ଉଚ୍ଚ କବି କର୍ମର ଲକ୍ଷ୍ୟ ନୁହେଁ । ନୀତି ସେତେବେଳେ ସ୍ମରଣୀୟ-ସାହିତ୍ୟ କର୍ମର ମର୍ଯ୍ୟାଦା ପାଏ, ଯେତେବେଳେ କାବ୍ୟଟି ଶ୍ରେଷ୍ଠ ଶିଳ୍ପକର୍ମର ଗୌରବରେ ରସାଣିତ ହୁଏ । ଏଥି ନିମନ୍ତେ ପ୍ରୟୋଜନ ହୁଏ କବିର ରସ ପରିବେଷଣରେ ଦକ୍ଷତା / ବିଷୟବସ୍ତୁର ଚମତ୍କାର ଉପସ୍ଥାପନ / ପ୍ରଭାବଶାଳୀ ଭାଷା ତଥା ରମ୍ୟ ଆଳଂକାରିକ ବିନ୍ୟାସର । "କୀଚକବଧ" ରସଗର୍ଭିତ ପ୍ରଭାବଶାଳୀ କଥାବସ୍ତୁ / ମନକଣା ଭାଷା ତଥା ମଧୂମୟୀ ଆଳଙ୍କାରିକତାର ସମନ୍ୱୟରେ ଜୀବନରେ 'ନୀତିର / ନ୍ୟାୟର ପ୍ରତିଷ୍ଠା ଆଦର୍ଶ'ର ପ୍ରୟୋଜନୀୟତା ହିଁ ପ୍ରଚାର କରୁଛି । "କୀଚକବଧ" ବିଚିତ୍ର ଚରିତ୍ର ସୃଷ୍ଟିର ଏକ ରମ୍ୟ ଚିତ୍ରଶାଳା ଜୀବନରେ 'ସୁ' ଓ 'କୁ'ର ପାଖାପାଖି ଅବସ୍ଥାନ ଭଳି ଏହି କାବ୍ୟରେ 'ଭଗବାନ' ଓ 'ଶୟତାନ' ଉଭୟ ଧରଣର ଚରିତ୍ର ହାତ ଧରା ଧରି ହୋଇ ଅଗ୍ରସର ହୋଇଛନ୍ତି । ରାଧାନାଥଙ୍କର ମନ୍ତବ୍ୟ ଏ ସମ୍ପର୍କରେ ପ୍ରଣିଧାନ ଯୋଗ୍ୟ । ସେ ଲେଖି ଥିଲେ, "ତାହାଙ୍କର ମନୁଷ୍ୟ-ଚରିତ୍ର ଚିତ୍ର ମଧ୍ୟ ତଦପେକ୍ଷା କୌଣସି ଅଂଶରେ ହୀନକଳ୍ପ ନୁହେଁ । 'କୀଚକ ବଧ'ରେ କୀଚକର ବୀର୍ଯ୍ୟୋନ୍ମାଦ ସୁଲଭ ଦାମ୍ଭିକତା ଏବଂ ଲମ୍ପଟତା, କୀଚକଦୂତୀର ଶମ୍ଭଳୀ ସୁଲଭ ନାରକୀୟ ସ୍ୱଭୁଷ୍ଟ, ଦ୍ରୌପଦୀଙ୍କର ସେବା ଧର୍ମର, କର୍ତ୍ତବ୍ୟ ଜ୍ଞାନ ସହିତ ସାଧ୍ୱୀ ସୁଲଭ ଜାଗରୁକତା, ବିରାଟର ଅବିବେଚିତ ସ୍ୱାର୍ଥୈକ-ଦର୍ଶିତା, ସୁଦେଷ୍ଣାଙ୍କର ରମଣୀ ସୁଲଭ କୋମଳତା ଏବଂ ଧର୍ମଭୀରୁତା ସହିତ ଅଯଥା ଭ୍ରାତୃବତ୍ସଳତା କବିଙ୍କ ନୈପୁଣ୍ୟ ସହକାରେ ଚିତ୍ରିତ ହୋଇଅଛି । ସହୃଦୟ ପାଠକ ପାଠ ମାତ୍ରେ ତାହା ବୁଝିପାରିବେ ।"★ ଅନ୍ଧକାରର ପଛଭୂମି ଉପରେ ଆଲୋକର ପ୍ରତିଷ୍ଠା ଭଳି କୀଚକ / ଚପଳା / ବିରାଟ / ସୁଦେଷ୍ଣାଙ୍କର ସ୍ୱାର୍ଥ ସର୍ବସ୍ୱତା ଉପରେ 'ଦ୍ରୌପଦୀ'ଙ୍କର ଚାରିତ୍ରିକ ଦୃଢ଼ତା ପ୍ରକଟିତ ହୋଇଛି । ତେଣୁ ତାହା ଏତେ ପବିତ୍ର / ଏତେ ସୁନ୍ଦର ।

---

ମନ୍ତବ୍ୟ — ୧୬ - ୮ - ୧୯୦୩ — କୀଚକ ବଧ ।

★ ମନ୍ତବ୍ୟ — କୀଚକବଧ — ଶ୍ରୀ ରାଧାନାଥ ରାୟ ।

'କୀଚକବଧ'ର ଦ୍ୱିତୀୟ / ସପ୍ତମ ସର୍ଗ ମେଦେର ପ୍ରକୃତିର ଅନବଦ୍ୟ ରୂପ ବିଭବର ଚିତ୍ରାଧାରେ । ଗଙ୍ଗାଧର ପ୍ରକୃତିର ଏହି ସମ୍ବେଦନଶୀଳ ରୂପ ଚିତ୍ରଣରୀତିଟି 'କାଳିଦାସ'ଙ୍କଠାରୁ ଗ୍ରହଣ କରିଥିଲେ ହେଁ, ଭାବ ବୈଚିତ୍ର୍ୟରେ ସ୍ୱୀୟ ମୌଳିକତା ପ୍ରଦର୍ଶନ କରିଅଛନ୍ତି । ମୋଟ ଉପରେ ସମଗ୍ର କାବ୍ୟଟି ଚରିତ୍ର ଚିତ୍ରଣ / ପ୍ରକୃତି ବର୍ଣ୍ଣନା / କଥାବସ୍ତୁର ନାଟକୀୟ ବିନ୍ୟାସ / ରସପରିବେଷଣ କୁଶଳତା ପ୍ରଭୃତି ବହୁ ସଫଳଗୁଣର ସମନ୍ୱୟରେ ଏକପ୍ରକାର ପ୍ରଭାବଶାଳୀ ଶୈଳ୍ପିକ ସୌନ୍ଦର୍ଯ୍ୟ ସୃଷ୍ଟି କରିପାରିଛି । କବି ଲେଖନୀର ପରିମିତ-ବୋଧ / ଔଚିତ୍ୟ-ଜ୍ଞାନ / ସମଗ୍ର କାବ୍ୟଟିକୁ ଯେଉଁ ଅନନ୍ୟ ସଫଳତା ପ୍ରଦାନ କରିଛି, ତାହା ଗଙ୍ଗାଧରଙ୍କ ପ୍ରତିଭା ଦୀପ୍ତ କବିମନର ଉପଯୁକ୍ତ ପ୍ରମାଣ ।

**ଅଯୋଧ୍ୟା ଦୃଶ୍ୟ ୧୯୧୪** ମସିହାରେ 'ପାଟଣା ରାଜ୍ୟର ସୁପ୍ରବୀଣ ଦେବାନ୍ ସାହିତ୍ୟ-ପ୍ରେମିକ ଶ୍ରୀମାନ୍ ବାଳମୁକୁନ୍ଦ କହିଦାର'ଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲେ ହେଁ ୧୯୧୦ ମସିହାରେ ଏହାର ରଚନା ଶେଷ ହୋଇଯାଇଥିଲା । ଏ ସମ୍ପର୍କରେ କବି ଶ୍ରୀ ବ୍ରଜମୋହନ ପଣ୍ଡାଙ୍କୁ ଲେଖିଥିବା ନିମ୍ନଲିଖିତ ଚିଠିମାନ ପ୍ରଣିଧାନ ଯୋଗ୍ୟ ।

୧ । ଭିନ ଦୃଶ୍ୟର ପ୍ରଥମ ଦୃଶ୍ୟରେ ଏବେ ଲାଗିବି । ଶେଷ ଦୁଇ ଦୃଶ୍ୟ ପୂର୍ଣ୍ଣ ହୋଇଅଛି ।
[ ୧୩ - ୧୧ - ୧୦ ର ପତ୍ର — ଗଙ୍ଗାଧର ପତ୍ରାବଳୀ — ପୃ. ୨୩ ]

୨ । 'ଭିନ ଦୃଶ୍ୟ' ପୂର୍ଣ୍ଣ କରିପାରିଲେ 'ପଦ୍ମିନୀ'ର ସେବାରେ ଲାଗିବି ।
[ ୨୫ - ୧୧ - ୧୦ ର ପତ୍ର — ଗଙ୍ଗାଧର ପତ୍ରାବଳୀ — ପୃ. ୩୦ ]

୩ । 'ଭିନ ଦୃଶ୍ୟ' ପୂର୍ଣ୍ଣକରି 'ପଦ୍ମିନୀ'ରେ ଲାଗିଅଛି ।
[ ୨୯ - ୧୧ - ୧୦ ର ପତ୍ର — ଗଙ୍ଗାଧର ପତ୍ରାବଳୀ – ପୃ. ୩୨ ]

୪ । ମୋତେ ସୁସମୟ ମିଳୁ ନଥିବାରୁ 'ଭିନ ଦୃଶ୍ୟ' ଅପରିଷ୍କୃତ ଭାବରେ ତଥା ଅବସ୍ଥାରେ ରହିଅଛି । ଆପଣଙ୍କ ସମକ୍ଷରେ ତାକୁ ପରିଷ୍କୃତ କରି ଉପସ୍ଥାପିତ କରିପାରିବାର ଯେତେ ଭରସା ହେଉଅଛି, ତେତେ ବିଘ୍ନର ଆଶଙ୍କା ମଧ୍ୟ ହେଉଅଛି ।
[ ୧୫ - ୧୨ - ୧୦ର ପତ୍ର — ଗଙ୍ଗାଧର ପତ୍ରାବଳୀ – ପୃ. ୪୧ ]

୫ । 'ଭିନ ଦୃଶ୍ୟ' ଅଦ୍ୟାପି ହେ: ମା: ଶ୍ରୀ ନନ୍ଦକିଶୋର ବଳଙ୍କୁ ଦେଖିବା ନିମନ୍ତେ ଦେଇଅଛି ।
[ ୨୮ - ୭ - ୧୧ ର ପତ୍ର — ଗଙ୍ଗାଧର ପତ୍ରାବଳୀ — ପୃ. ୫୮ ]

୬ । ନନ୍ଦକିଶୋର ବାବୁଙ୍କ ସହିତ ସାକ୍ଷାତ୍ କରିଥିଲି । ପରେ 'ଭିନଦୃଶ୍ୟ' ଦେଖିବାକୁ ପଠାଇଲି । ସେ ତାହା ପାଠକରି ଅତି ଉଚ୍ଚମତ ଦେଇଅଛନ୍ତି । × × × ନନ୍ଦକିଶୋର ବାବୁଙ୍କ ମତାନୁସାରେ ଭିନଦୃଶ୍ୟ'ର ନାମ 'ଅଯୋଧ୍ୟା ଦୃଶ୍ୟ' ରଖିଲି ।
[ ୩ - ୮ - ୧୧ର ପତ୍ର — ଗଙ୍ଗାଧର ପତ୍ରାବଳୀ ପୃ. ୬୦ ]

'ପ୍ରଥମ ପତ୍ର'ରୁ ଜଣାଯାଉଛି ଯେ, ୧୯୧୦ ମସିହା ନଭେମ୍ବର ମାସ ବେଳକୁ 'ଭିନ ଦୃଶ୍ୟ'ର କେବଳ ଗୋଟିଏ ମାତ୍ର ସର୍ଗ ବାକି ରହିଥିଲା । ସେହି ଗୋଟିଏ ସର୍ଗ ମଧ୍ୟ ନଭେମ୍ବର ଶେଷ ବେଳକୁ

ଶେଷ ହୋଇଯାଇଛି । ଏହା କିନ୍ତୁ ଆହୁରି 'ଅପରିଷ୍କୃତ' ଏବଂ 'ଚଠା' ଅବସ୍ଥାରେ ରହିଥିବାର ଡିସେମ୍ବର ମଧ୍ୟଭାଗରେ ଲିଖିତ ହୋଇଥିବା ପତ୍ରରୁ ଜଣାଯାଉଛି । ପରବର୍ଷ ଜୁଲାଇ ମାସରେ ଏହା ଶ୍ରୀ ନନ୍ଦକିଶୋର ବଳଙ୍କୁ 'ଦେଖିବା ନିମନ୍ତେ' ଦିଆଯାଇ, ତାଙ୍କର 'ଅତି ଉତ୍ତମତି' ସଂଗ୍ରହ କରାଯାଇଛି । ଏହି ଅବସରରେ ଶ୍ରୀ ବଳଙ୍କ ପରାମର୍ଶ / ଅନୁସାରେ 'ତିନିଦୃଶ୍ୟ' ଅଯୋଧ୍ୟା ଦୃଶ୍ୟ ରୂପେ ନବଜନ୍ମ ଲାଭ କରିଛି । ୧୯୧୦ରେ ଏହାର ରଚନା ସମାପ୍ତ ହୋଇଥିଲେ ହେଁ, ଏହାର ମୁଦ୍ରିତ ରୂପ ୨୮।୧୦।୧୫ ରେ ଯାଇଁ କବିଙ୍କର ହସ୍ତଗତ ହୋଇଥିଲା । "ଅଯୋଧ୍ୟା ଦୃଶ୍ୟ ୧୦୦୦ ଖଣ୍ଡ ଆଜି ଆସିଲା" [ ୨୮ । ୧୦ । ୧୫ର ପତ୍ର – ଗଙ୍ଗାଧର ପତ୍ରାବଳୀ ପୃ. ୨୦୭ ] ଏହାର ମୁଦ୍ରଣ ଏତେ ସହଜ ସାଧ୍ୟ ହୋଇ ନଥିଲା । ପ୍ରଥମେ ଏହା 'ବିଶ୍ୱନାଥ କର'ଙ୍କ ଠାକୁ 'ପ୍ରେରିତ ହୋଇ କିଛିଦିନ ପଡ଼ି ରହିଲା ପରେ 'ଉତ୍କଳ ସାହିତ୍ୟ'ର ୧୯୧୧ ସେପ୍‌ଟେମ୍ବର, ନଭେମ୍ବର ଏବଂ ୧୯୧୨ ଫେବୃୟାରୀ ସଂଖ୍ୟାମାନଙ୍କରେ କ୍ରମଶଃ ବାହାରି ଥିଲା । ଏହାର ପୁସ୍ତକାକାର ଦେଖିବା ନିମନ୍ତେ କବିଙ୍କର ବ୍ୟାକୁଳତା ବୃଦ୍ଧି ପାଉଥିଲେ ହେଁ, ଏହି ଇଚ୍ଛା ଦୀର୍ଘଦିନ ଧରି ପୂର୍ଣ୍ଣ ହୋଇପାରି ନାହିଁ । ତେଣୁ କବି ଲେଖନ୍ତି, "ତପସ୍ୱିନୀ ଓ ଅଯୋଧ୍ୟା ଦୃଶ୍ୟ ନିମନ୍ତେ କେତେ ବିଡମ୍ବନା ଭୋଗ କରିବାକୁ ପଡ଼ିବ, ତାହା ଈଶ୍ୱରଙ୍କୁ ଜଣା ।"

[ ୪।୮।୧୪ ର ପତ୍ର – ଗଙ୍ଗାଧର ପତ୍ରାବଳୀ ପୃ. ୧୫୧ ]

'ଅଯୋଧ୍ୟା ଦୃଶ୍ୟ' ରଚନା ସମୟକୁ କବିଙ୍କର ସାହିତ୍ୟିକ ଆଭିମୁଖ୍ୟ ସ୍ଥିର ହୋଇସାରିଥିଲା । ପ୍ରାଚ୍ୟ ଆଦର୍ଶ କିମ୍ବା ନୈତିକତାର ପ୍ରାଧାନ୍ୟ ପ୍ରତିଷ୍ଠା କରିବାକୁ ସେ ନିଜର ସାରସ୍ୱତ କର୍ତ୍ତବ୍ୟ ରୂପେ ବରି ନେଇଥିଲେ । ଏହି ଲକ୍ଷ୍ୟରେ ସ୍ଥିର ହେବାପରେ କବିଙ୍କର ଲେଖନୀରୁ 'କୀଚକ ବଧ' 'ପ୍ରଣୟ ବଲ୍ଲରୀ' ଏବଂ 'ତପସ୍ୱିନୀ' ପ୍ରଭୃତି କାବ୍ୟର ସୃଷ୍ଟି ହୋଇଥିଲା । ତେଣୁ ଆମେ କବି ପ୍ରତିଭାର ଉନ୍ମେଷ ଏବଂ ଉତ୍ତରଣକୁ ମୂଳତଃ ତିନି ଭାଗରେ ବିଭକ୍ତ କରିଛୁଁ । ଏହାର ପ୍ରଥମ ପର୍ଯ୍ୟାୟ 'ରସ ରତ୍ନାକର'ର ରଚନାରୁ ଆରମ୍ଭ ହୋଇ ୧୮୯୨ ମସିହାରେ 'ଅହଲ୍ୟାସ୍ତବ'ର ରଚନା ଶେଷ ହେବା ସଙ୍ଗେ ସଙ୍ଗେ ଶେଷ ହୋଇଯାଇଛି । ୧୮୯୩ ମସିହାର କବିଙ୍କ 'ଚିନ୍ତା-ସମନ୍ୱୟ'ର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୋଇଛି । 'କୀଚକ-ବଧ'ର ରଚନା ସହିତ ଏହା ଶେଷ ହୋଇଛି । ତୃତୀୟ ପର୍ଯ୍ୟାୟର ରଚନା ମଧ୍ୟରେ ରହିଛି 'କବିଙ୍କର ଶ୍ରେଷ୍ଠ କୃତି', 'ତପସ୍ୱିନୀ', 'ପ୍ରଣୟ ବଲ୍ଲରୀ' ଏବଂ 'ପଦ୍ମିନୀ' ନାମଧେୟ ତିନିଖଣ୍ଡି * କାବ୍ୟ ଅଧର୍ମ ଉପରେ ଧର୍ମର / ଅନ୍ୟାୟ ଉପରେ ନ୍ୟାୟର ବିଜୟ ପ୍ରତିଷ୍ଠା କରିବାର ପ୍ରାଚ୍ୟ ଆଦର୍ଶ * ହିଁ ତାହାର ଯଥାର୍ଥ ପ୍ରାଣ ସ୍ପନ୍ଦନ । ଏହି ସମୟଟିକୁ କବି-ପ୍ରତିଭାର 'ସୁବର୍ଣ୍ଣ ଯୁଗ' କୁହାଯାଇପାରେ ।

୧୯୦୩ ମସିହାରେ 'କୀଚକ ବଧ' ରଚିତ ହୋଇଥିଲେ ମଧ୍ୟ ତାହାପରେ ପାଞ୍ଚ ସାତବର୍ଷ ମେଧାବୀ-ପ୍ରତିଭା ସର୍ଜନ-କ୍ରିୟା ବିମୁଖ ହୋଇ ରହିଥିଲା । କିଭଳି ଏକ ନିର୍ବେଦତା ସର୍ବଦା କବି-ଚିତ୍ତକୁ ଆଚ୍ଛନ୍ନ କରି ରଖିଥିଲା । ଏକଚାଳିଶ / ବୟାଳିଶ ବର୍ଷ ବୟସର ଭାରରେ କବି ଅବସନ୍ନ ହୋଇ ରହିଥିଲେ । ମନରେ ଉତ୍ସାହ ମରି ମରି ଆସୁଥିଲା । ପରିବାରର ବିଭିନ୍ନ ସମସ୍ୟା, ଦାରିଦ୍ର୍ୟର ତୀବ୍ର ଦହନ ମଧ୍ୟରେ କବି ଉବେଇ ଟୁବେଇ ହେଉଥିଲେ । ସର୍ବୋପରି ଉପଯୁକ୍ତ ପୃଷ୍ଠପୋଷକତାର ଅଭାବ ଏହି ସମୟରେ କବି ମର୍ମେ ମର୍ମେ ଅନୁଭବ କରୁଥିଲେ । ଆତ୍ମାଭିବ୍ୟକ୍ତି ନିମନ୍ତେ ଯାହାବି କିଛି ଲେଖୁଥିଲେ, ଧୈର୍ଯ୍ୟର ଅଭାବରୁ ତାହା ଅପୂର୍ଣ୍ଣ ହୋଇ ରହୁଥିଲା । ଏହି ସମୟରେ ଦୈବପ୍ରେରିତ ଭଳି ଶ୍ରୀ ବ୍ରଜମୋହନ ପଣ୍ଡା ତାହାଙ୍କର ଜୀବନ ପଥରେ ଦେଖାଦେଲେ । ଝାଉଁଳି ପଡ଼ୁଥିବା

ପ୍ରତିଭା-ପୁଷ୍ପ ପୁନର୍ବାର ଅନୁକୂଳ ପରିବେଶ ପାଇ ପ୍ରଫୁଲ୍ଲିତ ହୋଇ ଉଠିବାକୁ ଆରମ୍ଭ କଲା । ଶ୍ରୀ ପଣ୍ଡାଙ୍କୁ କବି ଲେଖିଥିଲେ, "ମୁଁ ଅନେକ ସମୟରେ କୌଣସି କୌଣସି ବିଷୟରେ କବିତା ଆରମ୍ଭ କରି ୪୦ / ୫୦ ପଂକ୍ତି ମାତ୍ର ଲେଖି, ଅସମ୍ପୂର୍ଣ୍ଣ କରିପକାଇ ରଖିଅଛି । × × × ଆପଣଙ୍କ ମୂଲ୍ୟମୟ ଉତ୍ସାହ ପାଇ ତହିଁରେ ଅଗ୍ରସର ହେବାକୁ ମନ ବଳୁଅଛି ।" [ ତା ୨୭।୧୨।୧୯୦୯ର ପତ୍ର ଗଙ୍ଗାଧର ପତ୍ରାବଳୀ ପୃ. ୨ ] ଏହି ପତ୍ରର ପ୍ରାରମ୍ଭରେ କବି ଲେଖିଥିଲେ, "ଆପଣଙ୍କ ତୁଲ୍ୟ ଜଣେ ମହାତ୍ମାଙ୍କୁ ମୁଁ ଆଜ ପ୍ରଧାନ ପୃଷ୍ଠପୋଷକ ଓ ସହାୟରୂପେ ପାଇ ଅତୁଳ ଆନନ୍ଦ ଅନୁଭବ କରୁଅଛି । × × ମୁଁ ନିଜର ଦୁରବସ୍ଥା, ମନଃପୀଡ଼ା ଓ ସୂତ୍ରଧାର ପ୍ରତିକୂଳତା ଯୋଗୁଁ କିଛି ଲେଖିପାରିନାହିଁ ।" [ ୨୭ । ୧୨ । ୧୯୦୯ର ପତ୍ର — ଗଙ୍ଗାଧର ପତ୍ରାବଳୀ ପୃ. ୧ ] ଯେଉଁ 'ଦୁରବସ୍ଥା' 'ମନଃପୀଡ଼ା' ଓ 'ସୂତ୍ରଧାର ପ୍ରତିକୂଳତା' ବିଷୟରେ କବି ଉଲ୍ଲେଖ କରିଛନ୍ତି. ଶ୍ରୀ ପଣ୍ଡାଙ୍କୁ ପାଇ ତାହା ଦୂର ହୋଇଯାଇଛି । ପରବର୍ତ୍ତୀ ପତ୍ରମାନଙ୍କରୁ ଏକ ନୂତନ ଆଶାର ସ୍ୱର ବ୍ୟଞ୍ଜିତ ହୋଇଥିବାର / ଏକ ଅନୁକରଣୀୟ ଉତ୍ସାହ କବିତାର ଦୁକୂଳ ଛୁଇଁଇ ବହିଯାଉଥିବାର ଦେଖିବାକୁ ମିଳେ । କବି ଲେଖିଛନ୍ତି : ୧ । "ଆପଣଙ୍କୁ ସହାୟ ପାଇ ମୁଁ ମୋର ଜୀବନ ଚରିତାର୍ଥ କରିବି ବୋଲି ଦୃଢ଼ ଆଶାପୋଷଣ କଲି ।" [ ଗଙ୍ଗାଧର ପତ୍ରାବଳୀ ପୃ. ୭, ୧୧ । ୧ । ୧୦ର ପତ୍ର ] ୨ । ମୁଁ ଆପଣଙ୍କୁ ପାଇ ମୋର ଭବିଷ୍ୟତ ଆଲୋକପୂର୍ଣ୍ଣ ଦେଖୁଅଛି । ମୋର ହୃଦୟରୁ ନୈରାଶ୍ୟ ତିମିର ଦୂର ହୋଇଅଛି । [ ଗଙ୍ଗାଧର ପତ୍ରାବଳୀ ପୃ ୮, ୧୯ । ୧ । ୧୦ର ପତ୍ର ]

ଆଲୋଚ୍ୟ ସମୟରେ ଗଙ୍ଗାଧର ଯେ କିପରି ଅବ୍ୟବସ୍ଥିତ ଅବସ୍ଥାରେ ଥିଲେ, ତାଙ୍କର କାତର ମନ ଯେ କିପରି ଏକ ଦୃଢ଼ ଅବଲମ୍ବନର ଆଶ୍ରୟ ଖୋଜୁଥିଲା, ତାହା ଉପରୋକ୍ତ ଦୁଇ ପତ୍ରରୁ ଜଣାଯାଇଥାଏ । ଶ୍ରୀ ପଣ୍ଡାଙ୍କଠାରେ କବି ସେହି ଏକ ଯାଦୁକରର ସନ୍ଧାନ ପାଇଥିଲେ, ଯାହାଙ୍କର ସ୍ପର୍ଶରେ ତାଙ୍କର ହୃଦୟରୁ 'ନୈରାଶ୍ୟ ତିମିର' ଦୂର ହୋଇ, 'ଭବିଷ୍ୟତ ଆଲୋକପୂର୍ଣ୍ଣ' ଦେଖିବାକୁ କବି ଉତ୍ସାହିତ ହୋଇ ଉଠିଥିଲେ ।

କବିବର ରାଧାନାଥ ଗଙ୍ଗାଧରଙ୍କ କବିତାର ପ୍ରଥମ ଏବଂ ପ୍ରଧାନ ପୃଷ୍ଠପୋଷକ ଥିଲେ । ରାଧାନାଥଙ୍କର ବିୟୋଗ ପ୍ରେରଣାର ଏହି ମୂଳସ୍ରୋତଟିକୁ ସମ୍ପୂର୍ଣ୍ଣ ରୂପେ ଶୁଖାଇ ଦେଇଥିଲା । ବିବ୍ରତ ଗଙ୍ଗାଧର ଏ ସମ୍ପର୍କରେ ଶ୍ରୀ ପଣ୍ଡାଙ୍କୁ ଲେଖିଥିଲେ, "କବିବରଙ୍କ ବିୟୋଗରେ ମୋର ହୃଦୟ ଭଗ୍ନ ହୋଇଯାଇଅଛି । ଉତ୍ସାହ ଶିଖା ନିର୍ବାଣବତ୍ ହୋଇ ଯାଇଅଛି ।" [ ଗଙ୍ଗାଧର ପତ୍ରାବଳୀ ପୃ. ୯।୧୦— ୨୭ । ୨ । ୧୦ର ପତ୍ର ] ତେଣୁ ବ୍ରଜମୋହନଙ୍କ ଉଦୟ ଦୁଇଟି ଦିଗରୁ କବି ଜୀବନର ନିର୍ବେଦତାକୁ ଦୂର କରିବାରେ ସମର୍ଥ ହୋଇଥିଲା । ପ୍ରଥମତଃ, ପାରିବାରିକ ସମସ୍ୟା / ଦାରିଦ୍ର୍ୟ ଇତ୍ୟାଦି ନିମନ୍ତେ କବି ଜଣେ ସହାନୁଭୂତିଶୀଳ ଯଥାର୍ଥ ବନ୍ଧୁ ପାଇଥିଲେ । ଦ୍ୱିତୀୟତଃ, ରାଧାନାଥଙ୍କର ଅଭାବ କବି-ଜୀବନରେ ଯେଉଁ ଶୂନ୍ୟତା ସୃଷ୍ଟି କରିଥିଲା, ବ୍ରଜମୋହନ ଅନେକଟା ସେଇ ଫାଙ୍କକୁ ପୂର୍ଣ୍ଣ କରିଦେଇଥିଲେ । ତେଣୁ କବି ନବୋଦ୍ୟମରେ ପୁନର୍ବାର ସାହିତ୍ୟ କ୍ଷେତ୍ରରେ ନିଜର ଯଥାଯୋଗ୍ୟ ସ୍ଥାନ ଅନ୍ୱେଷଣ କରିବା ନିମନ୍ତେ ପ୍ରସ୍ତୁତ ହେଲେ । 'ଶାଶ୍ୱତ-ସାରସ୍ୱତକୀର୍ତ୍ତି ସ୍ଥାପନ ପୂର୍ବରୁ / କିଛି ଗୋଟାଏ ଉଲ୍ଲେଖଯୋଗ୍ୟ କରିବା ପୂର୍ବରୁ କବି-ପ୍ରତିଭା ନିଜ ଶକ୍ତି ପରୀକ୍ଷାକରି ନେବାକୁ ଉପଯୁକ୍ତ ମଣିଥିଲା । 'ଅଯୋଧ୍ୟା ଦୃଶ୍ୟ' ଏହି ଶକ୍ତି-ପରୀକ୍ଷାର / ପ୍ରତିଭା-ପ୍ରସୂତିର ଏକ ଉଦାହରଣ ମାତ୍ର ।

ମେହେରଙ୍କର ପ୍ରଧାନ କାବ୍ୟଗୁଡ଼ିକ ପ୍ରାୟ କରୁଣ ରସସିକ୍ତ । ରସ ସୃଷ୍ଟିରେ କରୁଣରସର ପ୍ରାଧାନ୍ୟ ବହୁ ପୂର୍ବରୁ ସଂସ୍କୃତ କବି 'ଭବଭୂତି'ଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ ସାରିଥିଲା । 'ଉତ୍ତର ରାମ ଚରିତ' ନାଟକରେ ଭବଭୂତି ଲେଖିଥିଲେ ।,

"ଏକୋରସଃ କରୁଣ ଏବ ନିମିତ୍ତ ଭେଦାନ୍,
ଭିନ୍ନଃ ପୃଥକ୍ ପୃଥଗିବା ଶ୍ରୟତେ ବିବର୍ତ୍ତାନ୍,
ଆବର୍ତ୍ତ ବୁଦ୍‌ବୁଦ ତରଙ୍ଗ ମୟାନ୍ ବିକାରାନମ୍ଭୋ,
ଯଥା ସଲିଳ ମେବ ହି ତତ୍ ସମସ୍ତମ୍—"

ସାହିତ୍ୟରେ 'କରୁଣରସ' ହେଉଛି ଏକମାତ୍ର ମୌଳିକରସ ଏବଂ ଅନ୍ୟାନ୍ୟ ରସ ତାହାର ବିବର୍ତ୍ତିତ ରୂପ ମାତ୍ର ଏହାହିଁ ଥିଲା ଭବଭୂତିଙ୍କର ବକ୍ତବ୍ୟ । ରାଧାନାଥ ମଧ୍ୟ 'ଭବଭୂତି'ଙ୍କର ଅନୁସରଣରେ ଏବଂ କରୁଣ ପରିବେଶର ପ୍ରଭାବରେ 'ବେଦନା ଏବଂ କରୁଣତା' ମଧ୍ୟରେ ଜୀବନର ଋଜୁମୂର୍ତ୍ତି ଦେଖି ଘୋଷଣା କରିଥିଲେ, "× × × ମୁଁ ଭବଭୂତିଙ୍କର ଚେଲା, ଜୟଦେବଙ୍କର ଚେଲା ନୁହେଁ—" ( ରାଧାନାଥ ଗ୍ରନ୍ଥାବଳୀ, ନୂତନ ସଂସ୍କରଣ — ପୃ. ୫୨୫) । ବସ୍ତୁତଃ ଅନ୍ୟାନ୍ୟ ରସ ଅପେକ୍ଷା କରୁଣ ରସର ପ୍ରଭବଶାଳୀତା ମନୁଷ୍ୟ ଜୀବନରେ ହିଁ ପ୍ରମାଣିତ । ସୀମାତୀତ ବେଦନା / ମର୍ମଦାହୀ ଅଶ୍ରୁର ନିର୍ଝରଧାରେ ଜୀବନର ଆତ୍ମ-ପ୍ରକାଶ, ପୁନର୍ବାର ସେଇ ବେଦନା / ସେଇ ଅଶ୍ରୁର ଉପସ୍ଥିତିରେ ଜୀବନର ବିସର୍ଜନ । ସୁଖ ଏଠାରେ ଆସେ, ସ୍ୱେଚ୍ଛ ବସନ୍ତ ଭଳି ଲୁଚକାଳି, ଜୀବନ କ୍ଷେତ୍ରରେ ସାମାନ୍ୟ ସବୁଜତାର / କିଛି ଫୁଲ ଫୁଟାଇବାର / ଟିକିଏ ତୃପ୍ତିଯ ସୃଷ୍ଟି କରିବାର ସାମୟିକ କାମନା ମାତ୍ର ନେଇ । ତେଣୁ "ଦୁଃଖ ଗୋଟାଏ ଅସରନ୍ତି କାହାଣୀ, ଆଉ ସୁଖ ମାଗି ଆଣିଲା ଉପଣପରି ଯୋଡ଼ିକାଏ । × × × ଦୁଃଖ ହିଁ ଭଗବାନ୍‌ଙ୍କର ମଣିଷକୁ ପ୍ରକୃତ ଦାନ" । (ଆବର୍ତ୍ତ : ଡ଼ଃ. ଚୌଧୁରୀ ହେମନ୍ତ କାନ୍ତ ମିଶ୍ର — ମାନସ : ୪ର୍ଥ ବର୍ଷ / ୪ର୍ଥ ସଂଖ୍ୟା ଫେବୃୟାରୀ ୧୯୭୬ )

ସଂସ୍କୃତ ସାହିତ୍ୟ ସହ ଗଙ୍ଗାଧର ପରିଚିତ ନଥିଲେ । କାବ୍ୟ କ୍ଷେତ୍ରରେ ନିଜର ଆଦର୍ଶ ବୋଲି ଗ୍ରହଣ କରିଥିବା ରାଧାନାଥଙ୍କ କାବ୍ୟ ତାଙ୍କର ପ୍ରେରଣାର ଉତ୍ସ ଥିଲା । ବାକି ରହିଲା, ଅନୁଭୂତିର କଥା । ସଂସାରର ରାଜଦାଣ୍ଡରେ ନିଃସଙ୍ଗ ପଦଯାତ୍ରାରେ ଆରେଇ ଯାଇ ଯାଇ ଜୀବନ ଆଉ ଉଚ୍ଛ୍ୱଳତାର ତୋରଣ ତାଙ୍କ ମନରେ ନିର୍ମିତ ହୋଇନଥିଲା । ତେଣୁ କରୁଣତା ଆଉ ବେଦନା ଏଇ ଦୁଇ ବାନ୍ଧବ ହିଁ ତାଙ୍କ ମନରେ ଅତି ଆପଣାର । 'ଇନ୍ଦୁମତୀ'ରେ ଯେଉଁ କରୁଣ ରସର ଉନ୍ମେଷ ଘଟିଥିଲା, ତାହାର କ୍ରମ ବିକାଶ ଘଟିଛି 'ଅଯୋଧ୍ୟା ଦୃଶ୍ୟ'ରେ ଏବଂ ଏହା ପୂର୍ଣ୍ଣତା ଲାଭ କରିଛି, 'ତପସ୍ୱିନୀ'ରେ ।

'ଅଯୋଧ୍ୟା ଦୃଶ୍ୟ' କେତୋଟି ନାତିଦୀର୍ଘ ସର୍ଗ ବିଶିଷ୍ଟ ଖଣ୍ଡ-କବିତା ମାତ୍ର । ତେଣୁ ପୂର୍ଣ୍ଣାଙ୍ଗ କାବ୍ୟର ମର୍ଯ୍ୟାଦା ଦିଆଯାଇ ନପାରେ । ତିନି-ଦୃଶ୍ୟ ମଧ୍ୟରେ ନିବିଡ଼ ସମ୍ପର୍କ ରହି ଥିବାର ଏବଂ ଏହି ଦୃଶ୍ୟଗୁଡ଼ିକ ଗୋଟିଏ ସ୍ଥାନ ସହିତ ଘନିଷ୍ଠ ସମ୍ପର୍କିତ ଥିବାରୁ, କବି ନନ୍ଦକିଶୋର ଏହାର ନାମ ବଦଳାଇ 'ଅଯୋଧ୍ୟା ଦୃଶ୍ୟ' ରଖିଥିବାର ପୂର୍ବରୁ ଉଲ୍ଲେଖ କରାଯାଇଛି । ଏହା କବିଙ୍କର ଦୃଢ଼ ଆତ୍ମ ପ୍ରତ୍ୟୟ ପୁନଃ ପ୍ରତିଷ୍ଠାର ଏକ ପ୍ରାମାଣିକ ଦଲିଲ୍ । ଏହାର 'ଭୂମିକା'ରେ କବି ଲେଖିଛନ୍ତି, "ମୋର ରଚିତ ପଦ୍ୟ ଅପକୃଷ୍ଟ ହେଲେ ମଧ୍ୟ ବିଦ୍ୟା ଓ ବୁଦ୍ଧିର ତୁଳନାରେ ମୁଁ ନିନ୍ଦନୀୟ ହୋଇପାରିବି ନାହିଁ ।

ଏହା ମୋର ଗୋଟିଏ ପ୍ରଧାନ ଭରସା । ବୋଧ କରେ, ସେହି ଭରସା ସୁଫଳ ପ୍ରସବମୀ ହୋଇଅଛି । ଉତ୍କଳର ଅନେକ ସମ୍ଭ୍ରାନ୍ତ ଓ ସୁଶିକ୍ଷିତ ମହାତ୍ମାଙ୍କ ନିକଟରୁ ପଦ୍ୟ ରଚନା ନିମନ୍ତେ ଉତ୍ସାହ ଲାଭକରି ଉତ୍ସାହ ରୂପ ଯାନ ଶିଖାର ଆଲୋକରେ କବିତା-ରାଜ୍ୟକୁ ଅଗ୍ରସର ହୋଇଅଛି—" (ଭୂମିକା : ଅଯୋଧ୍ୟା ଦୃଶ୍ୟ — ପୃ. ୬୦୮ ଗଙ୍ଗାଧର ଗ୍ରନ୍ଥାବଳୀ ) ଏହି ଉଦ୍ଧୃତିର ପ୍ରାରମ୍ଭରେ କବି ଯେଉଁ ବିନୟ ବାକ୍ୟ ଉଚ୍ଚାରଣ କରିଛନ୍ତି, ତାହା କିନ୍ତୁ ସମାଲୋଚନା ଦୃଷ୍ଟିରୁ ଗ୍ରହଣୀୟ ନୁହେଁ । ସମାଲୋଚକ 'କବି'ର ବିଦ୍ୟା ଓ ବୁଦ୍ଧିର ଯଥାର୍ଥ ପରିଚୟ ତାହାର କାବ୍ୟରୁ ହିଁ ପାଇଥାଏ । 'ବିଦ୍ୟା', 'ବୁଦ୍ଧି'ର ଅପ୍ରତୁଳତା ନିମନ୍ତେ ତେଣୁ କବି କୌଣସିକାଳେ କିଛି କନ୍‌ସେସନ ପାଇନଥାନ୍ତି । ପ୍ରତିଭା ଦାରିଦ୍ର୍ୟ ସୁ-କବିତ୍ୱର ପରିଚୟସୂଚକ ନୁହେଁ । ତେଣୁ ଗଙ୍ଗାଧରଙ୍କ ରଚନାରେ ଯଦି ବା କିଛି ତ୍ରୁଟି / ବିଚ୍ୟୁତି ରହିଥାଏ, ତେବେ ଅଶିକ୍ଷା / ଅଳ୍ପ ଶିକ୍ଷାର ଦୋହାଇ ଦେଇ, ତାହାଙ୍କର ରଚନାର ଉଦାର ମୂଲ୍ୟାୟନ କବିଙ୍କର ସ୍ତାବକତା ମାତ୍ର ହେବ । ତାହାକୁ ଯଥାର୍ଥ ସମାଲୋଚନା ବୋଲାଯାଇ ନପାରେ । ପ୍ରତିଭାର କଷଟି ପଥରରେ 'ଅଯୋଧ୍ୟା ଦୃଶ୍ୟ'ର 'ସ୍ୱର୍ଣ୍ଣଦ୍ୟୁତି' ଏହାର ରସୋତ୍ତୀର୍ଣ୍ଣ କାବ୍ୟତ୍ୱର ପରିଚାୟକ । ...

ଆନନ୍ଦ ଏବଂ ବେଦନାର ଜଟିଳତନ୍ତୁ ଜଳିତ ସହାବସ୍ଥାନରେ ଜୀବନର ପୂର୍ଣ୍ଣାଙ୍ଗ ରୂପ ପ୍ରକଟିତ ହୁଏ । 'ଅଯୋଧ୍ୟା ଦୃଶ୍ୟ'ର ପ୍ରଥମ ସର୍ଗରେ ମଧ୍ୟ ଆମେ ପ୍ରଥମେ ରାମାଭିଷେକ-ଆନନ୍ଦମୁଖର ଅଯୋଧ୍ୟାର ଉତ୍ସବକାଳୀନ ଦୃଶ୍ୟ ଦେଖି ଦେଖି ସେଇ ଦୃଶ୍ୟ ଉପରେ ରାମ ବନବାସ-ଜନିତ ବେଦନାର କଳାପର୍ଦ୍ଦା ନଇଁ ଆସିଥିବାର ଦେଖିବାକୁ ପାଉଁ । ଆନନ୍ଦ ଏବଂ ବେଦନାର ଦ୍ୱନ୍ଦ୍ୱରୁ ହିଁ ଏଠାରେ ଯଥାର୍ଥ କାବ୍ୟିକ ରୂପ ପରିସ୍ଫୁଟ ହୋଇଛି ।

ଦ୍ୱିତୀୟ ସର୍ଗରେ ଏହି ସଂଘର୍ଷକୁ ଆହୁରି ତୀବ୍ର କରି ଦିଆଯାଇଛି । ଦଶରଥଙ୍କର ବିୟୋଗ ତଥା ସ୍ୱାମୀ / ପୁତ୍ର ବିଚ୍ଛେଦକାତର କୌଶଲ୍ୟା-ଚରିତ୍ର କାରୁଣ୍ୟ ବର୍ଣ୍ଣନା ଦ୍ୱାରା । ରାମ-ଜନନୀ ହୋଇଛନ୍ତି ଏହି ଖଣ୍ଡ-କବିତାର ପ୍ରଧାନ ଚରିତ୍ର ଏବଂ ତାଙ୍କୁ କେନ୍ଦ୍ର କରି ଏହାର ରସ-ପରିବେଷଣ, ଘଟଣା ବିନ୍ୟାସ ପ୍ରଭୃତିର ପରିକଳ୍ପନା କରାଯାଇଛି । ସମଗ୍ର ଦ୍ୱିତୀୟ ସର୍ଗଟିରେ କୌଶଲ୍ୟା ଚରିତ୍ରଲୋକର ରହସ୍ୟ ଉଦ୍‌ଘାଟନ କରାଯାଇଛି । ରାଜ-ମହିଷୀ ହେଲେ ମଧ୍ୟ କୌଶଲ୍ୟା ପ୍ରଥମେ ନାରୀ । ଏକମାତ୍ର ଗୁଣବାନ୍ - ପୁତ୍ରର ବିଚ୍ଛେଦ କେଉଁ ଭାରତୀୟ ଜନନୀ ସହଜ ଭାବରେ ଗ୍ରହଣ କରିପାରନ୍ତି ? ତେଣୁ ଅଯୋଧ୍ୟାର ରାଜପୁରୀ ହୋଇଛି କୌଶଲ୍ୟାଙ୍କର ଶରଶଯ୍ୟା । ବାସ୍ତବତାର ରୁକ୍ଷତା ମଧ୍ୟରୁ ସାମୟିକ ଆତ୍ମଗୋପନ ନିମନ୍ତେ କୌଶଲ୍ୟା ସ୍ୱପ୍ନ ଦେଖୁଛନ୍ତି । ରାମଙ୍କ ମାର୍ଗ ଅନୁସରଣ କରି କିଛି ବାଟ ଆଗେଇଯାଉଛନ୍ତି । ଋତୁ ପରେ ଋତୁ ବିତିଯାଉଛି । ଅସହାୟା କୌଶଲ୍ୟା ବର୍ଷାଜଳ ଆର୍ଦ୍ର ରାମଙ୍କୁ ପିକବଚନା ବାମବଧୂଙ୍କୁ ଚତୁର୍ଦ୍ଦିଗରେ ଦେଖୁଛନ୍ତି ଆଉ ବିଚଳିତ ମହାମଲ୍ୟ କୌଶଲ୍ୟାଙ୍କ ଜୀବନ ଝରିଯାଉଛି । ତାଙ୍କର 'ଦେହମାତ୍ର ଘରେ' । 'ଜୀବନ' ଅରଣ୍ୟବୃତ୍ତ ରାମଚନ୍ଦ୍ରଙ୍କ ନିକଟରେ । ଏ ଜୀବନ କଉଳ ଜୀବନ ? କୌଶଲ୍ୟା-ଚରିତ୍ର ରାମ-ବିଚ୍ଛେଦଜନିତ କାରୁଣ୍ୟ ରସସିକ୍ତ ହୋଇ ବାସ୍ତବ ତେଣୁ ପ୍ରତ୍ୟାଶିତ ଫଳ ସୃଷ୍ଟି କରିବା ନିମନ୍ତେ ସମର୍ଥ ହୋଇଛି ।

ତୃତୀୟ ସର୍ଗରେ ସଂଘର୍ଷର ପରିସମାପ୍ତି ଘୋଷଣା କରାଯାଇଛି, ରାମଙ୍କର ଅଭିଷେକ ବର୍ଣ୍ଣନା ଦ୍ୱାରା । ପ୍ରଥମ ସର୍ଗରୁ ଯେଉଁ କରୁଣ ରସର ଉନ୍ମେଷ ଘଟି ଦ୍ୱିତୀୟ ସର୍ଗରେ ପରିପୂର୍ଣ୍ଣତା ଲାଭ

କରିଥିଲା, ତୃତୀୟ ସର୍ଗରେ ତାହାର ଅବସାନ ଘଟିଛି । ଏହି ସର୍ଗରେ ଭରତଙ୍କ ଭ୍ରାତୃଭକ୍ତିର ଆଦର୍ଶଗର୍ଭିତ ବର୍ଣ୍ଣନା ସର୍ଗଟିକୁ ଆଦର୍ଶ ତଥା ବାସ୍ତବତାର ଏକ ସମନ୍ୱୟ ରୂପେ ଉପସ୍ଥାପିତ କରିଛି ।

'ଅଯୋଧ୍ୟା ଦୃଶ୍ୟ'ରେ କୌଶଲ୍ୟାଙ୍କର ମନଃସମୀକ୍ଷଣ ମେହେର-କବିଙ୍କର ଆଧୁନିକତାର ପରିଚୟସୂଚକ । 'ଇନ୍ଦୁମତୀ' ଏବଂ 'କୀଚକବଧ'ରେ ଏହାର ଅସ୍ପଷ୍ଟ ରୂପ ଦେଖିବାକୁ ମିଳୁଥିଲେ ହେଁ, 'ଅଯୋଧ୍ୟା ଦୃଶ୍ୟ'ରେ 'ଅନ୍ତଃ ପ୍ରକୃତି'ର ଦ୍ୱନ୍ଦ୍ୱମୟୀ ଚିତ୍ରକୁ ଅତି ସ୍ପଷ୍ଟଭାବରେ ପ୍ରକାଶ କରିବା ମେହେରଙ୍କର ଦୂରଦୃଷ୍ଟିର ପରିଚୟସୂଚକ । ପୂର୍ବରୁ କୁହାଯାଇଛି ଯେ, କରୁଣରସ ସୃଷ୍ଟି ହେଉଛି, ଏହି କାବ୍ୟ ରଚନାର ମୂଳ ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟ ସାର୍ଥକ କରିବାରେ କବି ଅନେକାଂଶରେ ସଫଳ । ତେଣୁ ଶ୍ରୀ ନନ୍ଦକିଶୋର ବଳ ଲେଖିଥିଲେ, "ତାଙ୍କର 'କୀଚକବଧ', 'ଇନ୍ଦୁମତୀ', ଓ ତତ୍ପ୍ରଣୀତ 'ପ୍ରଣୟାଙ୍କୁର' 'ଅଯୋଧ୍ୟା ଦୃଶ୍ୟ', 'ବେଦବ୍ୟାସ' ପ୍ରଭୃତି ଖଣ୍ଡ-କବିତା ମଧ୍ୟ ପ୍ରସାଦ ମାଧୁର୍ଯ୍ୟ ଗୁଣରେ ପାଠକର ମନୋହାରିଣୀ ହୋଇଅଛି ।" (ଗଙ୍ଗାଧର ପତ୍ରାବଳୀ– ପୃ. ୬୭) 'ଅଯୋଧ୍ୟା ଦୃଶ୍ୟ'ର ପ୍ରଭାବଶାଳୀ ରୂପ କବିଙ୍କର ଆତ୍ମ-ବିଶ୍ୱାସ ଫେରାଇ ଆଣିବାରେ ଯେ ସମର୍ଥ ହୋଇଥିଲା, ଏଥିରେ ସନ୍ଦେହ ନାହିଁ ।

ଅସମ୍ପୂର୍ଣ୍ଣ 'ପଦ୍ମିନୀ' 'ଅଯୋଧ୍ୟା ଦୃଶ୍ୟ'ର ସମକାଳୀନ ରଚନା, ଅର୍ଥାତ୍ ୧୯୧୦/୧୧ ମସିହା ବେଳକୁ ରଚିତ ହୋଇଥିବା ସମ୍ଭବପର । ଏହାର ପରିକଳ୍ପନା କିନ୍ତୁ ଦୀର୍ଘକାଳରୁ ହୋଇଥିବାର ସୂଚନା 'ପତ୍ରାବଳୀ'ରୁ ମିଳେ । ୧୯୧୦ର ତାରିଖ ବିହୀନ ପତ୍ରରେ ଗଙ୍ଗାଧର ଲେଖିଛନ୍ତି, "ରାଜସ୍ଥାନର ବିଶେଷତଃ ଚିତୋରର ବୀର ଓ ସତୀମାନେ ଜଗତରେ ଅତୁଳନୀୟ । ସେମାନଙ୍କର ଜଣ ଜଣଙ୍କୁ ଅବଲମ୍ବନକରି ଖଣ୍ଡିଏ ଖଣ୍ଡିଏ ଉତ୍ତମ କାବ୍ୟ ପ୍ରସ୍ତୁତ ହୋଇପାରେ ।" (ଗଙ୍ଗାଧର ପତ୍ରାବଳୀ, ପୃ ୩) ଏହାପରେ ତା ୧୧ - ୧ - ୧୦ ରିଖ ପତ୍ରରେ କବି ଲେଖିଛନ୍ତି, "ସମ୍ବଲପୁରର ଇତିହାସ ଓ ରାଜସ୍ଥାନର ଜଣେ ନାୟିକଙ୍କୁ ଘେନି ଖଣ୍ଡିଏ କାବ୍ୟ ପ୍ରଣୟନ କରିବା ବର୍ତ୍ତମାନ ମୋର ପ୍ରଧାନ କର୍ତ୍ତବ୍ୟ ହୋଇଅଛି ।" (ଗଙ୍ଗାଧର ପତ୍ରାବଳୀ—ପୃ. ୬) । ଏହାପରେ ତା ୧୯ - ୧ - ୧୦ ରିଖର ପତ୍ରରୁ 'ରାଜସ୍ଥାନର ଇତିହାସ ସେଇ ମାସର ୧୩ ତାରିଖରେ କବିଙ୍କର ହସ୍ତଗତ ହୋଇଥିବାର ସମ୍ବାଦ ଦେଖିବାକୁ ମିଳୁଛି । ପୁନର୍ବାର ତା ୧୦ - ୧୪ - ୧୦ ରିଖ ପତ୍ରରେ 'ପଦ୍ମିନୀ'କୁ ପୂର୍ଣ୍ଣ କରିବା ନିମନ୍ତେ କବି ତତ୍ପର ଆଗ୍ରହ ପ୍ରକଟିତ ହୋଇଛି । ତା ୨୯ - ୧୧ - ୧୦ ରିଖ ପତ୍ରରେ କବି ତିନିଦୃଶ୍ୟ ପୂର୍ଣ୍ଣକରି 'ପଦ୍ମିନୀ'ରେ ଲାଗିଥିବାର ସମ୍ବାଦ ଉଲ୍ଲେଖିତ ହୋଇଛି । 'ପଦ୍ମିନୀ' ସମ୍ପର୍କୀୟ ଶେଷ ସମ୍ବାଦ ଦେଖିବାକୁ ମିଳୁଛି ତା ୯ - ୧୨ - ୧୦ ରିଖର ପତ୍ରରେ । କବି ଲେଖିଛନ୍ତି, "ବିଶେଷ ଅସୁବିଧା ନ ହେଲେ 'ପଦ୍ମିନୀ'କୁ ଏବର୍ଷ ଶୀତ ମଧ୍ୟରେ ପୂର୍ଣ୍ଣ କରିବାର ଭରସା ଅଛି । ଈଶ୍ୱର ମୋର ସାଧାରଣ ଚିନ୍ତା ହରଣ କଲେ, ଏ ମଧ୍ୟରେ 'ପଦ୍ମିନୀ' ପୂର୍ଣ୍ଣାଙ୍ଗ ହୋଇପାରେ । ତଥାପି ତାକୁ ମାର୍ଜିତ ଓ ସୁସଜ୍ଜିତ କରିବାରେ ମାସେ / ଦୁଇମାସ ଲଗାଇଲେ ମନ୍ଦ ହେବନାହିଁ ବା ତାହା ଅନୁଚିତ କାଳକ୍ଷେପଣ ହେବନାହିଁ ।" (ଗଙ୍ଗାଧର ପତ୍ରାବଳୀ – ପୃ. ୩୬) । ଏହାପରେ କବି 'ପଦ୍ମିନୀ' ସମ୍ପର୍କରେ ସମ୍ପୂର୍ଣ୍ଣ ନୀରବ । ଶ୍ରୀ ବ୍ରଜମୋହନ ପଣ୍ଡାଙ୍କ ଆକୁଳ ଜିଜ୍ଞାସାର ଉତ୍ତରରେ ମଧ୍ୟ କବିଙ୍କର ଏ ନୀରବତା ଭଙ୍ଗ ନାହିଁ । କିମ୍ବା 'ପଦ୍ମିନୀ' ପୂର୍ଣ୍ଣାଙ୍ଗ ହୋଇପାରିନାହିଁ । ତେଣୁ ମାର୍ଜନାର ପ୍ରଶ୍ନ ମଧ୍ୟ ଉଠିନାହିଁ । ଏକ ଉଚ୍ଚ ଆଦର୍ଶ ନେଇ 'ପଦ୍ମିନୀ'ର ପରିକଳ୍ପନା କରାଯାଇଥିଲେ ମଧ୍ୟ ଅସମ୍ପୂର୍ଣ୍ଣ କାବ୍ୟଟିର ପରିକଳ୍ପନରେ ତ୍ରୁଟି ସ୍ରଷ୍ଟା-ମାନସରେ ପରିସ୍ଫୁଟ ହୋଇଉଠିଛି । ତାତ୍କାଳିକ ଭାବୋଚ୍ଛ୍ୱାସ ପ୍ରଣୋଦିତ କବି ଏହି କାବ୍ୟର

ପରିକଳ୍ପନା କରିପକାଇଥିଲେ ହେଁ 'ଇତିହାସ'କୁ ଏକ ମହତ୍-ଶିଳ୍ପ କର୍ମର ଗୌରବ ଦେବା ନିମନ୍ତେ ଯେଉଁ ଦୂରଦୃଷ୍ଟିର ପ୍ରୟୋଜନ, ତାହା ତାଙ୍କର ନଥିବାର ଅନୁଭବକରି ସେ ସେଥିରୁ ନିରସ୍ତ ରହିଛନ୍ତି । 'ଇତିହାସ' ଇତିହାସ ରୂପରେ ହିଁ ଏଥିରେ ବିବୃତ ହୋଇଛି । ଇତିହାସର ସାର୍ଥକ କାବ୍ୟରୂପ ନିମନ୍ତେ ବିଷୟବସ୍ତୁର ସାବଧାନୀ ପରିବର୍ତ୍ତନ / ପରିବର୍ଦ୍ଧନ, ବର୍ଣ୍ଣନାଶକ୍ତିରେ ନାଟକୀୟତା ସୃଷ୍ଟି, ରୂପକଳ୍ପର ବିଚିତ୍ର-ବିନ୍ୟାସ ଏବଂ ରସ-ପ୍ରୟୋଗ ଦକ୍ଷତା ପ୍ରଭୃତି ଯେଉଁ ଯେଉଁ ଉପାଦାନ ଗୁଡ଼ିକର ପ୍ରୟୋଗରେ ସମଗ୍ର ସୃଷ୍ଟି ସ୍ମରଣୀୟ ଶୈଳ୍ପିକ ବ୍ୟଞ୍ଜନାରେ ପରିଣତ ହୁଏ, କହିବା ବାହୁଲ୍ୟ 'ପଦ୍ମିନୀ'ରେ ଏ ସମସ୍ତ ଅନୁପସ୍ଥିତ । କିଛିବାଟ ଅଗ୍ରସର ହେଲାପରେ ଏହି ତ୍ରୁଟିଗୁଡ଼ିକ ନିଶ୍ଚିତ ଭାବରେ କବିଙ୍କର ଅଜଣା ରହିନାହିଁ । ତେଣୁ ତାକୁ ସେ ସେହି ଅବସ୍ଥାରେ ଛାଡ଼ି ଦେଇଛନ୍ତି । ଏହାକୁ ସାର୍ଥକ କରିବା ନିମନ୍ତେ ଏକମାତ୍ର ଉପାୟ କବିଙ୍କ ନିକଟରେ ରହିଥିଲା । ତାହା ହେଉଛି ଏହାର ପୁନର୍ଲେଖନ । ପୂର୍ବରୁ ଯେ କବି ନିଜ କାବ୍ୟର ନବ-ରୂପ ପ୍ରଦାନ କରି ନାହାନ୍ତି ଏପରି ନୁହେଁ । ତେବେ ସେ 'ରାଧାନାଥ'ଙ୍କର ପରାମର୍ଶରେ । ଏତେବେଳକୁ ସେଇ ପ୍ରେରଣାର ଉତ୍ସ ମଧ୍ୟ ଶୁଷ୍କ ହୋଇଯାଇଥିଲା । ରାଧାନାଥ ଆଉ ନଥିଲେ । ମାନସିକ ଦୁରବସ୍ଥାର ଏକ ଦୟନୀୟ ପର୍ଯ୍ୟାୟରେ କବି ଏହାକୁ ନୂତନରୂପେ ଗଢ଼ିବାକୁ ଚିନ୍ତା ମଧ୍ୟ କରିପାରି ନାହାନ୍ତି । ଏହି ସମୟକୁ କବି 'ପ୍ରଣୟ ବଲ୍ଲରୀ' କାବ୍ୟ ରଚନାରେ ମଧ୍ୟ ଲାଗିଯାଇ, ସେଥିରେ ଆତ୍ମାଭିବ୍ୟକ୍ତିର ଯଥା ଯୋଗ୍ୟ ସରଣୀଟି ଖୋଜି ପାଇଛନ୍ତି ତେଣୁ 'ପଦ୍ମିନୀ' ଅସମ୍ପୂର୍ଣ୍ଣ ରହିଯାଇଛି ।

'ପଦ୍ମିନୀ'କୁ ଅସମ୍ପୂର୍ଣ୍ଣ ଛାଡ଼ିଦେବାର ଅନ୍ୟ ଏକ କାରଣ ମଧ୍ୟ ଅନୁମାନ କରାଯାଇପାରେ । କବିଥିଲେ, ଭାରତୀୟ ପରମ୍ପରାର ବିଶ୍ୱସ୍ତ ସେବକ । ଆଧ୍ୟାତ୍ମିକତା ମଧ୍ୟରୁ ଏହାର ଜନ୍ମ । ଅଧର୍ମ ଉପରେ ଧର୍ମର ବିଜୟ । ଅନ୍ୟାୟ ଉପରେ ନ୍ୟାୟର ପ୍ରଭୁତ୍ୱ ତଥା ଘୃଣା ଉପରେ ପ୍ରେମର ଆଧିପତ୍ୟ ପ୍ରତିଷ୍ଠା ହିଁ ଭାରତୀୟ ଜୀବନର ସାଧାରଣ ସତ୍ୟ ଥିଲା, କାବ୍ୟର ପ୍ରତିପାଦ୍ୟ ଥିଲା । ମେହେର ଏହି ପ୍ରବଣତାର ବାହାରେ ନ ଥିଲେ । ମେହେର କାବ୍ୟ-ପରମ୍ପରାର ସାଧାରଣ ଅନୁଧ୍ୟାନରୁ ହିଁ ଏହାର ସତ୍ୟତା ଜାଣି ହୋଇଯାଏ । ଇତିହାସରୁ ବିଷୟବସ୍ତୁ ନିର୍ବାଚନ କରିବାକୁ ଯାଇଁ କବି ପ୍ରଥମେ ହିଁ ନିଜ ବିଶ୍ୱାସର ବୈପରୀତ୍ୟ ଦେଖିବାକୁ ପାଇଲେ । ଯେଉଁକବି 'ଇନ୍ଦୁମତୀ'ରେ ସତ୍ୟନିଷ୍ଠ ପ୍ରେମର ବିଜୟ ଗାନ କରିଥିଲେ, 'କୀଚକ ବଧ'ରେ ପାପୀ ପ୍ରତି ସମୁଚିତ ଦଣ୍ଡବିଧାନ କରାଇ ଉଲ୍ଲସିତ ହୋଇଥିଲେ, 'ଅହଲ୍ୟା ସ୍ତବ'ରେ ପାପ ଜନିତ ଶାସ୍ତି ସମ୍ପର୍କରେ ସୁସ୍ପଷ୍ଟ ଇଙ୍ଗିତ ପ୍ରଦାନ କରି ଆତ୍ମସନ୍ତୋଷ ଲାଭ କରିଥିଲେ, ସେହି ତାହାଙ୍କୁ ପୁଣି ସତୀତ୍ୱର ସକରୁଣ ପରିଣତି ବର୍ଣ୍ଣନା କରିବାକୁ ପଡ଼ିବ ! ସତୀ-ଧର୍ମର ଗୌରବ ରକ୍ଷା ନିମନ୍ତେ 'ପଦ୍ମିନୀ' ତ ଅଗ୍ନିକୁଣ୍ଡ-ବଲ୍ଲଭା ହେବେ । ମାତ୍ର ଆଲ୍ଲାଉଦ୍ଦିନ୍ ? ସେ ମହାପାପୀ ହୋଇ ମଧ୍ୟ ପାପର ଶାସ୍ତି ପାଇବନାହିଁ ତ ! 'କୀଚକ'କୁ ତା'ର ଔଦ୍ଧତ୍ୟର ଠିକଣା ଜବାବ ଦେବା ନିମନ୍ତେ ଥିଲେ 'ଭୀମ' । ମାତ୍ର ଇତିହାସର 'ଆଲ୍ଲାଉଦ୍ଦିନ' ଅପରାଜେୟ । ପୁରାଣରେ କଳ୍ପନା ମିଶାଇ ତାହାର ନବ-ରୂପ ପ୍ରଦାନ ଯେଉଁଭଳି ସହଜସାଧ୍ୟ, ତଥ୍ୟ ନିର୍ଭର ଇତିହାସରେ ତାହାର ସ୍ଥାନ କାହିଁ ? କବିର ସ୍ୱାଧୀନ କଳ୍ପନା ସେଠାରେ ସମ୍ପୂର୍ଣ୍ଣ ଅଚଳ । ତେଣୁ ଉପାୟବିହୀନ କବି ହୁଏତ ନିଜ ବିବେକ ବିରୁଦ୍ଧରେ ଅଗ୍ରସର ହେବା ନିମନ୍ତେ ସାହସୀ ହୋଇପାରି ନାହାନ୍ତି । ବରଂ ଯେତିକି ଅଂଶ କବି ଲେଖିଛନ୍ତି, ସେଥିରେ ଆଲ୍ଲାଉଦ୍ଦିନଙ୍କ ପରାଜୟରେ ଚିତୋରର ଗୌରବ ହିଁ ବର୍ଣ୍ଣିତ ହୋଇ ମେହେର-କବିଙ୍କ କାବ୍ୟାଦର୍ଶ ଅକ୍ଷୁର୍ଣ୍ଣ ରହିଛି ।

'ପଦ୍ମିନୀ' ପରିକଳ୍ପନାର ଅନ୍ତରାଳରେ କବିଙ୍କର ଏକ ମହତ୍ ଉଦ୍ଦେଶ୍ୟ ରହିଥିବାର ଜଣାଯାଏ । ଏ ପର୍ଯ୍ୟନ୍ତ କବି ଲେଖନୀ ନିଃସୃତ ପ୍ରାୟ ସମସ୍ତ କାବ୍ୟ ପୁରାଣାଶ୍ରିତ ହୋଇ ରଚିତ ହୋଇଥିଲା । କିମ୍ବଦନ୍ତୀ କିମ୍ବା ଇତିହାସରୁ ବିଷୟବସ୍ତୁ ସଂଗ୍ରହକରି ଯେ ସାର୍ଥକ କାବ୍ୟ ରଚନା କରାଯାଇପାରେ, ଏହା ସେତେବେଳେ ପ୍ରମାଣିତ ହୋଇ ସାରିଥିଲା । ସ୍ୱୟଂ ରାଧାନାଥ କାବ୍ୟରେ ଏହାର ପରୀକ୍ଷାକରି ସଫଳତା ଲାଭ କରିପାରିଥିଲେ । ତେଣୁ କବିଚିତ୍ତରେ ଇତିହାସ ଅବଲମ୍ବନରେ କାବ୍ୟ ରଚନାର ସ୍ପୃହା ଜାଗିବା ସ୍ୱାଭାବିକ । ପୁରାଣର ଉଷା / ଅନିରୁଦ୍ଧ, ଅହଲ୍ୟା, ଇନ୍ଦୁମତୀ / ଅଜ, କୀଚକ / ସୈରିନ୍ଧ୍ରୀ ପ୍ରଭୃତିଙ୍କୁ ଉପସ୍ଥାପନ କରି ସାରିଲାପରେ ହୁଏତ ଜୀବନ୍ତ ରକ୍ତ ମାଂସର ନର / ନାରୀଙ୍କ ବିଷୟରେ କିଛି କହିବାର ସେମାନଙ୍କ ମାଧ୍ୟମରେ ନିଜ ଶକ୍ତିର ପରିଚୟ ପ୍ରଦାନ କରିବାର ଏକ ଦୁର୍ବାର ଲାଳସା କବି ଚିତ୍ତରେ ଉଦିତ ହୋଇଥିବ । 'ପଦ୍ମିନୀ'ର ପରିକଳ୍ପନା ଏହାର ଫଳଶ୍ରୁତି ମାତ୍ର । କହିବା ବାହୁଲ୍ୟ ଯେ ଶକ୍ତି ପରୀକ୍ଷାର ଏହି ପ୍ରଥମ ଉଦ୍ୟମରେ କବି ଅସଫଳ ହୋଇଛନ୍ତି ।

'ପଦ୍ମିନୀ' ପରିକଳ୍ପନାର ଅନ୍ୟ ଏକ କାରଣ ମଧ୍ୟ ଅନୁମାନ କରାଯାଇପାରେ । ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ପରିକଳ୍ପନା ପରେ ପରେ ସମଗ୍ର ଦେଶରେ ଜାତୀୟତାର ପ୍ରକାଶ ଘଟିବାକୁ ଆରମ୍ଭ କରିଥିଲା । ସାହିତ୍ୟ ମଧ୍ୟ ଏହି ନବଲବ୍ଧ ଜାତୀୟତାର ଆଗମନୀ ଗାନରୁ ନିରସ୍ତ ରହି ନଥିଲା । ବିଭିନ୍ନ ପ୍ରଦେଶରେ ବିଭିନ୍ନ ଭାଷାରେ ଜାତୀୟତାର ଉଦୟ-ଗାନ ଅନୁଷ୍ଠିତ ହେଉଥିଲା । ରାଧାନାଥଙ୍କ କାବ୍ୟରେ ମଧ୍ୟ ଏହାର ସ୍ଥାନ ସୁନିର୍ଦ୍ଦିଷ୍ଟ ହୋଇ ରହିଥିଲା । ମହାଭାରତୀୟ ଭାବ ପ୍ରଣୋଦିତ ମେହେର ତେଣୁ ଭାରତ ଇତିହାସର ଏକ ଅବିସ୍ମରଣୀୟ କାହାଣୀର ଅବଲମ୍ବନରେ ଜାତୀୟତାର ବନ୍ଦନା ଗାନ କରିବା ନିମନ୍ତେ ବ୍ୟଗ୍ର ହୋଇଥିବାର ଅନୁମାନ କରାଯାଇପାରେ । ଅବଶ୍ୟ ତତ୍କାଳୀନ ଜାତୀୟତାର ସ୍ୱରୂପ ଇଂରେଜ ଶକ୍ତି ବିରୁଦ୍ଧରେ ଖୋଲା ଖୋଲି ବିଦ୍ରୋହ ଘୋଷଣା କରିବା ମାଧ୍ୟମରେ ଆତ୍ମ-ପ୍ରକାଶ କରିନଥିଲା । ବରଂ ଇଂରେଜ ଶକ୍ତି ବିରୁଦ୍ଧରେ ଚରମ-ହୁଙ୍କାର ପ୍ରଦାନ କରିବାର ତାହା ଥିଲା ପ୍ରସ୍ତୁତିକାଳ । ତେଣୁ ଶାସନର ନିନ୍ଦା ଗାନ ନକରି ଏଇ ଦେଶ ଓ ମାଟିର ଗୌରବ ସହ ଘଟଣା-ପରମ୍ପରାର ଅବତାରଣାରେ ସୁପ୍ତ-ଜାତିକୁ ନିଜ ଅତୀତ ସମ୍ପର୍କରେ ସୂଚନା ପ୍ରଦାନ କରିବା ହିଁ ଥିଲା, ସେ ସମୟର ଯଥାର୍ଥ ମର୍ମବାଣୀ । ଏହାର ମଧ୍ୟରୁ 'ପଦ୍ମିନୀ'ର ଜନ୍ମ, ଏଭଳି ଏକ ପରିକଳ୍ପନା ସୁଦୂରଂ ପ୍ରସାରୀ ନୁହେଁ ।

'ପଦ୍ମିନୀ'ର ପ୍ରଥମ ସର୍ଗରେ ଚିତୋର ରାଜପରିବାରର ନିରୁପଦ୍ରବ ସୁଖ / ଶାନ୍ତି ପୂର୍ଣ୍ଣ ଅବସ୍ଥା ବର୍ଣ୍ଣନା ମଧ୍ୟ ଦେଇ 'ପଦ୍ମିନୀ' ଚରିତ୍ରର ସୁଶୀଳତା, ଧର୍ମନିଷ୍ଠତା, ପାତିବ୍ରତ୍ୟ ଏବଂ ସ୍ନେହ ପ୍ରବଣତା ବର୍ଗଗୁଡ଼ିକ ପ୍ରକଟିତ ହୋଇଛି । ଦେବତା ଏବଂ ରାକ୍ଷସର ପାର୍ଥକ୍ୟ ନିରୂପଣରେ ମନୁଷ୍ୟ କେଉଁଭଳି ନିଜ ଆଚରଣ ଦ୍ୱାରା ଦେବତ୍ୱ କିମ୍ବା ରାକ୍ଷସତ୍ୱ ପ୍ରାପ୍ତ ହୋଇଥାଏ, ତାହାର ସୂଚନା ପ୍ରଦାନ କରିବାଦ୍ୱାରା 'ପଦ୍ମିନୀ'ଙ୍କର ପାଣ୍ଡିତ୍ୟ ପ୍ରକାଶିତ ହୋଇଛି । ପଦ୍ମିନୀ ମନେ କରିଛନ୍ତି, "ପଙ୍କରେ ମହିଷ ପ୍ରାୟେ ପାପେ ଯେ ମଗନ / ଶ୍ରୀକ୍ଷଣ ରାକ୍ଷସ ବୋଲି ସେ ଲୋକଙ୍କୁ ଗଣ—" ( ଗଙ୍ଗାଧର ଗ୍ରନ୍ଥାବଳୀ—ପୃ. ୩୨୧ ) ଏଇ ମନୋଭାବରେ ହିଁ ଭବିଷ୍ୟତ୍ ସଂଘର୍ଷର ବୀଜ ଉପ୍ତ ହୋଇଛି ।

ପୁଣ୍ୟର ପୃଷ୍ଠଭୂମି ଉପରେ ପାପର ସୁସ୍ପଷ୍ଟ ଚିତ୍ର ପ୍ରକଟିତ ହୋଇଛି ଦ୍ୱିତୀୟ ସର୍ଗରେ । ପାପ କଳୁଷ 'ପଙ୍କରେ ମହିଷ ପ୍ରାୟେ' ଆକଣ୍ଠ ମଗ୍ନ 'ଅଲ୍ଲାଉଦ୍ଦିନ୍' ଚରିତ୍ର ବର୍ଣ୍ଣନାରେ ତାହାହିଁ ଦେଖାଇ

ଦିଆଯାଇଛି । 'ପଦ୍ମମାଳୀ'ଙ୍କର ରୂପ-ଗୌରବ ଶ୍ରବଣରେ 'ଆଲ୍ଲାଉଦ୍ଦିନ୍' ପ୍ରାଣରେ ପଦ୍ମମାଳୀ-ତୃଷ୍ଣା ବଳବତୀ ହୋଇଛି । ସେ ମନେ କରିଛି, "× × ଯା' ରୂପଗୁଣ ଏତେ ପ୍ରଶଂସିତ, ସମ୍ରାଟ ମୁଁ କିପାଁ ହେବି ତା ଭୋଗେ ବଂଚିତ ? [ ଗଙ୍ଗାଧର ଗ୍ରନ୍ଥାବଳୀ — ପୃ. ୩୨୫ ] ତା'ର ଏଇ ଉପଭୋଗର କାମନାରୁ ହିଁ ସଂଘର୍ଷ-ବୀଜଟି ପଲ୍ଲବିତ ହୋଇଛି ।

ତୃତୀୟ ସର୍ଗରେ ଯବନର ଛଳନା ଏବଂ ରାଣା ଭୀମ ସିଂହଙ୍କର ସେହି ଛଳନାର ଯଥାଯୋଗ୍ୟ ଉତ୍ତର ପ୍ରଦାନ ବର୍ଣ୍ଣନା କରାଯାଇଛି । ଏଠାରେ ସଂଘର୍ଷର ତୀବ୍ରତା ଦେଖାଇବା ନିମନ୍ତେ 'ଯବନ-ପରିସ୍ତ୍ରୀରକା ଲୀଳା'ର କଳ୍ପନା କରାଯାଇଛି ।

ଚତୁର୍ଥ ସର୍ଗରେ ଭଗ୍ନଦୂତ ତଥା ପରିସ୍ତ୍ରୀରକାଠାରୁ 'ପଦ୍ମମାଳୀ'ଙ୍କର ରୂପ / ଗୁଣର ଗାରିମା ଶ୍ରବଣରେ ଯବନ ମନରେ ପଦ୍ମମାଳୀ-ଉପଭୋଗର ବାସନା ତୀବ୍ରତର ହୋଇଛି । ପଞ୍ଚମ ସର୍ଗର ଚିତୋର ଅବରୋଧ ଏହି ସଂଘର୍ଷର ଶୀର୍ଷ ବିନ୍ଦୁ । ଏହିଠାରେ କାବ୍ୟଟିକୁ ଛାଡ଼ିଦିଆଯାଇ ଥିଲେହେଁ କାହାଣୀର ପରିଣତି ଅନୁଧ୍ୟାନ କରିବା କଷ୍ଟସାଧ୍ୟ ନୁହେଁ । ପୂର୍ଣ୍ଣ ଇତିହାସ-ନିର୍ଭର ଏହି କାହାଣୀରେ କବିଙ୍କର କଳ୍ପନା-ବିଳାସର ପରିଚୟ ଅନ୍ୱେଷଣ କରିବା କଷ୍ଟସାଧ୍ୟ ନୁହେଁ । ରାମ-କାହାଣୀର ଅବତାରଣାରେ, ସାଗରର ବର୍ଣ୍ଣନାରେ, ଚିତୋର ଦରବାରର ଶାନ୍ତ-ଶ୍ରମ ପରିକଳ୍ପନାରେ, ବଲ୍ଲୀଶ୍ୱରଙ୍କର ନାରକୀୟ ଭୋଗସ୍ପୃହାର ଚିତ୍ରଣରେ ସର୍ବୋପରି 'ଲୀଳା' ଚରିତ୍ର ସୃଷ୍ଟିରେ କବିଚିତ୍ତର ମୌଳିକତା ପ୍ରମାଣିତ । ରାମ-କାହାଣୀ ପ୍ରତି ମେତେର କବିଙ୍କର କଣ୍ଠିତ ଦୁର୍ବଳତା ଥିବାର ଅନୁମାନ କରାଯାଇପାରେ । ସୂର୍ଯ୍ୟ ବଂଶର ଗୌରବ ପ୍ରଖ୍ୟାପନରେ ତାହାଙ୍କର ଅଧିକାଂଶ କାବ୍ୟ ମୁଖର । 'ଅହଲ୍ୟାସ୍ତବ' 'ଇନ୍ଦୁମତୀ', 'ଅଯୋଧ୍ୟା ଦୃଶ୍ୟ' ଏବଂ 'ତପସ୍ୱିନୀ' ହେଉଛି ଏହାର ପ୍ରମାଣ । ଏହାଛଡ଼ା କବି ସୁଯୋଗ ଦେଖି ଅନ୍ୟ କାବ୍ୟରେ ମଧ୍ୟ 'ରାମ-କାହାଣୀ'ର ଅବତାରଣା କରିଛନ୍ତି । 'ପଦ୍ମମାଳୀ' କାବ୍ୟର ପ୍ରଥମ ସର୍ଗରେ ଏହାର ପ୍ରମାଣ ରହିଛି । 'ପଦ୍ମମାଳୀ'ର କଥା ବସ୍ତୁ ଇତିହାସରୁ ସଂଗୃହୀତ ହୋଇଥିଲେ ମଧ୍ୟ ଏହାର ମୂଳସ୍ରୋତ 'ରାମାୟଣ'ରେ ଖୋଜିପାଇବା ସୁଦୂରପ୍ରସାରୀ ନୁହେଁ । ରାମ / ରାବଣ / ସୀତା ରାମାୟଣର ଏହି ମୁଖ୍ୟ ତିନିଚରିତ୍ର ଯଥା କ୍ରମେ ଭୀମ ସିଂହ / ଆଲ୍ଲାଉଦ୍ଦିନ / ପଦ୍ମମାଳୀଙ୍କ ରୂପରେ ବର୍ଣ୍ଣିତ । ଏହାଛଡ଼ା ରହିଛନ୍ତି ଅନୁଗତ ଲକ୍ଷ୍ମଣସିଂହ, ରାମାନୁଜ ଲକ୍ଷ୍ମଣଙ୍କ ଭଳି ଆଜ୍ଞାପାଳନ ତତ୍ପର, ବିନୀତ, ବୁଦ୍ଧିମାନ୍ ଏବଂ ବୀର ।

ଦ୍ୱିତୀୟତଃ 'ପଦ୍ମମାଳୀ'କୁ 'କୀଚକ ବଧ'ର ସମାନ୍ତରାଳ ରଚନା ରୂପେ ଗ୍ରହଣ କରାଯାଇ ପାରେ / ନାରୀ-ରୂପ ଲୋଲୁପ ଦୁଇ ଅତ୍ୟାଚାରୀ ନର-ରାକ୍ଷସଙ୍କର ଚକ୍ରାନ୍ତ ଏବଂ ସେମାନଙ୍କ ବ୍ୟର୍ଥତାରେ ନାରୀଜୀବନର ପରମ-ଧନ ସତୀତ୍ୱର ଗୌରବ ବର୍ଦ୍ଧନ ଉଭୟ କାବ୍ୟର ପ୍ରତିପାଦ୍ୟ । ଉଭୟ କାବ୍ୟର ମୁଖ୍ୟ-ଚରିତ୍ରର ସଂଖ୍ୟା ମଧ୍ୟ ସମାନ । କୀଚକ ସହିତ ଆଲ୍ଲାଉଦ୍ଦିନ୍‌ର ସୈରିନ୍ଧ୍ରୀ ସହିତ ପଦ୍ମମାଳୀର ଏବଂ ଚମ୍ପକା ସହିତ ଲୀଳାର ପରିକଳ୍ପନାଗତ ସାମଞ୍ଜସ୍ୟ ବିଦ୍ୟମାନ । 'ପଦ୍ମମାଳୀ'କୁ 'କୀଚକବଧ'ର ଐତିହାସିକ ରୂପ ଭାବରେ ମଧ୍ୟ ଗ୍ରହଣ କରାଯାଇପାରେ । ତେବେ 'କୀଚକବଧ'ର ସୃଷ୍ଟି ସୌନ୍ଦର୍ଯ୍ୟ 'ପଦ୍ମମାଳୀ'ରେ ନାହିଁ ।

'ଇତିହାସ' ଅବଲମ୍ବନରେ 'କାବ୍ୟ' ସୃଷ୍ଟିର ପରିକଳ୍ପନା କରିଥିଲେ ହେଁ କବିଙ୍କର ମନ ଥିଲା ପୁରାଣ-ପକ୍ଷପାତୀ । ସମଗ୍ର 'ପଦ୍ମମାଳୀ' କାବ୍ୟରେ ତେଣୁ 'ଇତିହାସ'ର ସ୍ୱର ଡୁବାଇ ଦେଇ

ଘୋଷିତ ହୋଇଛି 'ପୁରାଣ'ର ସେହି ଚିରନ୍ତନ ସ୍ୱର । ପାପ / ପୁଣ୍ୟର ସଂଘର୍ଷରେ ସର୍ବଦା ପୁଣ୍ୟର ବିଜୟ ଇତିହାସ ସମର୍ଥିତ ନୁହେଁ । ମାତ୍ର କବି ଏହି ପୌରାଣିକ ପ୍ରବୃତ୍ତିଟିକୁ ଇତିହାସ ଗର୍ଭିତ କରିବାକୁ ଉଦ୍ୟମ କରିଛନ୍ତି । ଛନ୍ଦ ନିର୍ମାଣରେ 'ଚତୁର୍ଦ୍ଦଶାକ୍ଷରୀ' ବୃତ୍ତର ପ୍ରୟୋଗ କବିଙ୍କର ପୁରାଣ-ପ୍ରିୟତାର ପରିଚ୍ଛାୟକ।ପାଞ୍ଚୋଟିପ କ ସର୍ଗରେ ଗୋଟିଏ ଛନ୍ଦ ପ୍ରୟୋଗ କରିବା ଦ୍ୱାରା କାବ୍ୟଟିର ଗୁରୁତ୍ୱ ହ୍ରାସ ପାଇଛି । କାରଣ ଛନ୍ଦ ବୈଚିତ୍ର୍ୟ କାବ୍ୟ-ଗୌରବ ବୃଦ୍ଧିର ପରିଚ୍ଛାୟକ । ବର୍ଣ୍ଣିତ ପାଠକ ଚିତ୍ତକୁ କାବ୍ୟ-ଲୀନ କରାଇବା ନିମନ୍ତେ ଏହି ପରିବର୍ତ୍ତନର ପ୍ରୟୋଜନ ହୋଇଥାଏ । ମେହେର-କବି କାବ୍ୟ-ରଚନାର ଏହି ସାଧାରଣ-ନିୟମଟି ସମ୍ପର୍କରେ ଯେ ଅଜ୍ଞ ଥିଲେ, ଏପରି ନୁହେଁ । 'କୀଚକ ବଧ' 'ପ୍ରଣୟ ବଲ୍ଲରୀ' ଏବଂ 'ତପସ୍ୱିନୀ' ପ୍ରଭୃତିକୁ ଏ ଛନ୍ଦବୈଚିତ୍ର୍ୟ ସମ୍ପର୍କରେ କବିଙ୍କର ସାମର୍ଥ୍ୟର ଉଦାହରଣରୂପେ ଗ୍ରହଣ କରାଯାଇପାରେ ।

ତେବେ 'ପଦ୍ମିନୀ'କୁ କେବଳ 'ଉଚ୍ଚାଙ୍ଗ' କାବ୍ୟ ସୃଷ୍ଟିର ଏକ 'ପ୍ରସ୍ତୁତି ଭୂମି' ରୂପେ ଗ୍ରହଣକରି କବିଙ୍କ ପ୍ରତି ଅକରୁଣ ମନ୍ତବ୍ୟ ଦେବାର ଆମେ ପକ୍ଷପାତି ନୋହୁଁ । ସମଗ୍ର 'ପଦ୍ମିନୀ' କାବ୍ୟର ସୃଷ୍ଟି ସୌନ୍ଦର୍ଯ୍ୟ ଗଙ୍ଗାଧରୀ ଭାଷାର ମଞ୍ଜୁଳ ବିଭବରେ ପ୍ରତିଷ୍ଠିତ । ସୁନ୍ଦର୍ଯ୍ୟାଚଳ ଶୃଙ୍ଗରାଜର ଗ୍ରୀଷ୍ମନାରେ ମେହେର କବି ଏଥିରେ ଯେଉଁ ପାରିବେଶିକ ଗାମ୍ଭୀର୍ଯ୍ୟ ସୃଷ୍ଟି କରିଛନ୍ତି, ତାହା ତାଙ୍କ ସାର୍ଥକ କାବ୍ୟର ଭାଷାଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ । ବର୍ଣ୍ଣନାତ୍ମକ ଭାଷା ମାଧ୍ୟମରେ, କବି ଭାଷା ଉପରେ ସ୍ୱୀୟ ପ୍ରଭୁତ୍ୱ ପ୍ରଦର୍ଶନ କରିଛନ୍ତି । "ପ୍ରଥମେ ସୂର୍ଯ୍ୟକୁ କରି ଖଡ୍ଗରେ ଶାସନ / ପରେ ଦେବ ପଦ୍ମିନୀକି ଅଙ୍କରେ ଆସନ" ପ୍ରଭୃତି ପ୍ରୟୋଗ ରସପିପାସୁ ପାଠକର ପ୍ରାଣରେ ଚମକ ସୃଷ୍ଟି କରିବା ନିମନ୍ତେ ଉଦ୍ଦିଷ୍ଟ ।

ଦ୍ୱିତୀୟତଃ, ସର୍ଗ ପରିକଳ୍ପନା / ଚରିତ୍ର ଉପସ୍ଥାପନ କୌଶଳ ପ୍ରଭୃତି ଯେଉଁ କେତେକ ଉପାଦାନ 'କୀଚକ ବଧ'କୁ ଏକ ସାର୍ଥକ କାବ୍ୟର ଗୌରବ ପ୍ରଦାନ କରିଛି 'ପଦ୍ମିନୀ' କାବ୍ୟରେ ଏ ସମସ୍ତ ଗୁଣ ଅଧିକେ ଉପସ୍ଥିତ । ତେଣୁ 'କୀଚକ ବଧ' ଯଦି କାବ୍ୟଗତ ବୈଚିତ୍ର୍ୟ ସୃଷ୍ଟିରେ ସକ୍ଷମ ହୋଇଥାଏ, ତେବେ 'ପଦ୍ମିନୀ' ସେଥିରୁ ପଛରେ ରହିବ କାହିଁକି ? ଉପସଂହାରରେ କୁହାଯାଇପାରେ ଯେ, 'ପଦ୍ମିନୀ' ଏକ ସାର୍ଥକରୂପେ ସୌଷ୍ଠିଷ୍ଠ ପୂର୍ଣ୍ଣାଙ୍ଗ କାବ୍ୟ-ଗୌରବ ପଦବାଚ୍ୟ ନହେଲେ ହେଁ, ମେହେର ପ୍ରତିଭାର ସମ୍ପୂର୍ଣ୍ଣ ଅନୁପଯୁକ୍ତ ନୁହେଁ ।

'କବିତା କଲ୍ଲୋଳ' (୧୯୧୨) ରାଧାନାଥଙ୍କ ସ୍ମୃତିରେ ଉତ୍ସର୍ଗୀକୃତ ପାଞ୍ଚୋଟି ନାତିଦୀର୍ଘ କବିତାର ଏକ ସମାହାର । ଏଥି ମଧ୍ୟରେ ଥିବା କବିତାଗୁଡ଼ିକ ମଧ୍ୟରୁ 'ବର୍ଷା ଚିନ୍ତା' ୧୯୦୨ ମସିହା ଜୁନ୍ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ । 'ଚନ୍ଦ୍ର ରଜନୀ' ଓ 'ବସନ୍ତବାସର' ୧୯୧୦ ମସିହାରେ ରଚିତ ।※ 'ସୋମନାଥ ବିଜୟ'ର ରଚନାକାଳ ମଧ୍ୟ ସେହି ୧୯୧୦ ।★ 'ବୈଦ୍ୟବାଦ' ରଚନା ତା ୧୩ - ୧୧ - ୧୦ ରିଖକୁ ସମାପ୍ତ ହୋଇଥିବାର ଜଣାଯାଏ ।† ଏଥିରେ ସନ୍ନିବିଷ୍ଟ କବିତାମାନଙ୍କ

※ ଗଙ୍ଗାଧର ପତ୍ରାବଳୀ — ପୃ. ୧୦ ।

★ ଗଙ୍ଗାଧର ପତ୍ରାବଳୀ — ପୃ. ୧୬ ।

† ଗଙ୍ଗାଧର ପତ୍ରାବଳୀ — ପୃ. ୨୩ ।

ମଝିରେ ଦୀର୍ଘ ଆଠବର୍ଷର ବ୍ୟବଧାନ ରହିଅଛି । 'ବର୍ଷା ଶରତ' ବ୍ୟତିରେକେ ଅନ୍ୟ ଗୁଡ଼ିକ କବିତା ଗୋଟିଏ ବର୍ଷରେ ରଚିତ ଏବଂ ଏମାନଙ୍କ ମଧ୍ୟରେ ସମ୍ପୂର୍ଣ୍ଣ ବ୍ୟବଧାନ ପ୍ରାପ୍ତ ନଥ ମାସ ।

'କବିତା କଲ୍ଲୋଳ'ରେ ପ୍ରକାଶିତ କବିତାଗୁଡ଼ିକ ଦୁଇ ଶ୍ରେଣୀର । (୧) ପ୍ରକୃତି ବର୍ଣ୍ଣନା ମୂଳକ : ବର୍ଷା ଶରତ / ଚନ୍ଦ୍ର ରଜନୀ / ବସନ୍ତ ବାସର ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । (୨) ତୀର୍ଥ-ମାହାତ୍ମ୍ୟ ବର୍ଣ୍ଣନା ମୂଳକ ସୋମନାଥ ବିଜୟ / ବେଦବ୍ୟାସ ଏହି ଶ୍ରେଣୀର ।

'ବର୍ଷା ପ୍ରକୃତି'ର ଯଥାଯଥ / ଭାବମୟ ଚିତ୍ର ପ୍ରଦାନ ନିମନ୍ତେ 'ବର୍ଷା ଶରତ' କବିତାଟି ଉଦ୍ଦିଷ୍ଟ । ଏହା ଚତୁର୍ଦ୍ଦଶାକ୍ଷରୀ ପୁରାଣ ବୃତ୍ତରେ ରଚିତ । ତେବେ ପ୍ରକୃତିର ସେହି କଲ୍ୟାଣମୟୀ / ଗାମ୍ଭୀର୍ଯ୍ୟ ବ୍ୟଞ୍ଜକ ଗଙ୍ଗାଧରୀ ରୂପଟିକୁ ଏଥିରେ ପାଠକ ଦେଖିବାକୁ ନପାଇ ନିରାଶ ହୋଇଥାଏ । ଅବଶ୍ୟ ଏହି କବିତାର ରଚନା କବି-ପ୍ରତିଭାର ଉନ୍ମେଷକାଳରେ ହିଁ ହୋଇଥିବ । ଆତ୍ମ-ପ୍ରସ୍ତୁତିର ସେଇ ଅରୁଣା-ଲୋକରେ କବି ଶକ୍ତିର ସ୍ପଷ୍ଟ ରୂପ ପ୍ରକଟିତ ହୋଇ ନଥିଲା । ତେଣୁ ଏହି କବିତାରେ ମୌଳିକତା ଅପେକ୍ଷା ଅନୁକରଣ ହିଁ ଅଧିକ ଅନୁସୃତ ହୋଇଥିବାର ଆମେ ଦେଖିବାକୁ ପାଇଥାଉଁ । ଏଥିରେ ଅନୁଭୂତ ହୁଅନ୍ତି ଉପେନ୍ଦ୍ର / ଚମ୍ପାରାଣ ପଟ୍ଟନାୟକ / ରାଧାନାଥ / ତୁଳସୀ ଦାସ ପ୍ରଭୃତି କବିବୃନ୍ଦ । ଅବଶ୍ୟ ଯାଙ୍କେ ଯାଙ୍କେ ମେଘେର କବି ଯେ ଉର୍ଦ୍ଧ୍ୱ ମାରିନାହାନ୍ତି, ଏଭଳି କୁହାଯ ଇପାରିବ ନାହିଁ ।

ଦ୍ୱିତୀୟ କବିତା 'ଚନ୍ଦ୍ର ରଜନୀ'ରେ କିନ୍ତୁ ଗଙ୍ଗାଧର ପୂର୍ବ ଅପେକ୍ଷା ଅନେକ ସ୍ୱଚ୍ଛନ୍ଦ ଏବଂ ସାବଲୀଳ । ଏହି କବିତାଟି ମଧ୍ୟ ପୂର୍ବଭଳି ଚତୁର୍ଦ୍ଦଶାକ୍ଷରୀ ବୃତ୍ତରେ ରଚିତ । ତେବେ ଏଥିରେ କବି ଏକ ନୂତନ ମେଳ ନିୟମର ପ୍ରବର୍ତ୍ତନ କରିଛନ୍ତି । 'ଚନ୍ଦ୍ର ରଜନୀ' ବର୍ଣ୍ଣନା ପ୍ରସଙ୍ଗରେ କବି ସୂକ୍ଷ୍ମ ପର୍ଯ୍ୟବେକ୍ଷଣୀ ଶକ୍ତିର ପରିଚୟ ପ୍ରଦାନ କରିଛନ୍ତି । ଉର୍ଦ୍ଧ୍ୱପଦ / ଶାୟିତ ସାମାନ୍ୟ ପକ୍ଷୀଟିର ଆଚରଣ ମଧ୍ୟ କବିଙ୍କର ସନ୍ଧାନୀ ଦୃଷ୍ଟିରୁ ଲୁଚି ରହିପାରି ନାହିଁ । ଏଥିରେ ଏତିକି ହିଁ କବି-ସୃଷ୍ଟିର ସ୍ମରଣୀୟ କୀର୍ତ୍ତି ।

ତୃତୀୟ କବିତା 'ବସନ୍ତବାସର' ଚତୁର୍ଦ୍ଦଶାକ୍ଷରୀ । ସରଳ / ସର୍ବଜନବୋଧ ଭାଷାରେ 'ବାସନ୍ତୀ-ଦିବସ'ର ସାଗ୍ରାମର ବର୍ଣ୍ଣନାରେ ଏହାର ଅଙ୍ଗପୁଷ୍ଟି । ପ୍ରଗାଢ ଈଶ୍ୱର ବିଶ୍ୱାସ ସମୃଦ୍ଧ ଗଙ୍ଗାଧରୀ କାବ୍ୟ ସମ୍ପଦର ପରିଚିତ ଅନୁସ୍ୱର । 'ବସନ୍ତ-ବାସର' କବିତା ମଧ୍ୟ ଏହାର ବ୍ୟତିକ୍ରମ ନୁହେଁ । ଏହି କବିତାର ଅନୁଶୀଳନରେ 'ଋତୁ ସଂହାର' କାବ୍ୟର 'ବସନ୍ତ ବର୍ଣ୍ଣନା'ର ସାମଞ୍ଜସ୍ୟ ଖୋଜ ପାଇବା କଷ୍ଟସାଧ୍ୟ ନୁହେଁ । 'ଋତୁରାଜ'ଙ୍କ ସମୀପରେ 'ମଧୁକର'ର ଆତ୍ମ ନିବେଦନ ପ୍ରସଙ୍ଗଟି କବିଙ୍କ ଉନ୍ନତ କଳ୍ପନାବିଳାସର ପରିଚାୟକ । ମାନବିକ-ଆଚରଣର ମାଧୁକରୀ-ପ୍ରତିବାଦରେ ଗଙ୍ଗାଧରଙ୍କର ସଂସ୍କାର-ମୁଖୀନତା ବିଦ୍ୟମାନ ।

ଚତୁର୍ଥ କବିତା 'ସୋମନାଥ-ବିଜୟ' ସମ୍ବଲପୁରର ଅଦୂରରେ ଥିବା 'ସୋମନାଥ-ଦେବ'ଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବା ଉଦ୍ଦେଶ୍ୟରେ ଲିଖିତ । ତେଣୁ ଆମେ ଏହାକୁ 'ତୀର୍ଥ ମାହାତ୍ମ୍ୟ-ବର୍ଣ୍ଣନା ମୂଳକ' ଶ୍ରେଣୀର କବିତା ରୂପେ ଚର୍ଚ୍ଚିତ କରିଛୁଁ । ଏହାର ଛନ୍ଦ ଏବଂ ମେଳନିୟମ ପୂର୍ବଭଳି । ବର୍ଣ୍ଣନୀୟ ସ୍ଥାନର ଭୌଗୋଳିକ ଅବସ୍ଥିତିର ବିଶ୍ଳେଷଣ ଛଡ଼ା ଏଥିରେ ଅଧିକ କିଛି ଦେଖିବାକୁ ମିଳେନାହିଁ । ରାଧାନାଥ ମଧ୍ୟ ତାଙ୍କର 'ପାର୍ବତୀ', 'ଚିଲିକା', 'ମହାଯାତ୍ରା' ପ୍ରଭୃତି କାବ୍ୟରେ ତାହାହିଁ କରିଛନ୍ତି ।

ତେବେ ବର୍ଣ୍ଣନା ଶୈଳୀର ଚମତ୍କାରିତା / ଅନନୁକରଣୀୟ କଳ୍ପନା ବିଳାସିତା ତଥା ପ୍ରକୃତି ଚିତ୍ରଣର ରମଣୀୟତା ସହଯୋଗରେ ସେମାନ କାବ୍ୟଗୁଡ଼ିକ ଯେଉଁ ଭଳି ଉନ୍ନତ-ଶିଳ୍ପ-ସୃଷ୍ଟିରେ ପରିଣତ ହୋଇଛି ସେଠାରେ ତାହାର ଘୋର ଅଭାବ ଦେଖିବାକୁ ମିଳେ । ସବୁଠାରୁ ବଡ଼ କଥା ସେଠାରେ ଗଙ୍ଗାଧର ଶାସକ ସମ୍ପ୍ରଦାୟର ସ୍ତୁତିଗାନ କରିବାରେ ମୁଖର ହୋଇଛନ୍ତି । ଅବଶ୍ୟ ତତ୍କାଳୀନ କବି ପରମ୍ପରାରେ ଏହା ସମ୍ପୂର୍ଣ୍ଣ ନୂତନ ନଥିଲା । ରାଧାନାଥ / ମଧୁସୂଦନ ଇତ୍ୟାଦି ନିଜ ନିଜ କାବ୍ୟରେ ଯଥା ସମ୍ଭବ ଶାସକ-ବନ୍ଦନା କରିଯାଇଛନ୍ତି । ତେବେ ଯେଉଁ ଗଙ୍ଗାଧର ପରବର୍ତ୍ତୀ କାଳରେ ଲେଖିଥିଲେ; "ମୁଁ ରାଜସେବାର ଲାଳସୀ ନୁହେଁ । ଇଂରାଜଠାରୁ ବଳି ବଡ଼ରାଜା କିଏ ଅଛି ? ଯେତେବେଳେ ସେ ରଜାଙ୍କ ସେବାରେ ବୈରାଗ୍ୟ ଜନ୍ମି ଆସିଲାଣି ଅନ୍ୟ କେଉଁ ରାଜାଙ୍କର ସେବାକୁ ଇଚ୍ଛା କରିବି ?" [ଗଙ୍ଗାଧର ପତ୍ରାବଳୀ ପୃ. ୨୯ — ତା ୨୦।୧୧।୧୫ ରିଖର ପତ୍ର ] ସେଇ ଗଙ୍ଗାଧରଙ୍କ ଲେଖନୀରୁ ଝରି ପଡ଼ିଛି ନରେନ୍ଦ୍ର ଇଂରେଜ ପ୍ରଶସ୍ତି "ନତ ନତ କରୁଥିବି ଏହି ଆବେଦନ / ବୃଟିଶ୍ କେଶରୀଙ୍କର ହେଉ ଅଭ୍ୟୁଦୟ / ଅବ୍ୟାହତ ହେଉ ତାଙ୍କ କୋମଳ ଶାସନ / ଯା ଯତନେ ଭୂମି ପାଖେ ଶୋଭର ଆଳୟ, ଜୟ ଜୟ ସୋମନାଥ, ସୋମନାଥ ଜୟ / ପଞ୍ଚମ ଜର୍ଜଙ୍କୁ ଦିଅ ଆୟୁ ନିରାମୟ—" [ ଗଙ୍ଗାଧର ଗ୍ରନ୍ଥାବଳୀ, ପୃ. ୨୫୧ ] ଏହି ପ୍ରବୃତ୍ତି ଧର୍ମିତା ନିଶ୍ଚିତ ଭାବରେ କାବ୍ୟ-ସୌଷ୍ଠବ ବୃଦ୍ଧିରେ ସହାୟକ ହୋଇନାହିଁ ।

'ବେଦବ୍ୟାସ', 'କବିତା କଲ୍ଲୋଳ'ରେ ପ୍ରକାଶିତ ଶେଷ କବିତା । ଏହାର ରଚନା ତା ୧୩ । ୧୧ । ୧୦ ରିଖ ବେଳକୁ ସମାପ୍ତ ହୋଇଥିବ (୧) ଏବଂ ସେତେବେଳେ ଏହା କିଞ୍ଚିଦଧିକ ଦ୍ୱିଶତ ପଂକ୍ତି ବିଶିଷ୍ଟ ହୋଇଥିଲା । ଏହାପରେ ବର୍ଦ୍ଧିତ କରାଇବାର ଏକ ପରିକଳ୍ପନା କବି ମନରେ ଦେଖାଦେଇଥିବ (୨) । ତା ୧୫-୧୨-୧୦ ରିଖର ପତ୍ରରେ ଏହା ସମ୍ପର୍କରେ ଉଲ୍ଲେଖ ଦେଖିବାକୁ ମିଳୁଛି (୩) । ତୃତୀୟ ପତ୍ରରେ ଶ୍ରୀ ବ୍ରଜମୋହନ ପଣ୍ଡାଙ୍କ ଉପଦେଶମତେ 'ବେଦବ୍ୟାସ' ରଚିତ ହେବାର ଆଶ୍ୱାସନା ପ୍ରଦାନ କରାଯାଇଅଛି (୪) । ଚତୁର୍ଥ ପତ୍ରରେ 'ବେଦବ୍ୟାସ'ର ସ୍ଥିତାବସ୍ଥା ସମ୍ପର୍କରେ ହାହାକାର (୫) । ପଞ୍ଚମ ପତ୍ରରେ ପୁନର୍ବାର ସେଇ ଆଶାର ସ୍ୱରବ୍ୟଞ୍ଜିତ (୬) । ଷଷ୍ଠପତ୍ରରେ 'ବେଦବ୍ୟାସ' ନବକଳେବରରେ ପୂର୍ଣ୍ଣାଙ୍ଗ ହୋଇଥିବାର ଘୋଷଣା କରାଯାଇଅଛି (୭) । ସପ୍ତମ ପତ୍ରରେ କେବଳ ଏହାର ଆକାର ସମ୍ପର୍କରେ ସୂଚନା ଦିଆଯାଇଛି (୮) । ସମସ୍ତ ସୂଚୀ ବିଶ୍ଳେଷଣ କଲେ ଦେଖାଯିବ

---

୧ । ଗଙ୍ଗାଧର ପତ୍ରାବଳୀ—ପୃ. ୨୪

୨ । ବେଦବ୍ୟାସକୁ ପୁସ୍ତକଗତ କରିବା ପୂର୍ବରୁ ତହିଁରେ କିଛି ଯୋଗ କରିଦେବାର ମନସ୍ଥ କରିଅଛି — [ ଗଙ୍ଗାଧର ପତ୍ରାବଳୀ— ପୃ. [illegible] ]

୩ । 'ବେଦ ବ୍ୟାସ'ର ଶେଷାଂଶ ରହିଯାଇଅଛି । ବୋଧହୁଏ, ତାହାପରେ ବାହାରିବ । 'ବେଦବ୍ୟାସ'କୁ ସୁସଜ୍ଜିତ କଲେ ତାହାର ବର୍ତ୍ତମାନ କଳେବର ଦ୍ୱିଗୁଣ ହୋଇପାରେ । [ ଗଙ୍ଗାଧର ପତ୍ରାବଳୀ ପୃ. ୪୦ ]

୪ । ଗଙ୍ଗାଧର ପତ୍ରାବଳୀ— ପୃ. ୪୨

୫ । ଗଙ୍ଗାଧର ପତ୍ରାବଳୀ— ପୃ. ୪୫

୬ । ଗଙ୍ଗାଧର ପତ୍ରାବଳୀ— ପୃ. ୬୦

୭ । ବେଦବ୍ୟାସ ପୂର୍ଣ୍ଣ ହୋଇଅଛି । ×× ନନ୍ଦକିଶୋର ବାବୁ ×× 'ବେଦବ୍ୟାସ'ର ପ୍ରଶଂସା ଅଧିକ କରିଅଛନ୍ତି । [ ଗଙ୍ଗାଧର ପତ୍ରାବଳୀ— ପୃ. ୬୮ ]

୮ । ଗଙ୍ଗାଧର ପତ୍ରାବଳୀ— ପୃ. ୬୯

ଯେ, 'ବେଦବ୍ୟାସ'ର ପ୍ରଥମଭାଗ ମାତ୍ର ୩।୪ ଦିନ ମଧ୍ୟରେ ନିର୍ମିତ ହୋଇଥିଲା । କ୍ଷୀଣାଙ୍ଗ ଏହି କାବ୍ୟ ଦ୍ୱିଗୁଣ କଳେବରରେ ପୁନର୍ବାର ନବଜନ୍ମ ପାଇଲା ବେଳକୁ ସମୟ ଲାଗିଛି ୯ ମାସ ୨୨ ଦିନ । ସମଗ୍ର କାବ୍ୟଟିର ରଚନା ପରିସର ୯ ମାସ ୨୪ / ୨୫ ଦିନ ମାତ୍ର ।

'ବେଦବ୍ୟାସ' କବିତାରେ 'ଚିଲିକା'ର ଦ୍ୱାଦଶାକ୍ଷରୀ ବୃତ୍ତ ହିଁ ପ୍ରଯୁକ୍ତ ହୋଇଅଛି । ତାହାଛଡ଼ା ଅନେକତ୍ର 'ଚିଲିକା' ଏବଂ 'ମହାଯାତ୍ରା'ରୁ ଭାବ ସଂଗୃହୀତ ହୋଇଥିବାର ମଧ୍ୟ ଦେଖିବାକୁ ମିଳୁଛି, ଯଥା :—

(୧) ଉପହାର ରୂପେ ଛନ୍ଦ ଏ ସକଳ / ଲଭିନାହିଁ କବିମାଲ୍ୟ ହସ୍ତଜଳ । [ ବେଦବ୍ୟାସ ]

ଚିଲିକା :—ତୋ କୃପା ବିହୁନେ ଉତ୍କଳ ମାତାର / ନାମେ ଖ୍ୟାତି ଛନ୍ଦେ ପଡ଼ିନାହିଁ ଗାର ।

(୨) ଏ କି ଉତ୍କଳର କପାଳର ଦୋଷ / ଅଦ୍ୟାପି ରହିଛି ବିଧି ଅସନ୍ତୋଷ—" [ବେଦବ୍ୟାସ]

ଚିଲିକା :—ଭାଗ୍ୟ ଦୋଷେ ଅଙ୍ଗ ଅଜ୍ଞାନ ଶର୍ବରୀ / ଅନ୍ଧାରେ ଅଭାଗୀ ରଖିଛି ଆବରି ।

(୩) କମ୍ବା ନୀଳାଚଳ ନିକଟ ବର୍ତ୍ତୀଭୁ, / କରୁଅଛି ତାଙ୍କୁ ତହିଁରୁ ବଞ୍ଚିତ । [ବେଦବ୍ୟାସ]

ମହାଯାତ୍ରା :—ପୁଷ୍ପକୁଣ୍ଡେ ହେମ୍ବୁତାର କେଶର ଯେସନେ / ଶ୍ରେଷ୍ଠ ଏ ନୀଳାଦ୍ରିଧାମ ସମଗ୍ର ଉତ୍କଳେ ।

ଏହାପରେ 'ଚିଲିକା'' 'ମହାଯାତ୍ରା ଏବଂ 'ଉତ୍କଳ ଭ୍ରମଣ'ର ଅନୁସରଣରେ 'ବେଦବ୍ୟାସ'ର ଅନ୍ତିମ ଅଂଶରେ ଉତ୍କଳର ଚାରିଦିଗସ୍ଥ ଜ୍ଞାନୀ / ଗୁଣୀମାନଙ୍କର ପ୍ରଶସ୍ତି-ବନ୍ଦନ କରାଯାଇଅଛି ।

ଏହି କବିତାଟି ମଧ୍ୟ ପ୍ରବଳ ଗଙ୍ଗାଧରୀ-ଆଧ୍ୟାତ୍ମିକତାର ଏକ ସୁନ୍ଦର ଉଦାହରଣ । ଧର୍ମାନୁରକ୍ତ ଏବଂ ଈଶ୍ୱରଭକ୍ତ ବ୍ୟକ୍ତିର ଯେଉଁ ଜୀବନ-ଦର୍ଶନ ତାହାଙ୍କର ଆବାଲ୍ୟରୁ ଗଢ଼ି ଉଠିଥିଲା, 'ବେଦବ୍ୟାସ'ରେ ତାହାର ପରିଚୟ ମିଳୁଛି । ଏହାଛଡ଼ା ତତ୍ସମ ଓ ତଦ୍ଭବ ଶବ୍ଦର ମିଶ୍ରଣ ଦ୍ୱାରା ଯେଉଁ କାବ୍ୟ-ଶୈଳୀ ପ୍ରସ୍ତୁତ ହୋଇଛି, ତାହା ମଧ୍ୟ ପ୍ରଭାବଶାଳୀ ।

'କବିତା କଲ୍ଲୋଳ'ରେ ସନ୍ନିବେଷ୍ଟ ପାଞ୍ଚୋଟିଯାକ କବିତା ଉପରେ ବିହଙ୍ଗମ ଦୃଷ୍ଟିପାତ କଲେ ନିମ୍ନଲିଖିତ ବୈଶିଷ୍ଟ୍ୟଗୁଡ଼ିକ ପ୍ରକଟିତ ହୋଇଥାଏ ।

ଉତ୍କଳୀୟ ପ୍ରକୃତିର ମଞ୍ଜୁଳ ରୂପ ବର୍ଣ୍ଣନା ନିମନ୍ତେ ଏହି କବିତା ଗୁଡ଼ିକ ଉଦ୍ଦିଷ୍ଟ । 'ବେଦବ୍ୟାସ' ଏବଂ 'ସୋମନାଥ ବିଜୟ' ଭିନ୍ନ ସ୍ୱାଦର କବିତା ହେଲେ ହେଁ ପ୍ରକୃତି ଏଥିରେ ପୂର୍ଣ୍ଣ ଉପେକ୍ଷିତ ହୋଇନାହିଁ । ବରଂ ପ୍ରକୃତି ବର୍ଣ୍ଣନାରେ ହିଁ 'ମେହେର-କବି'ଙ୍କର ସ୍ୱାଚ୍ଛନ୍ଦ୍ୟ ଅଧିକ ପ୍ରକଟିତ ହୋଇଛି ।

ଆବାଲ୍ୟରୁ ଏକ ଧାର୍ମିକ ପରିବେଶରେ ବଢ଼ି ଆସିଥିବା ଦୃଷ୍ଟିରୁ ତଥା ନିଜର ଅସହାୟତା ହେତୁରୁ କବି ଚିତ୍ତର ଈଶ୍ୱର-ନିର୍ଭରଶୀଳତା ଉଲ୍ଲେଖଯୋଗ୍ୟ ହୋଇ ଉଠିଛି । ଆଲୋଚ୍ୟ କବିତା-ଗୁଡ଼ିକରେ ଏହାର ଦୃଷ୍ଟାନ୍ତ ପରିଲକ୍ଷିତ ।

ଈଶ୍ୱର ପ୍ରେମ ସହିତ ପ୍ରକୃତିପ୍ରାଣତାର ଏକ ମନୁଷ୍ୟ-ଚେତନାଧର୍ମୀ ସମନ୍ୱୟରୁ ଏହି କବିତା ଗୁଡ଼ିକର ଜନ୍ମ । କବି-ଜୀବନ ସହିତ ଏଗୁଡ଼ିକର ନିବିଡ଼ ସଂଯୋଗ । କାବ୍ୟ-ଧର୍ମୀ କବି-ପ୍ରତିଭା ଖଣ୍ଡ-କବିତା ରଚନାରେ ପ୍ରତ୍ୟାଶିତ ଫଳ ସୃଷ୍ଟି କରିବାରେ ପୁରାପୁରି ସାର୍ଥକ ନହେଲେ ମଧ୍ୟ ଏହାକୁ କବି-ପ୍ରତିଭାର ବିଳୟମୁଖୀ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇ ନପାରେ ।

ପ୍ରଣୟ ବଲ୍ଲରୀ (୧୯୧୫), 'ତପସ୍ୱିନୀ' ପରେ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲେ ହେଁ, ଏହାର ପରିକଳ୍ପନା ଏବଂ ରଚନା ବହୁପୂର୍ବରୁ ହୋଇଥିବ । ମହାଭାରତ / ରାମାୟଣର କୌଣସି କୌଣସି ଉପାଖ୍ୟାନ ଅବଲମ୍ବନରେ ସ୍ୱତନ୍ତ୍ର କାବ୍ୟ ରଚନା କରିବାର ବାସନା ଗଙ୍ଗାଧର କବି ମନରେ ଜାଗ୍ରତ ହୋଇ ଆସୁଥିଲା ।(୧) ମହାଭାରତରୁ 'ଶକୁନ୍ତଳା'ଙ୍କର କରୁଣ / ମଧୁର ଉପାଖ୍ୟାନ ପଠିକାପରେ, ଏହାର ପ୍ରଭାବଶାଳୀ ଦିଗଟି ପ୍ରତି କବି ଚିତ୍ତରେ ଦୁର୍ବଳତା ସୃଷ୍ଟି ହେବା ସ୍ୱାଭାବିକ । ଏହି ଅବସରରେ ହୁଏତ, ଜର୍ମାନ କବି 'ଗେଟେ'ଙ୍କ 'ଅଭିଜ୍ଞାନ ଶାକୁନ୍ତଳମ୍' ନାଟକ ଉପରେ ମନ୍ତବ୍ୟଟି କବିଙ୍କ ଦୃଷ୍ଟିକୁ ଆସିଥିବ । ତେଣୁ 'ଶକୁନ୍ତଳା' ଉପାଖ୍ୟାନ ଅବଲମ୍ବନରେ ଏକ କାବ୍ୟ ରଚନା କରିବା ନିମନ୍ତେ କବିମନ ସ୍ଥିର କରିନେଇଥିବେ । 'ମହାଭାରତ' ଏବଂ 'ପଦ୍ମପୁରାଣ' ଏହି ଉଭୟ ଗ୍ରନ୍ଥରୁ 'ଶକୁନ୍ତଳା' ଉପାଖ୍ୟାନ ପାଠ କରିଥିଲେ ହେଁ ସ୍ୱାଭାବିକତା ଦୃଷ୍ଟିରୁ କବି 'କାଳିଦାସ'ଙ୍କ 'ଶକୁନ୍ତଳା' ପ୍ରତି ଅଧିକ ପକ୍ଷପାତ ହୋଇଥିଲେ । 'ବ୍ୟାସ' ଏବଂ 'କାଳିଦାସ' ଉଭୟଙ୍କ ବିଷୟବସ୍ତୁର ତୁଳନାକରି କବି 'ବ୍ୟାସ'ଙ୍କ ବିଷୟବସ୍ତୁକୁ 'ଅମୃତ' ଏବଂ 'କାଳିଦାସ'ଙ୍କ ବିଷୟବସ୍ତୁକୁ ସେହି ଅମୃତ ପ୍ରସ୍ତୁତ 'ମିଷ୍ଟାନ୍ନ'ର ସମ୍ମାନ ପ୍ରଦର୍ଶନ କରିଅଛନ୍ତି ।(୨) ଅମୃତ ଶ୍ଳାଘନୀୟ ହେଲେହେଁ, ତତ୍ପ୍ରସ୍ତୁତ ମିଷ୍ଟାନ୍ନ ନିଶ୍ଚିତ ଭାବରେ ଅଧିକ ସୁସ୍ୱାଦୁ, ତେଣୁ ଅଧିକ ଉପଭୋଗ୍ୟ । ତେଣୁ 'ବ୍ୟାସ' ନୁହେଁ, 'କାଳିଦାସ'ହିଁ କବିଙ୍କର ଆଦର୍ଶରୂପେ ଗୃହୀତ ହୋଇଛନ୍ତି ।(୩) ବିଶେଷତଃ, ବ୍ୟାସଙ୍କର 'ପ୍ରଗଲ୍‌ଭ-ଶକୁନ୍ତଳା' ଅପେକ୍ଷା 'କାଳିଦାସ'ଙ୍କର 'ପ୍ରଣୟମୁଗ୍‌ଧା ଶକୁନ୍ତଳା' କବି ନିକଟରେ ଅଧିକ ମନୋଜ୍ଞ ହୋଇଅଛନ୍ତି । ତେଣୁ କବି-ଚିତ୍ତ ଅଧିକ କାଳିଦାସ ନିର୍ଭର ହୋଇଥିଲେ ହେଁ, କବି ପୂଜ୍ୟ-ପୂଜା ବ୍ୟତିକ୍ରମ ଦୋଷ ଘଟାଇ ନାହାନ୍ତି । 'ଶକୁନ୍ତଳା' ଉପାଖ୍ୟାନର 'ଜନକ'ରୂପେ ତେଣୁ 'ବ୍ୟାସ' ହିଁ ପ୍ରଥମେ କାବ୍ୟର ପ୍ରାରମ୍ଭରେ ସମ୍ମାନିତ ହୋଇଛନ୍ତି ।(୪) ଦ୍ୱିତୀୟ ସ୍ଥାନ ପାଇଛନ୍ତି କାଳିଦାସ ।

'ପ୍ରଣୟବଲ୍ଲରୀ' ସମ୍ପର୍କୀୟ ପ୍ରଥମ ଉଲ୍ଲେଖ ମିଳୁଛି 'ପତ୍ରାବଳୀ'ର ୨ / ୯ / ୧୧ ତାରିଖର ପତ୍ରରେ । ସେଥିରେ ଏହାର 'ପ୍ରଥମ ସର୍ଗ'ଟି 'ନନ୍ଦକିଶୋର ବଳ'ଙ୍କୁ ଦେଖିବା ନିମନ୍ତେ ଦିଆଯାଇଥିବାର ସୂଚନା ଦିଆଯାଇଛି ।(୫) 'ପ୍ରଣୟାଙ୍କୁର' ପାଠକରି ଶ୍ରୀ ବଳ ପ୍ରଶଂସାରେ 'ପଞ୍ଚମୁଖ' ହୋଇଥିଲେ ।(୬) ତଥାପି କେଉଁ କାରଣରୁ କବି ଆଲୋଚ୍ୟ କାବ୍ୟଟିର ରଚନା ଅସମାପ୍ତ ରଖି 'ତପସ୍ୱିନୀ' କାବ୍ୟ ରଚନାରେ ମନନିବେଶ କଲେ, ତାହା ସ୍ପଷ୍ଟ ବୁଝାପଡ଼ୁ ନଥିଲେ ହେଁ, ରାମୋପାଖ୍ୟାନ ପ୍ରତି କବିଚିତ୍ତର

---

୧ । ଗଙ୍ଗାଧର ପତ୍ରାବଳୀ — ପୃ. ୧ ।

୨ । ପ୍ରଣୟବଲ୍ଲରୀ : ମୁଖବନ୍ଧ ।

୩ । 'ପ୍ରଣୟବଲ୍ଲରୀ : ମୁଖବନ୍ଧ' "ମହାକବି କାଳିଦାସଙ୍କର ଗତପଥ ଲକ୍ଷ୍ୟକରି ଏହି ପୁସ୍ତକର ରଚନା ହୋଇଅଛି ଏବଂ ଚରିତଟି ପ୍ରଣୟ ପ୍ରଧାନ ହେବାରୁ 'ପ୍ରଣୟବଲ୍ଲରୀ' ନାମ ଧାରଣ କରିଅଛି ।"

୪ । 'ଜୟ ବେଦବ୍ୟାସ ଜୟ କାଳିଦାସ / ଭାରତୀ ପ୍ରିୟ ନନ୍ଦନ—[ ପ୍ରଣୟବଲ୍ଲରୀ ପୃ. ୬୫ ଗଙ୍ଗାଧର ଗ୍ରନ୍ଥାବଳୀ ]

୫ । ଗଙ୍ଗାଧର ପତ୍ରାବଳୀ — ପୃ. ୬୪ ।

୬ । ଅଦ୍ୟ 'ପ୍ରଣୟାଙ୍କୁର' ପାଠ ଏକାସନରେ ଶେଷ ନକରି ରହିପାରିଲି ନାହିଁ । ଏହା କବି ଗଙ୍ଗାଧରଙ୍କ ପ୍ରତିଭାର ଉପଯୁକ୍ତ ହୋଇଅଛି । 'ଶକୁନ୍ତଳା'ର ପ୍ରଥମ ସର୍ଗ ଅବଲମ୍ବନରେ ରଚିତ ହୋଇଥିଲେ ହେଁ ଏହାର ମୌଳିକ ଓ ନିର୍ବାଚନ କୌଶଳ କବିଙ୍କ ନିଜସ୍ୱ — ଗଙ୍ଗାଧର ପତ୍ରାବଳୀ — ପୃ. ୬୬ ।

ଦୁର୍ବଳତାକୁ ଏହାର ଏକ କାରଣ ରୂପେ ଗ୍ରହଣ କରାଯାଇପାରେ । ଏହାପରେ ତା ୯-୧୨-୧୨ ରିଖରେ ଝଝରେ 'ଶକୁନ୍ତଳା' ସମ୍ପର୍କରେ ଶ୍ରୀ ବ୍ରଜମୋହନ ପଣ୍ଡାଙ୍କ ମତାନୁସାରେ କାର୍ଯ୍ୟ ହେବବୋଲି ତାହାଙ୍କୁ ଆଶ୍ୱାସନା ପ୍ରଦାନ କରଯାଇଛନ୍ତି । ଅବଶ୍ୟ ଇତ୍ୟବସରେ କବିଙ୍କର 'କବିତା କଲ୍ଲୋଳ' ଗ୍ରନ୍ଥଟି ପ୍ରକାଶିତ ହୋଇଛି ଏବଂ 'ପ୍ରଣୟାଙ୍କୁର' ସର୍ଗଟି ସେଥିରେ ସନ୍ନିବିଷ୍ଟ ହୋଇଯାଇଛି । ମାତ୍ର କବିଚରିତ ତା ୯ - ୯ - ୧୩ ରିଖ ପର୍ଯ୍ୟନ୍ତ 'ଶକୁନ୍ତଳା' ସମ୍ପର୍କରେ କୌଣସି ଅଗ୍ରଗତି କରିପାରି ନାହାନ୍ତି । ୧୯୧୪ ମସିହା ବେଳକୁ 'ତପସ୍ୱିନୀ'ର ରଚନା ସମାପ୍ତ ହୋଇସାରିଥିଲା । 'ଉତ୍କଳ ଲକ୍ଷ୍ମୀ'ର ନବରୂପ ପ୍ରଦାନ କାର୍ଯ୍ୟ ମଧ୍ୟ ଅଗ୍ରଗତି ଲାଭ କରୁଥିଲା । ତେଣୁ କବି ପୁନର୍ବାର ଅସମାପ୍ତ 'ଶକୁନ୍ତଳା' ପ୍ରତି ମନଯୋଗୀ ହୋଇ ଦେଖିଛନ୍ତି । "ଶକୁନ୍ତଳା"ରେ ଲାଗିଅଛି । ପୂଜା ଅବକାଶରେ ଆପଣଙ୍କୁ ତାହା ପୂର୍ଣ୍ଣାଙ୍ଗିମା ଦେଖାଇପାରିଲେ, ନିଜକୁ ଭାଗ୍ୟବାନ୍ ମଣିବି (ଗଙ୍ଗାଧର ପତ୍ରାବଳୀ – ପୃ ୧୫୧) ପ୍ରଭୃତି ମନ୍ତବ୍ୟରୁ ଏହା ଜଣାଯାଇଥାଏ । ତା ୨୨ - ୯ - ୧୪ ରିଖର ପତ୍ରରେ 'ପ୍ରଣୟବଲ୍ଲରୀ'ର ଜନ୍ମ ଘୋଷିତ ହୋଇଅଛି (୧) । ୧୯୧୫ ମାର୍ଚ୍ଚ ମାସରେ କବି ଅନ୍ୟ ସମସ୍ତକର୍ମ ପଛକୁ ରଖି 'ପ୍ରଣୟ ବଲ୍ଲରୀ' ରଚନାରେ ଏକାନ୍ତ ହୋଇଥିବାର ସୂଚନା ପ୍ରଦାନ କରିଅଛନ୍ତି (୨) । ମାର୍ଚ୍ଚ ଅଧା ବେଳକୁ ୫ମ ସର୍ଗ ପୂର୍ଣ୍ଣ ହୋଇଯାଇଛି ଏବଂ ଅଳ୍ପ 'ଦେଢ଼ ବା ଦୁଇ ମାସ'ରେ ୬ଷ୍ଠ / ୭ମ ସର୍ଗ ଶେଷ ହୋଇଯିବାର ଆଶା କରାଯାଇଛି (୩) । ଏପ୍ରିଲ୍ ମାସରେ ୬ଷ୍ଠ ସର୍ଗ ପୂର୍ଣ୍ଣ ହୋଇଯାଇ 'ସପ୍ତମ ସର୍ଗ' ଆରମ୍ଭ ହୋଇଛି (୪) । ସେହିବର୍ଷ ଅଗଷ୍ଟମାସ ବେଳକୁ 'ପ୍ରଣୟ ବଲ୍ଲରୀ' ଶେଷ ହୋଇଯାଇଥିବାର ସମ୍ବାଦ ଦିଆଯାଇ, 'ସାମାନ୍ୟ ପରିବର୍ତ୍ତନ' କିମ୍ବା 'ସଂଶୋଧନ' କିଛି ବାକିଥିବାର ସୂଚନା ଦିଆଯାଇଛି (୫) । ୧୯୧୫ ମସିହାରେ ଶେଷ ଭାଗରେ ଏହି ପୁସ୍ତକ 'ବୋଡ଼ାଧମ୍ବର'ର ଜମିଦାର ଶ୍ରୀ ଲାଲ ରାଜେନ୍ଦ୍ର ସିଂହ ବରିହାଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ ହୋଇଛି । ୧୯୧୫ ଜାନୁୟାରୀ ମାସ 'ଉତ୍କଳ ସାହିତ୍ୟ'ରେ ଏହାର '୧ମ ସର୍ଗ'ର ପ୍ରଥମ ଅଂଶଟି 'ବସନ୍ତ' ଶିରୋନାମରେ ପ୍ରକାଶିତ ହୋଇଥିଲା । ଫୁଟ୍‌ନୋଟ୍‌ରେ ଏହା କୌଣସି 'ଅପ୍ରକାଶିତ ଗ୍ରନ୍ଥ'ରୁ ଉଦ୍ଧୃତ ବୋଲି ସୂଚନା ଦିଆଯାଇଥିଲା । ଯାହା ଦେଖାଯାଉଛି, ଏହି ଗ୍ରନ୍ଥଟିର ରଚନା କରିବା ନିମନ୍ତେ କବି ପ୍ରାୟ ପାଖାପାଖି ଦୁଇବର୍ଷ ସମୟ ନେଇଛନ୍ତି । ଅବଶ୍ୟ ତାହାର ଭିତରେ 'ତପସ୍ୱିନୀ' କାବ୍ୟ ଆରମ୍ଭ ହୋଇ ଶେଷ ହୋଇଯାଇଛି ।

ଶ୍ରୀ ନନ୍ଦକିଶୋର ବଳ ୧୯୧୧ ମସିହାରେ ମେଘେର-କୃତି ଉପରେ ମନ୍ତବ୍ୟ ଦେଇ ଲେଖିଥିଲେ, "ଉତ୍କଳ ସାହିତ୍ୟରେ ଆଦର୍ଶ ଚରିତ୍ର ଚିତ୍ରଣ ନାହିଁ କହିଲେ ଚଳେ । କବିବର ରାଧାନାଥଙ୍କ ରତ୍ନାବଳୀର ଭଣ୍ଡାର ଗ୍ରନ୍ଥାବଳୀରେ ଯେଉଁ ଅଭାବ ରହିଯାଇଅଛି । ତାହାର ପ୍ରପୂର୍ତ୍ତି କିପରି ହେବ ?

---

୧ । 'ଶକୁନ୍ତଳା'ର ୨ୟ, ୩ୟ ସର୍ଗ ହୋଇଅଛି । ପୁସ୍ତକର ନାମ 'ପ୍ରଣୟ ବଲ୍ଲରୀ' ରଖି ୨ୟ ସର୍ଗକୁ ପ୍ରଣୟ ବଲ୍ଲରୀ ଏବଂ ୩ୟ ସର୍ଗକୁ ପ୍ରଣୟ ପୁଷ୍ପ ନାମ ଦେଇଅଛି । କ୍ରମରେ ପ୍ରଣୟ ସୌରଭ, ପୁଷ୍ପୋଦ୍‌ଗମ, ପ୍ରଣୟ ଫଳ ହେବାର ମାନସ ଅଛି । [ ଗଙ୍ଗାଧର ପତ୍ରାବଳୀ –– ପୃ. ୧୫୫ ]

୨ । ଗଙ୍ଗାଧର ପତ୍ରାବଳୀ — ପୃ. ୧୬୦ ।

୩ । ଗଙ୍ଗାଧର ପତ୍ରାବଳୀ — ପୃ. ୧୬୨ ।

୪ । ଗଙ୍ଗାଧର ପତ୍ରାବଳୀ — ପୃ. ୧୬୭ ।

୫ । ଗଙ୍ଗାଧର ପତ୍ରାବଳୀ –– ପୃ ୧୯୧ / ୧୯୨ ।

'ଜାତକବଧ' ଯୁବକ ଯୁବତୀମାନଙ୍କ ହସ୍ତରେ ଦିଆଯିବା ପକ୍ଷରେ କାହାରି କାହାରି ଆପତ୍ତି ହୋଇପାରେ । ତନ୍ମଧ୍ୟରେ ପ୍ରଣୟ, ପାପ ପ୍ରଣୟ ବର୍ଣ୍ଣନା ସଙ୍ଗେ ତତ୍ସଙ୍ଗତ ବିଷୟ ଫଳରେ ବର୍ଣ୍ଣନା ଥିଲେହେଁ, ପଢ଼ୁ ପଢ଼ୁ ଅପରିପକ୍ୱ ଚରିତ୍ର ଓ ଅଗଠିତ ମନରେ ବିକାରର ଆବର୍ତ୍ତ ଜନ୍ମା ସମ୍ଭାବିତ ହୋଇପାରେ । କାମପ୍ରଣୟ ବ୍ୟକ୍ତିତ ମାନବ ଚରିତ୍ରର ଅନ୍ୟ ମହତ୍ ଭାବ ଜନ୍ମା ନିର୍ମଳ ପବିତ୍ର ପ୍ରଣୟ ଚରିତ୍ରାଦି ପରିବର୍ତ୍ତିତ କାବ୍ୟର ଅଭାବ ଉତ୍କଳ ସାହିତ୍ୟରେ ଅଛି । ତଥାପି, ମହାପୁରୁଷରେ ଯେପରି ପ୍ରକୃତି ଚରିତ୍ର ପରାକାଷ୍ଠା ପ୍ରଦର୍ଶିତ ହୋଇଅଛି, ସେହିପରି ମାନବ ଚରିତ୍ର ଚିତ୍ରଣର ଉଚ୍ଚ ଆଦର୍ଶ କିଏ ସ୍ମରଣ କରିବ ? କବି ଗଙ୍ଗାଧର ଏ ଶକ୍ତିର ସ୍ପଷ୍ଟ ଉନ୍ମେଷ 'ଜାତକବଧ'ରେ ପ୍ରଦର୍ଶନ କରିଅଛନ୍ତି । ତାହା ପରିସ୍ଫୁଟ ହେବ କି ?" [ ଗଙ୍ଗାଧର ଗ୍ରନ୍ଥାବଳୀ – ପୃ. ୬୭/୬୮ ] । ଏତେବେଳକୁ 'ପ୍ରଣୟ ବଲ୍ଲରୀ'ର ପ୍ରଥମ ସର୍ଗ 'ପ୍ରଣୟାଙ୍କୁର' ରଚିତ ହୋଇ ସାରିଥିଲା । ସେହି ପ୍ରସଙ୍ଗରେ ତାହା ସମ୍ପର୍କରେ ଶ୍ରୀ ବଳ ଉକ୍ତ ମନ୍ତବ୍ୟ ଦେଇଅଛନ୍ତି ।

ପ୍ରଣୟ ପ୍ରଧାନ 'ପ୍ରଣୟ ବଲ୍ଲରୀ' 'ନିର୍ମଳ ପବିତ୍ର ପ୍ରଣୟ'ର ଉତ୍ସ ଏବଂ ଉତ୍କଳ-ସାହିତ୍ୟରେ ପବିତ୍ର-ପ୍ରଣୟ ଚରିତ୍ରର ଅଭାବ ଦୂର କରିବା ନିମନ୍ତେ ଅଭିପ୍ରେତ । 'ପ୍ରଣୟ-ବର୍ଣ୍ଣନା' ଚେତନାରୁ ହିଁ ଏହି କାବ୍ୟର ସୃଷ୍ଟି ଏବଂ ସେ ପ୍ରଣୟ ପୁଣି ରାଧାନାଥୀ-ସାହିତ୍ୟର ଉଚ୍ଛୃଙ୍ଖଳ-ଦେହବାଦୀ ପ୍ରଣୟର ପ୍ରତିବାଦ ମାତ୍ର ନହୋଇ ଆଦର୍ଶମୟ ଏବଂ ପବିତ୍ର । ଶାନ୍ତସଲିଳା ଶରତ୍-ସ୍ରୋତସ୍ୱିନୀ ପରି ଏହାର ଗତି ବେଗ । ବୟସର ଧର୍ମରେ ତାହା ଯେ ଉଚ୍ଛୃଙ୍ଖଳ ହୋଇ ନାହିଁ ଏ ଭଳି ନୁହେଁ । ତାହା ମାତ୍ର ଥରକ ପାଇଁ । ତଥାପି ମନରେ ଉଠିଥିବା ଦେହର କାମନା ଅଶାସ୍ତ୍ରୀୟ ତେଣୁ ଅପବିତ୍ର । ଶୁଦ୍ଧ ନିମନ୍ତେ ଏହାର ଅଗ୍ନିପରୀକ୍ଷାର ପ୍ରୟୋଜନ । ସେଥିପାଇଁ କବି ତାହାର ଉଚିତ ବ୍ୟବସ୍ଥା ମଧ୍ୟ କରିଛନ୍ତି । ଦୁର୍ବାସାଙ୍କର ଶାପ-ଅନଳ ଦେହଜ ପ୍ରେମକୁ ଜାଳି ପୋଡ଼ି ଏହାର ଏକ ପରିଶୀଳିତ ରୂପ ପ୍ରକଟିତ କରିବା ନିମନ୍ତେ ଅଭିପ୍ରେତ । ଅନୁତାପ ଦଗ୍ଧ ଦୁଷ୍ମନ୍ତ ଏବଂ ତପସ୍ୟା ନିରତା ଶକୁନ୍ତଳା ଖଣ୍ଡକର ଭୁଲ ଲାଗି ପ୍ରାୟଶ୍ଚିତ୍ତ କରିଛନ୍ତି । ନିଜ ଜୀବନର ସମସ୍ତ ସୁଖ / ସ୍ୱାଚ୍ଛନ୍ଦ୍ୟ, କାମନା / ବାସନା ବିସର୍ଜନ ଦେଇ । ବିଚ୍ଛେଦ-ଅନଳ ଏହି ପ୍ରେମକୁ କରିଛି 'କାମଗନ୍ଧ ଶୂନ୍ୟ' 'ନିକଷିତ ହେମ' ତୁଲ୍ୟ । ସାଧନାରେ ସିଦ୍ଧି ଆସିଛି । ଅଗ୍ନିପରୀକ୍ଷା ଉତ୍ତୀର୍ଣ୍ଣ ଦୁଷ୍ମନ୍ତ ଓ ଶକୁନ୍ତଳା ମାରୀଚ ଆଶ୍ରମର ପରିଶୁଦ୍ଧ ପରିବେଶରେ ପରସ୍ପରକୁ ଫେରି ପାଇଛନ୍ତି । କଣ୍ୱ-ଆଶ୍ରମର ପାର୍ଥିବ ପରିବେଶରେ ଯେଉଁ ଭୂଇଁପ୍ରେମର ସୃଷ୍ଟି ହୋଇଥିଲା, ମାରୀଚ ଆଶ୍ରମର ସ୍ୱର୍ଗୀୟ ପରିବେଶରେ ତାହା ଅରୂପ / ଶାଶ୍ୱତ ମୂର୍ତ୍ତିରେ ପ୍ରତିଭାତ ହୋଇଛି ।

ଦୁଷ୍ମନ୍ତ / ଶକୁନ୍ତଳାଙ୍କର ପ୍ରେମ ଦେହ-ଭୋଗର ଅଦମନୀୟ କାମନାରୁ ସୃଷ୍ଟ ହୋଇଥିଲେ ହେଁ, ଆଦର୍ଶ ଦାମ୍ପତ୍ୟ ପ୍ରଣୟର ବର୍ଣ୍ଣନା କରିବା ଥିଲା ଗଙ୍ଗାଧରଙ୍କର ମୂଳ ଉଦ୍ଦେଶ୍ୟ । ତୃତୀୟ ସର୍ଗ, ଯେଉଁଠାରେ ଦୁଷ୍ମନ୍ତ / ଶକୁନ୍ତଳା ଦେହ ବେଦୀରେ ପ୍ରଣୟର ଆଦ୍ୟ ଅର୍ଚ୍ଚନା କରିଛନ୍ତି, ସେଠାରେ ମଧ୍ୟ କବି ନିଜ ମୂଳ ଆଦର୍ଶକୁ ନଭୁଲି ପରିଶୁଦ୍ଧ ଦାମ୍ପତ୍ୟ ପ୍ରଣୟର ଜୟଗାନ କରିଅଛନ୍ତି ।★

---

★ ଯେଉଁ ଡାଳେ ବସି / ଶୁକ କରୁଥିଲା / ତାପସ ଯଶ ଘୋଷଣ,
ଦମ୍ପତିର ଭାଗ୍ୟ / ବର୍ଣ୍ଣୁଛି କପୋତ / ସେ ଡାଳ କରି ଆସନ ।
ମୃଗ ମୃଗୀ ଯାହା / ତାପସ ସ୍ୱଭାବ / ବୋଧ ହେଉଥିଲେ ମନେ,
ଆଜ ଦିଶୁଛନ୍ତି / ଅଛନ୍ତି ମଧୁର / ଦମ୍ପତି ପ୍ରେମ ବନ୍ଧନେ । [ ଗଙ୍ଗାଧର ଗ୍ରନ୍ଥାବଳୀ— ପୃ. ୬୮ ]

'ପଦ୍ମିନୀ' କାବ୍ୟରେ ଆଦର୍ଶ ଦାମ୍ପତ୍ୟ ଚିତ୍ରର ଅଭାବ ନାହିଁ । ତେବେ ସେଠାରେ ସତ୍ୟ-ଧର୍ମ ତାହାର ଉପଯୁକ୍ତ ମର୍ଯ୍ୟାଦା ଲାଭ କରିପାରି ନାହିଁ । ପୁରାଣାଶ୍ରୟୀ କବି ମନ ହୁଏତ ଆଲ୍ଲା ଉଦ୍ଦିନ୍‌ଙ୍କ ଲାଳସା ଇନ୍ଧନରେ 'ପଦ୍ମିନୀ'ଙ୍କର ଅସହାୟ ଜୀବନୋତ୍ସର୍ଗକୁ ସମର୍ଥନ କରିପାରି ନାହିଁ । ତେଣୁ ତାହା ଅର୍ଦ୍ଧପଥରେ ପରିତ୍ୟକ୍ତ ହୋଇଛି, ଏ ଭଳି କଳ୍ପନା ସୁଦୂର ପ୍ରସାରୀ ନୁହେଁ । ପ୍ରାଚ୍ୟ-ପରମ୍ପରାର ଆଦର୍ଶରେ ପ୍ରେମ-ଧର୍ମର ପ୍ରକୋଷ୍ଠରେ ସତ୍ୟ-ଧର୍ମର ବିଜୟ ଘୋଷଣା ନିମନ୍ତେ କବି 'ଦୁଷ୍ମନ୍ତ-ଶକୁନ୍ତଳା' ବୃତ୍ତାନ୍ତକୁ ବାଛି ନେଇଥିବାର ଅସମ୍ଭବ ନୁହେଁ । 'ପ୍ରଣୟ' ଶବ୍ଦଟି ପ୍ରତି କବିଙ୍କର ପକ୍ଷପାତିତା 'ସର୍ଗ' ବିଭାଗରୁ ଲକ୍ଷ୍ୟଣୀୟ । ସମଗ୍ର ସାତଟି ସର୍ଗ ମଧ୍ୟରୁ ଛଅଟି ସର୍ଗ 'ପ୍ରଣୟ' ଶବ୍ଦକୁ ପୂର୍ବବର୍ତ୍ତୀ କରି ନାମିତ ହୋଇଛି । ଏହି ଶାଶ୍ୱତ ପ୍ରଣୟର ଆଦର୍ଶ କାଳିଦାସ — ନାଟକରେ ଯେଉଁଭଳି ଭାବରେ ପ୍ରତିଫଳିତ ହୋଇଛି, ତାହା ମେହେରଙ୍କ କାବ୍ୟାଦର୍ଶର ଅନୁକୂଳ ଥିଲା । ତେଣୁ 'ମହାକବି କାଳିଦାସଙ୍କର ଗତିପଥ ଲକ୍ଷ୍ୟକରି' ଏହି କାବ୍ୟଟିର ରଚନା କରାଯାଇଥିଲା ଏବଂ 'ଚରିତଟି ପ୍ରଣୟ-ପ୍ରଧାନ ଥିବାରୁ' ଏହାର 'ପ୍ରଣୟ-ବଲ୍ଲରୀ' ନାମକରଣ ମଧ୍ୟ କରାଯାଇଥିଲା । 'ପ୍ରଣୟ ବଲ୍ଲରୀ' ପରିକଳ୍ପନା ପଛରେ ତେଣୁ ନିମ୍ନଲିଖିତ କାରଣମାନ ରହିଥିବାର ଅନୁମାନ କରାଯାଇପାରେ ।

(୧) ଦୀର୍ଘକାଳଧରି କୌଣସି ଉଲ୍ଲେଖଯୋଗ୍ୟ ରଚନା ପ୍ରକାଶିତ ହୋଇନଥିବାରୁ କବିମନର କ୍ଷୋଭ ତଥା ଶ୍ରୀ ବ୍ରଜମୋହନ ପଣ୍ଡା ପ୍ରମୁଖ ହିତୈଷୀମାନଙ୍କର ବାରମ୍ବାର ସସ୍ନେହ ଅନୁଯୋଗ ।

(୨) 'ଅଯୋଧ୍ୟା ଦୃଶ୍ୟ' ତଥା 'ପଦ୍ମିନୀ'ର ଅସଫଳତାର ଅପବାଦ ଦୂରକରି ଏକ ପୂର୍ଣ୍ଣାଙ୍ଗ କାବ୍ୟ ରଚନାରେ ଆତ୍ମବିଶ୍ୱାସ ଫେରାଇ ଆଣିବାର ଏକ ଉଦଗ୍ର କାମନା ।

(୩) ରାଧାନାଥୀ ସାହିତ୍ୟରେ ଆଦର୍ଶ-ପ୍ରଣୟର ଯେଉଁ ଘୋର ଅଭାବ ରହିଯାଇଥିଲା, ତାହା ଦୂର କରିବା ନିମନ୍ତେ ଶକ୍ତି ଅନୁରୂପ ଉଦ୍ୟମ ।

(୪) ଗଙ୍ଗାଧର ରସସିଦ୍ଧ କବି ଥିଲେ । ଶୃଙ୍ଗାର ରସର ସଂଯତ ବର୍ଣ୍ଣନା ଯେ କବିକୃତିକୁ ଭାବ-ସୃଷ୍ଟି ସୌନ୍ଦର୍ଯ୍ୟରେ ଭୂଷିତ କରିଥାଏ, ଏହା ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ଶକୁନ୍ତଳା / ଦୁଷ୍ମନ୍ତଙ୍କର ପ୍ରଣୟ କାହାଣୀ ନିର୍ବାଚନ ପଛରେ ଥିଲା ସେଇ ସାହିତ୍ୟ-ରସ ସୃଷ୍ଟି ନିମନ୍ତେ କବିଙ୍କର ବ୍ୟାକୁଳତା । ପୂର୍ବ-ପକ୍ଷପାତି କବି ମନ 'ଗେଟେ'ଙ୍କ ବର୍ଣ୍ଣନାରୁ ଶକୁନ୍ତଳା-କାହାଣୀରେ ସ୍ୱର୍ଗ / ମର୍ତ୍ତ୍ୟର ମଧୁର ମିଳନର ସନ୍ଦେଶ ସଂଗ୍ରହ କରି ଓଡ଼ିଆ ଭାଷାରେ ତାହାର ରୂପ ଦେବା ନିମନ୍ତେ ଯେଉଁ ବ୍ୟଗ୍ରତା ପ୍ରକାଶ କରିଥିଲା, ତାହାହିଁ 'ପ୍ରଣୟ ବଲ୍ଲରୀ'ର ଜନ୍ମଦାତା ବୋଲି ଅନୁମାନ କରାଯାଇପାରେ ।

'ପ୍ରଣୟ-ବଲ୍ଲରୀ' ଏହି ଆତ୍ମ ବିଶ୍ଳେଷଣର ଏକ ଅମୃତମୟ ଫଳ ।

ପଣ୍ଡିତ ନୀଳକଣ୍ଠ 'ପ୍ରଣୟ ବଲ୍ଲରୀ'କୁ ଏକ 'ସୁନ୍ଦର ଅନୁବାଦ'ର ଗୌରବ ମାତ୍ର ପ୍ରଦାନ କରିଅଛନ୍ତି । କେବଳ ନୀଳକଣ୍ଠ ନୁହନ୍ତି, ଆହୁରି ଅନେକ ପ୍ରତିଷ୍ଠିତ ସମାଲୋଚକ ମଧ୍ୟ 'ଉପରୋକ୍ତ ମନ୍ତବ୍ୟ ପୋଷଣ କରିଥାଆନ୍ତି । ମାତ୍ର ଯଥାର୍ଥରେ ତାହାହିଁ କି ?

'ପ୍ରଣୟ ବଲ୍ଲରୀ'ର ଅଧିକାଂଶ ସ୍ଥାନରେ 'ଶକୁନ୍ତଳା'ର ଭାବ / ଭାଷା ଇତ୍ୟାଦି ବ୍ୟବହୃତ ହୋଇ ନାହିଁ ଏହା କୁହାଯାଇ ନାହିଁ କାରଣ ସ୍ୱୟଂ କବି ତତ୍କାଳୀନ ଅନ୍ୟ ଜଣେ ପ୍ରସିଦ୍ଧ କବିଙ୍କ ଭଳି

ସ୍ୱ-ପ୍ରେରଣାର ମୂଳସ୍ରୋତ ବିଷୟରେ ପାଠକମାନଙ୍କୁ ଅନ୍ଧକାରରେ ନ ରଖି, ମୂଳରୁହିଁ ଆହରଣ ସମ୍ପର୍କରେ ସୂଚନା ଦେଇଅଛନ୍ତି । ଶ୍ରୀ ବ୍ରଜମୋହନ ପଣ୍ଡା ମଧ୍ୟ ଏ ସମ୍ପର୍କରେ କବିଙ୍କର ବକ୍ତବ୍ୟକୁ ସୁସ୍ପଷ୍ଟ କରିଦେଇଅଛନ୍ତି । (୧) ତେବେ 'ପ୍ରଣୟ-ବଲ୍ଲରୀ'ର ସୃଷ୍ଟି-ସୌନ୍ଦର୍ଯ୍ୟରେ କବି-ପ୍ରତିଭାର ମୌଳିକତା ଦିଗଟି ଆଦୌ ଅସ୍ପଷ୍ଟ ନୁହେଁ । 'ଆହୃତରେ ମୌଳିକତା' ପ୍ରକଟିତ ହୋଇ 'ପ୍ରଣୟବଲ୍ଲରୀ'କୁ ଯେଉଁ ନବ-ସୌନ୍ଦର୍ଯ୍ୟ ପ୍ରଦାନ କରିଛି, ତାହା ବିସ୍ମୃତ ହେଲେ, କବି ପ୍ରତିଭାକୁ ଅସ୍ୱୀକାର କରିବାକୁ ପଡ଼ିବ । 'ପ୍ରଣୟ-ବଲ୍ଲରୀ' ଶକୁନ୍ତଳାର 'ଅନୁସରଣ' ମାତ୍ର ଅନ୍ଧ ଅନୁକରଣ ନୁହେଁ । ଏଠାରେ କବି କାଳିଦାସ ଇମେଜ୍‌ର ଏକ ଅସ୍ପଷ୍ଟ ପ୍ରତିବିମ୍ବ ମାତ୍ର ନୁହନ୍ତି । ବରଂ ସୃଷ୍ଟି-କଳ୍ପନାର ମୌଳିକତାରେ ପ୍ରତିଷ୍ଠିତ ଜଣେ ସ୍ୱତନ୍ତ୍ର କବି । ଗଙ୍ଗାଧର ହେଉଛନ୍ତି କାଳିଦାସ-ହସ୍ତୀ ପଦ ଚିହ୍ନର ଅନୁସରଣକାରୀ ହଂସ ବିଶେଷ ଯାହାଙ୍କର 'ନୈସର୍ଗିକ ଗତି' ଅବଶ୍ୟ ଦର୍ଶନୀୟ । (୨)

'ଶକୁନ୍ତଳା' ଏବଂ 'ପ୍ରଣୟ ବଲ୍ଲରୀ' ମଧ୍ୟରୁ ଗୋଟିଏ ମାତ୍ର ଉଦାହରଣ ଦେଇ, ଆମେ 'ଗଙ୍ଗାଧର'ଙ୍କ ସୃଷ୍ଟି କ୍ଷମତା ସମ୍ପର୍କରେ ଆଲୋକପାତ କରିବୁଁ । ଦୃଶ୍ୟଟି ହେଉଛି ଆଶ୍ରମ-ପରିବେଶରେ ଦୁଷ୍ମନ୍ତଙ୍କ ସହିତ ଶକୁନ୍ତଳାର ପ୍ରଥମ ସାକ୍ଷାତ୍-ବିଷୟକ । କଣ୍ୱାଶ୍ରମରେ ସହସା ଏଭଳି ଗୋଟିଏ ଅନାଘ୍ରାତ-କୁସୁମ ଦର୍ଶନରେ କାଳିଦାସଙ୍କର ଦୁଷ୍ମନ୍ତ ଚପଳ ଚିତ୍ତ ହୋଇ ଉଠିଛନ୍ତି । ଚିତ୍ତ ଚାଞ୍ଚଲ୍ୟ ଅନୁରାଗର ଜନନୀ ହେଲେହେଁ, ଏହି ଅନୁରାଗର ପରିପୂର୍ଣ୍ଣ ଚିତ୍ର ଦୁଷ୍ମନ୍ତ ଚରିତ୍ରକୁ ମହନୀୟତାର ସ୍ପର୍ଶରେ ଯେଉଁଭଳି ଅନନ୍ୟ କରିଥାଆନ୍ତା, ସେଭଳି ଘଟି ନାହିଁ । ଅତିରେ ଅନୁରାଗ ପରିଣତ ହୋଇଛି, ଘୋର-ଆସକ୍ତିରେ । ଦୁଷ୍ମନ୍ତ ବିବାହ ଚିନ୍ତାରେ ମତ୍ତ ହୋଇ ଉଠିଛନ୍ତି । ନ୍ୟାୟ / ନୀତି, ବୁଦ୍ଧି/ବିବେକ ସବୁ କାହିଁ କୁଆଡେ କାମନାର ସ୍ରୋତରେ ଭାସି ଯାଇଛନ୍ତି । ଗଙ୍ଗାଧରଙ୍କର ଦୁଷ୍ମନ୍ତ କିନ୍ତୁ ଏଇ ସ୍ଥାନରେ ଅଧିକ ସଂଯତ / ଧୀର / ଗମ୍ଭୀର ରୂପେ ବର୍ଣ୍ଣିତ ହୋଇଛନ୍ତି ।

ରୂପଲୋଲୁପମନ ଶକୁନ୍ତଳାଙ୍କୁ ନିଜର କରିବା ନିମନ୍ତେ ଅଗ୍ରସର ହେଲାବେଳକୁ ରାଜବିବେକ ତାହାର ଅନ୍ତରାୟ ହୋଇ ନ୍ୟାୟର ଅଙ୍କୁଶରେ ତାହାକୁ ଆୟତ୍ତରେ ରଖିବା ନିମନ୍ତେ ଉଦ୍ୟମୀ ହୋଇଛି (୩) । ମନ ଏହାକୁ 'ଅନଧିକୃତ-ରତନ' ବୋଲି କହି ଅଧିକାର କରିବା ନିମନ୍ତେ ଅଗ୍ରସର ହେଲାବେଳକୁ ବିବେକ ତାହାକୁ 'କୂପ ପ୍ରତିବିମ୍ବିତାର'ରୂପେ ସୂଚନା ଦେଇ, 'ଲୁବ୍‌ଧ-ମୁଗ୍‌ଧ-ଜନ'ର ବିନାଶକାରିଣୀ ତାହାଠାରୁ ଦୂରରେ ରହିବା ନିମନ୍ତେ ମନକୁ ସାବଧାନ କରାଇଦେଉଛି (୪) । ମନ / ବିବେକର ଦ୍ୱନ୍ଦ୍ୱ ବର୍ଣ୍ଣନାରେ ଦୁଷ୍ମନ୍ତ ଚରିତ୍ରର ଯେଉଁ ବୈଶିଷ୍ଟ୍ୟ ଏବଂ ମହନୀୟତା ଏଠାରେ ଫୁଟି ଉଠିଛି । କାଳିଦାସଙ୍କ ନାଟକରେ ତାହାର ଅନୁପସ୍ଥିତି ଚରିତ୍ରଟିକୁ କିଞ୍ଚିତ ସାଧାରଣ-ପର୍ଯ୍ୟାୟର କରିଦେଇଛି । ମୌଳିକତାର ଏହିଭଳି ଅନେକ ଉଦାହରଣ 'ପ୍ରଣୟ ବଲ୍ଲରୀ'ରେ ଦେଖିବାକୁ ମିଳିବ ।

---

୧ । ପ୍ରଣୟ ବଲ୍ଲରୀର ସ୍ଥାନେ ସ୍ଥାନେ ସଂଯୋଗ କରିବା ଶ୍ଳୋକ ସବୁ ଅନୁବାଦ କରି ପାରିଲେ କି ?
[ ଗଙ୍ଗାଧର ପତ୍ରାବଳୀ — ପୃ. ୧୨୧, ତା ୨୭ - ୫ - ୧୫ ରିଖର ପତ୍ର ]

୨ । ପ୍ରଣୟ ବଲ୍ଲରୀ — ଭୂମିକା ।

୩ । ମନ ପ୍ରତି ରାଜା / ବିବେକ ବୋଇଲା / ସ୍ୱାୟତ୍ତ-ମିଷ୍ଟ ଭର୍ତ୍ସିନେ, ନବ-ସ୍ୱାଧୀନତା / ଏକ ଆଜ ଚୋର / ପରଦ୍ରବ୍ୟେ ପ୍ରଲୋଭନେ ? — [ ପ୍ରଣୟ ବଲ୍ଲରୀ — ପୃ. ୬୭ ଗଙ୍ଗାଧର ଗ୍ରନ୍ଥାବଳୀ ]

୪ । ଗଙ୍ଗାଧର ଗ୍ରନ୍ଥାବଳୀ — ପୃ. ୬୭ / ୬୮ ।

କାଳିଦାସ ଉଚ୍ଚ ଶ୍ରେଣୀର କବି, ସନ୍ଦେହନାହିଁ । ତାହାଙ୍କର କାବ୍ୟ-ରଚନା-କୌଶଳ / ପରିବେଶ-ସୃଷ୍ଟିର ଯାଥାର୍ଥ୍ୟ / ଚରିତ୍ର ବର୍ଣ୍ଣନା ଚାତୁର୍ଯ୍ୟ ଅନେକତ୍ର ଗଙ୍ଗାଧରଙ୍କୁ ଅତିକ୍ରମ କରିଛି, ଏହା ଯେଉଁ ଭଳି ସତ୍ୟ ; ଅନେକ କ୍ଷେତ୍ରରେ ଗଙ୍ଗାଧର ମଧ୍ୟ ସ୍ୱ-ଗୁରୁଙ୍କୁ ଅତିକ୍ରମ କରିଯାଇଛନ୍ତି, ଏହା ମଧ୍ୟ ସେଇଭଳି ସତ୍ୟ । ଉଭୟ କବି ସ୍ୱ ସ୍ୱ ପ୍ରତିଭା ପରିପ୍ରେକ୍ଷୀରେ ଭାସ୍ୱର । କେହି କାହାର ଉପଗ୍ରହ ନୁହନ୍ତି । 'ପ୍ରଣୟ ବଲ୍ଲରୀ'ରେ 'ଶକୁନ୍ତଳା'ର ଯେତିକି ଅଂଶ ଅନୁଦିତ ହୋଇଛି କିମ୍ବା ଅନୁସୃତ ହୋଇଛି, ତାହା ଅପେକ୍ଷା କବିଙ୍କ ସ୍ୱାତନ୍ତ୍ର୍ୟ ପ୍ରକଟିତ ହୋଇଛି ବେଶୀ । ଦ୍ୱିତୀୟ କଥା ହେଉଛି, 'ଶକୁନ୍ତଳା' ବ୍ୟତୀତ କବି କିଛି କିଛି ଭାବ 'ମହାଭାରତ'ରୁ ମଧ୍ୟ ସଂଗ୍ରହ କରିଛନ୍ତି । ବ୍ୟାସଦେବଙ୍କ ପ୍ରଗଲ୍‌ଭା ଶକୁନ୍ତଳା ଦୁଷ୍ମନ୍ତଙ୍କୁ ଦେହ ଦାନ କରିବାପୂର୍ବରୁ ନିଜର ଏକ ସ୍ଥାୟୀ ଭବିଷ୍ୟତ୍ ନିମନ୍ତେ ଅତିମାତ୍ରା ଚିନ୍ତିତା ହୋଇଉଠିଛି । ସେଠାରେ ଆମେ ଦେଖିବାକୁ ପାଉଁ ଏକ ପ୍ରଣୟମୁଗ୍‌ଧା-ସରଳା ଋଷିକନ୍ୟାକୁ ନୁହେଁ, ବରଂ ଏକ ଧୂର୍ତ୍ତା / ଚତୁର ବ୍ୟବସାୟିନୀକୁ, କାଳିଦାସ ଏହାର ଅସାରତା ହୃଦୟଙ୍ଗମକରି ଏହାକୁ ପୂର୍ଣ୍ଣରୂପେ ତ୍ୟାଗ କରିଥିଲେ ହେଁ, ଗଙ୍ଗାଧର ସାମାନ୍ୟ ପରିବର୍ତ୍ତନ କରି ଘଟଣାଟିକୁ ଗ୍ରହଣକରି ନେଇଛନ୍ତି । 'ପ୍ରଣୟ ବଲ୍ଲରୀ'ରେ 'ବେନି-ସଖୀ' ରୂପେ ଚିହ୍ନିତା ହୋଇଥିବା ଅନସୂୟା ଏବଂ ପ୍ରିୟମ୍ବଦା ଶକୁନ୍ତଳାର ଭବିଷ୍ୟତ୍ ଚିନ୍ତାର ଦାୟିତ୍ୱ ସ୍ୱୟଂ ଗ୍ରହଣକରି ଘଟଣାଟିକୁ ଯଥାର୍ଥରୂପ ଦେଇଛନ୍ତି ।* ଏ ଜିଜ୍ଞାସାର ଦାୟିତ୍ୱ ସ୍ୱୟଂ ଶକୁନ୍ତଳା ଗ୍ରହଣ କରିଥିଲେ, ବର୍ଣ୍ଣନାଟି ନିନ୍ଦନୀୟ ତଥା ଅସ୍ୱାଭାବିକ ହୋଇଥାଆନ୍ତା । ହିନ୍ଦୁ ସମାଜରେ କନ୍ୟା ନିଜ ଭବିଷ୍ୟତ୍ ସମ୍ପର୍କରେ ଦେଣା-ପାଉଣାର ହିସାବ-ନିକାଶ କରିବା ଏକ ଲଜ୍ଜାଜନକ ଏବଂ ଅକଳ୍ପନୀୟ ବ୍ୟାପାର । ମାତ୍ର ତାହାର ଦାୟିତ୍ୱ କନ୍ୟାର ଆତ୍ମୀୟ ସ୍ୱଜନମାନେ ଗ୍ରହଣ କରିବାରେ କିଛି ଅସୁବିଧା ନାହିଁ । ବରଂ ଅଧିକାଂଶ କ୍ଷେତ୍ରରେ ତାହା ହିଁ ହୋଇଥାଏ । ଅନସୂୟା / ପ୍ରିୟମ୍ବଦା ଆରଣ୍ୟକା ଶକୁନ୍ତଳାର ଯଥାର୍ଥ ଆତ୍ମୀୟଠାରୁ ମଧ୍ୟ ଅଧିକ । ତେଣୁ ଶକୁନ୍ତଳାର ଭବିଷ୍ୟତ୍ ଚିନ୍ତା ସେମାନଙ୍କ ମୁହଁରେ ଅସ୍ୱାଭାବିକ କିମ୍ବା ଗର୍ହିତ ହେବ କାହିଁକି ? ବରଂ ଏକ ଅସ୍ୱାଭାବିକ ଘଟଣାକୁ ସ୍ୱାଭାବିକ ରଙ୍ଗ ଦେବାରେ ଯେଉଁ କୃତିତ୍ୱ ତାହା ଗଙ୍ଗାଧରଙ୍କୁ ଅର୍ପଣ କରାଯାଇପାରେ ।

'ପ୍ରଣୟ ବଲ୍ଲରୀ'- କବିଙ୍କର ଜାତୀୟ-ପ୍ରେମର ଏକ ଅବିସ୍ମରଣୀୟ ଦଲିଲ୍ । ଗଙ୍ଗାଧରଙ୍କର ଜାତୀୟତା ଥିଲା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଧରଣର । ନିଜର ଜନ୍ମଭୂମି / ମାତୃଭାଷା ପ୍ରତି ଥିଲା ତାଙ୍କର ଅଶେଷ-ସମ୍ମାନ । ନିଜର ଗୁଣ ପ୍ରତିଷ୍ଠା ନିମନ୍ତେ ସେ ଅନ୍ୟର ଦୋଷ ବର୍ଣ୍ଣନା କରିବାକୁ ହୁଏ, ଏହି ପାରମ୍ପରିକ ପଦ୍ଧତିଟି ଗଙ୍ଗାଧରଙ୍କର ମନୋମତ ନଥିଲା । ନିଜର ଜାତୀୟତାର ସମ୍ମାନ ଯେ କେଉଁଭଳି ଅନ୍ୟର ନିନ୍ଦାରେ ବୃଦ୍ଧିପାଇବ, ତାହା କବିଙ୍କୁ ଜଣା ନଥିଲା । ତେଣୁ ସେ ଯାହା ଯେଉଁଠି ଭଲ ଦେଖିଛନ୍ତି, ଦ୍ୱିଧାଶୂନ୍ୟ ଭାବରେ ତାହା ପ୍ରଶଂସାରେ ପଞ୍ଚମୁଖ ହୋଇଛନ୍ତି । ଶାସନର ସୁଗୁଣକୁ ସେ ଯେଉଁ ଭଳି

* ସଖୀ ପଚାରିଲେ / ଦେଖିପାରିବ ସଖୀ-ନନ୍ଦନ ପାଇବ କିସ ? [ ଗଙ୍ଗାଧର ଗ୍ରନ୍ଥାବଳୀ—ପୃ. ୮୨ ]

ସ୍ୱରରେ ବନ୍ଦନା କରିଛନ୍ତି, ତାହାର ଦୁର୍ଗୁଣଗୁଡ଼ିକୁ ମଧ୍ୟ ସେହିଭଳି ସ୍ୱରରେ ନିନ୍ଦା କରିଛନ୍ତି । ନିଜର ଉତ୍କଳୀୟତ୍ୱର ସ୍ୱାକ୍ଷର 'ପ୍ରଣୟ ବଲ୍ଲରୀ'ରେ ରଖି ଦେଇଯିବା ନିମନ୍ତେ କବି କିଭଳି ବ୍ୟଗ୍ର ଥିଲେ ତାହାର ପରିଚୟ ଶ୍ରୀ ବ୍ରଜମୋହନ ପଣ୍ଡାଙ୍କୁ ଲେଖିଥିବା ପତ୍ରରୁ ହିଁ ମିଳିଥାଏ ।★

ଏହି ପର୍ବରେ ଉତ୍କଳ ଭୂମିର ଶ୍ରେଷ୍ଠତ୍ୱ, ହିଂସା / ଅହିଂସାର ବିବାଦରେ ଅହିଂସାର ବିଜୟ ଏବଂ ପ୍ରେମଧର୍ମର ପ୍ରତିଷ୍ଠାରେ ପ୍ରମାଣିତ ହୋଇ ଯାଇଛି । 'ଶକୁନ୍ତଳା'ଙ୍କୁ 'ଉତ୍କଳ ଲଳନାର 'ସାରଳ୍ୟ'ରେ ଭୂଷିତ କରିବା ପଛରେ ସେହି ଜାତୀୟତାର ସ୍ୱରଟି ଧ୍ୱନିତ ।

'ପ୍ରଣୟ ବଲ୍ଲରୀ'ର ଚତୁର୍ଥ ସର୍ଗ ପାରିବାରିକ-ଜୀବନରେ ଉତ୍କଳୀୟ ଗୃହିଣୀର ସ୍ଥାନ ତଥା ଜୀବନଚର୍ଯ୍ୟା ସମ୍ପର୍କରେ ପ୍ରଭୂତ ସୂଚନା ପ୍ରଦାନ ହୋଇଅଛି । କଣ୍ୱ-ଶକୁନ୍ତଳାଙ୍କୁ ଏକ ଅଭିନ୍ନ ପରିବେଶରେ ନୂତନ ଭୂମିକାରେ କେଉଁ ଉପାୟରେ ସେ ନିଜକୁ ପ୍ରତିଷ୍ଠା କରିବେ, ତାହାର ଉପାୟମାନ କହିଦେଇ ଅଛନ୍ତି । ସ୍ୱାମୀଙ୍କ ସହିତ ସ୍ତ୍ରୀର ଘନିଷ୍ଠ ସମ୍ପର୍କ ଦୃଷ୍ଟିରୁ ପତି ନିମନ୍ତେ ପାରିବାରିକ ଜୀବନରେ ପତ୍ନୀର ପ୍ରବେଶ ଦୃଷ୍ଟିରୁ ପତ୍ନୀ-ପତିପରାୟଣ ହେବା ସର୍ବାଦୌ ପ୍ରୟୋଜନ । ପତିର କାମନା ପତ୍ନୀର ହୃଦ-ମୁକୁରରେ ପ୍ରତିବିମ୍ବିତ ହେଲେ ହିଁ ପତି / ପତ୍ନୀର ସମ୍ପର୍କ ଘନିଷ୍ଠ ହୋଇଥାଏ । ଏହା ସହିତ ପୁଣି ରହିଛି ପତ୍ନୀର ଏକ-ସ୍ୱରତା । ତେଣୁ 'ସୋଦର' ହେଲେ ମଧ୍ୟ ତାହା ସହିତ ନିର୍ଜନରେ କ୍ଷଣକ-ପାଇଁକି ମଧ୍ୟ ମିଳିତ ହେବା ବିପଜ୍ଜନକ ବୋଲି ଜଣାଇ ଦିଆଯାଇଛି । ପତ୍ନୀର ସନ୍ତୋଷ ଭାବ ସମଗ୍ର ପରିବାରରେ ଶାନ୍ତି ରକ୍ଷା କରିଥାଏ । ଏଣୁ ବସନ ଭୂଷଣର ପ୍ରତ୍ୟାଶୀ ହୋଇ ପାରିବାରିକ ଜୀବନର ସ୍ଥିରତାକୁ ଦୋହଲାଇ ଦେବା ଗୃହିଣୀର ଉଚିତ ନୁହେଁ । ପରିବାରରେ ଯେଉଁ ସ୍ୱାମୀ, ସ୍ତ୍ରୀର ପୂଜ୍ୟ, ସେହି ସ୍ୱାମୀଙ୍କର ପୁଣି ଶାଶୁ ହେଉଛନ୍ତି 'ପୂଜା ସିଂହାସନ' ଏବଂ 'ସର୍ବ-ସମ୍ପଦର ଖଣି' । ତେଣୁ ତାଙ୍କର ଚରଣ ସେବା ସ୍ତ୍ରୀ ପକ୍ଷରେ ଏକାନ୍ତ କର୍ତ୍ତବ୍ୟ । ନଣନ୍ଦକୁ ସ୍ନେହ କରିବା କିମ୍ବା ପରିବାରର ଅନ୍ୟାନ୍ୟ ନାରୀମାନଙ୍କୁ ସୋଦର ଜ୍ଞାନରେ ଆଦର କରିବା ଦ୍ୱାରା ଗୃହିଣୀର ଗୌରବ ବୃଦ୍ଧି ପାଇଥାଏ । ଗୁରୁଜନମାନଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ / ସଖୀମାନଙ୍କ ସହିତ ମଧୁର / ଗମ୍ଭୀର ବ୍ୟବହାର ମଧ୍ୟ ଗୃହିଣୀ କର୍ତ୍ତବ୍ୟର ଅନ୍ତର୍ଭୁକ୍ତ । ଗୃହିଣୀ ହାତରେ ପରିବାରର ସ୍ୱାସ୍ଥ୍ୟର ଦାୟିତ୍ୱ । ତେଣୁ ତାହାର ପରିଚ୍ଛନ୍ନତା ପ୍ରତି ତୀକ୍ଷ୍ଣ-ଦୃଷ୍ଟି ରହିଥିବା ଆବଶ୍ୟକ । ପରିଜନ ଦୁଃଖ-ଶ୍ରବଣ / ତାହାର ସମୁଚିତ ପ୍ରତିକାର, ଅନାଦୃତ ପ୍ରଶଂସନ ପ୍ରତି ଦୃଢ଼ ଆଚରଣ, ସ୍ୱାମୀଦୋଷ ବର୍ଣ୍ଣନାକାରୀ ପ୍ରତି ବୀତସ୍ପୃହତା

---

★ "ଦେବକନ୍ୟା ଓ ରାକ୍ଷସ କନ୍ୟା ବିଷୟରେ ମୋର ଅଭିପ୍ରାୟ ଏହିକି, 'ପ୍ରଣୟ ବଲ୍ଲରୀ' ଉତ୍କଳ କବି ଦ୍ୱାରା ରଚିତ । ତହିଁରେ ଉତ୍କଳର କଥା କିଛି ହେଲେ ରହିବା ଆବଶ୍ୟକ । ଦୁଷ୍ମନ୍ତ ତ ଅସୁର ଦମନ ନିମନ୍ତେ ସ୍ୱର୍ଗକୁ ଯାଇଥିଲେ । ଦେବାସୁର ମଧ୍ୟରେ କଳି କପଟ ହେଲା, ତାହା ପ୍ରକଟ ହେବା ଆବଶ୍ୟକ । ଅତଏବ ଉତ୍କଳ ଭୂମିକି ନେଇ କଳହ ହୋଇଥିବା ରଚନା କଲି । ଉତ୍କଳ ଶାନ୍ତି, ଦୟା, କ୍ଷମା, ଶ୍ରଦ୍ଧାର ବିହାର ସ୍ଥଳ ଥିଲା । ସେମାନେ ଉତ୍କଳର ଗିରିକନ୍ଦର ବାସୀ ମୁନିମାନଙ୍କର ହୃଦୟରେ ବିଚରଣ କରୁଥିଲେ । ବୌଦ୍ଧମାନେ ମଧ୍ୟ ଉତ୍କଳର ଆଦିମ ନିବାସୀ ଅଟନ୍ତି । ×× ଶେଷରେ ଉତ୍କଳରୁ ହିଂସା ନିର୍ବାସିତା ହୋଇ ଅହିଂସାଧର୍ମ (ବୌଦ୍ଧଧର୍ମ)ର ଆଧିପତ୍ୟ ତହିଁରେ ପ୍ରତିଷ୍ଠିତ ହେଲା । ×× ଶକୁନ୍ତଳା ଉତ୍କଳ ଲଳନାର ସ୍ୱଭାବ ବିଶିଷ୍ଟା ହୋଇଅଛନ୍ତି ।"

[ ଗଙ୍ଗାଧର ପତ୍ରାବଳୀ ପୃ. ୧୯୫ / ୧୯୬ — ୨।୧।୧୫ର ପତ୍ର ]

ପ୍ରଭୃତି ବିଭିନ୍ନ କର୍ତ୍ତବ୍ୟର ଜାଲରେ ଗୃହିଣୀର ପ୍ରତ୍ୟେକ ମୁହୂର୍ତ୍ତ କିଭଳି ଆବଦ୍ଧ ତାହାର ଏକ ବିସ୍ତୃତ ଚିତ୍ର ଏଠାରେ ପ୍ରଦତ୍ତ ହୋଇଛି ।* ମୂଳ-ମହାଭାରତ କିମ୍ବା କାଳିଦାସରେ ଉପଦେଶର ଏଇ ବିବରଣୀଟିକୁ ଏତେ ବିସ୍ତୃତ କରାଯାଇନାହିଁ । ଗଙ୍ଗାଧର କଣ୍ୱଙ୍କର ଉପଦେଶ ଛଳରେ ଉତ୍କଳୀୟ ପାରିବାରିକ ଜୀବନରେ ଗୃହିଣୀର କର୍ତ୍ତବ୍ୟାକର୍ତ୍ତବ୍ୟ ସମ୍ପର୍କରେ ବ୍ୟକ୍ତିଗତ ଅଭିଜ୍ଞତାରୁ ହିଁ ଏହି ବର୍ଣ୍ଣନା ପ୍ରଦାନ କରିଅଛନ୍ତି । ଏଥିରେ ପରିବାରରେ ଗୃହିଣୀର ସ୍ଥାନ ଯେ କିଭଳି ଗୁରୁତ୍ୱପୂର୍ଣ୍ଣ ତାହାହିଁ ବର୍ଣ୍ଣନା କରାଯାଇଛି । ଏହାକୁ କବିଙ୍କର ସାମାଜିକତା ଏବଂ ଜାତୀୟତାର ସୂଚକ ରୂପେ ଗ୍ରହଣ କରାଯାଇପାରେ ।

ନୀତି-ଅନୁରକ୍ତି ଭାରତୀୟ ସଂସ୍କୃତିର ମୂଳପିଣ୍ଡ । ପରିବାର ହେଉଛି ଏହାର ଉପାସନା କ୍ଷେତ୍ର । ପାରିବାରିକ ଆଚରଣ ହିଁ ସାମାଜିକ ଜୀବନର ନିୟାମକ । ଏଠାରେ ତେଣୁ ନୀତିହୀନତା / ଉଚ୍ଛୃଙ୍ଖଳତା ସାମାଜିକ ପରିବେଶକୁ ମଧ୍ୟ କଳୁଷିତ କରିଦିଏ । ପତିପରାୟଣା ଶକୁନ୍ତଳାକୁ ଅଭିଶାପ ପ୍ରଦାନର ପାପ ତେଣୁ ସ୍ୱର୍ଗର ଦେବତାମାନଙ୍କୁ ପରିଣାମ-ଭୋଗୀ କରିଛି । ସେମାନେ ଆସୁରିକ ଶକ୍ତିଦ୍ୱାରା ନିପୀଡ଼ିତ ହୋଇଛନ୍ତି । ବିଶ୍ୱାମିତ୍ରଙ୍କର ତାରଲ୍ୟ କିମ୍ବା ଦୁର୍ବାସାଙ୍କର ଅକାରଣ କ୍ରୋଧ ଦେବଶକ୍ତିକୁ ରକ୍ଷା କରିପାରିନାହିଁ । ପ୍ରେମ-ଧର୍ମର ବିଜୟ ଘୋଷଣାରେ ନୀତିମୟତାର ବାତାବରଣର ପୁନଃପ୍ରତିଷ୍ଠାରେ ସାମାଜିକ ଜୀବନର ଶାନ୍ତି ଫେରିଆସିଛି । ସାମାଜିକ ଜୀବନର ନୀତିହୀନତାରେ ଦେବ-ଶକ୍ତିର ନିର୍ଯ୍ୟାତନ କଳ୍ପନାଟି ସମ୍ପୂର୍ଣ୍ଣ ଭାବରେ ଗଙ୍ଗାଧରୀୟ । ଏହା 'ପ୍ରଣୟ ବଲ୍ଲରୀ' କାବ୍ୟଟିକୁ ଉନ୍ନତ ସୃଷ୍ଟି ସୌନ୍ଦର୍ଯ୍ୟରେ ଉଦ୍ଭାସିତ କରିଛି, ଏହା କହିବା ବାହୁଲ୍ୟ ମାତ୍ର । ମେହେର ଉତ୍କଳୀୟ କବି । ନିଜର ସମାଜ, ସଂସ୍କୃତି ଏବଂ ପରିବେଶରୁ ଯାହା ସଂଗ୍ରହ କରିପାରିଥିଲେ, ତାହାର ସ୍ୱତଃସ୍ଫୂର୍ତ୍ତ ପ୍ରକାଶ ଚତୁର୍ଥ ସର୍ଗରେ ଘଟାଇଲେ । ଏହି ଦୃଷ୍ଟିରୁ ମେହେର-କାବ୍ୟ-ସୌଧର ଉଜ୍ଜ୍ୱଳତା ବିଚାରଯୋଗ୍ୟ ।

ଆଜନ୍ମ ଦାରିଦ୍ର୍ୟ ଏବଂ ନ୍ୟୂନମନ୍ୟତା ଗଙ୍ଗାଧରଙ୍କୁ ଭାଗ୍ୟବାଦୀ ରୂପେ ଗଢ଼ି ଦେଇଥିଲା । ଏହି 'ଭାଗ୍ୟବାଦ'ର ଜୟଗାନ ଗଙ୍ଗାଧର ତେଣୁ ସୁଯୋଗ ପାଇବା ମାତ୍ରେ ହିଁ କରିଛନ୍ତି, 'ଅଭିଜ୍ଞାନ-ମୁଦ୍ରିକା'ଟି ଶକୁନ୍ତଳାର ଭାଗ୍ୟକୁ ସ୍ୱେଚ୍ଛାରେ ପରିଚାଳିତ କରିଛି । ମୁଦ୍ରିକାର ଉପସ୍ଥିତି ତାହାର ଜୀବନକୁ ସୁଖ / ସମୃଦ୍ଧିରେ ଯେଉଁଭଳି ଭରି ଦେଇଛି, ମୁଦ୍ରିକାର ଅନୁପସ୍ଥିତି ଶକୁନ୍ତଳା ଜୀବନରେ ବିପର୍ଯ୍ୟୟକୁ ସେଇ, ଭଳି ଭାବରେ ଆହ୍ୱାନ କରିଆଣିଛି । 'ଶକୁନ୍ତଳା' ନାଟକରୁ ଏହା ଦେଖି ଗଙ୍ଗାଧର ନିଶ୍ଚୟ ବିହ୍ୱଳ ହୋଇ ପଡ଼ିଥିବେ । ତେଣୁ ଏହି ମନୋମତ ବିଷୟଟିରେ କଳ୍ପନା ଶକ୍ତି ବିନିଯୋଗ କରିବା ଯେ ଏକ ପ୍ରୀତିପ୍ରଦ କର୍ମ ହେବ, ଏହି ଧାରଣା ତାଙ୍କର ଦୃଢ଼ୀଭୂତ ହୋଇଥିବ, ଏଭଳି ଅନୁମାନ କରାଯାଇପାରେ 'ପ୍ରଣୟ ବଲ୍ଲରୀ'ର ପଞ୍ଚମ ସର୍ଗରୁ ଭାଗ୍ୟବାଦ ସମ୍ପର୍କରେ କବିଙ୍କର ଅଭିମତ ଅନ୍ୱେଷଣ କରାଯାଇପାରେ । ପ୍ରଣୟ-ମୁଗ୍ଧା, ଆଶା-ନୈରାଶ୍ୟର ଚଳଚଞ୍ଚଳିତ ସ୍ଥିତି ମଧ୍ୟରେ ସଞ୍ଚରଣଶୀଳା ଶକୁନ୍ତଳାର ଉପଦେଷ୍ଟା ଭାବରେ ଆମେ ଭାଗ୍ୟବାଦୀ ଗଙ୍ଗାଧରଙ୍କୁ ହିଁ ଦେଖିବାକୁ ପାଇଥାଉଁ ।$ ଭାଗ୍ୟ-ବିଡ଼ମ୍ବନାର

---

* ଗଙ୍ଗାଧର ଗ୍ରନ୍ଥାବଳୀ—ପୃ. ୯୨ / ୯୩ ।

$ "ବୃଥା କର୍ପା ଏତେ / ଭାବନା ଭାବନ ! / ଭବିତବ୍ୟ ଅଛୁ ଆନ, ଭବିଷ୍ୟତ ପୁର / ପ୍ରବେଶ କ୍ଷମତା / ଲଭିନାହିଁ ନରଜନ । [ ଗଙ୍ଗାଧର ଗ୍ରନ୍ଥାବଳୀ—ପୃ. ୯୮ ]

ଏହି ସ୍ୱରଟି ରାଧାନାଥଙ୍କର 'ପାର୍ବତୀ' କାବ୍ୟରେ ମଧ୍ୟ ଦେଖିବାକୁ ମିଳେ ।★ କେବଳ ସେତିକି ନୁହେଁ । ଶକୁନ୍ତଳା-ଗ୍ରହଣ ଅସ୍ୱୀକୃତ ଦୁଷ୍ମନ୍ତ ଯେତେବେଳେ ଶାର୍ଙ୍ଗରବଙ୍କୁ କୋଧ ପରିହାର କରି ଧୀରସ୍ଥିର ଚିତ୍ତରେ ପରିସ୍ଥିତିଟିକୁ ବିଶ୍ଳେଷଣ କରିବାକୁ ଅନୁରୋଧ ଜଣାଇଛନ୍ତି, ସେତେବେଳେ ମଧ୍ୟ ଶାର୍ଙ୍ଗରବଙ୍କ କଣ୍ଠରୁ ସେଇ ଭାଗ୍ୟ-ବାଦର ବନ୍ଦନା ନିର୍ଗତ ହୋଇଛି ।✳ 'ପାର୍ବତୀ' କାବ୍ୟରେ ଏହାର ସମାନ୍ତରାଳ ବର୍ଣ୍ଣନା ଏକାନ୍ତ ଦୁର୍ଲଭ ନୁହେଁ ।$ ରାଧାନାଥଙ୍କର 'ଭବିତବ୍ୟ'ଟି ଗଙ୍ଗାଧରଙ୍କ ବର୍ଣ୍ଣନାରେ 'କର୍ମଫଳ' ରୂପେ କେବଳ ଯାହା ପରିବର୍ତ୍ତିତ ହୋଇଛି । ରାଧାନାଥଙ୍କର ଭାଗ୍ୟ-ବାଦ ପାଶ୍ଚାତ୍ୟ ଦେଶ-ସଂଗୃହୀତ ଏବଂ ଗଙ୍ଗାଧରଙ୍କର କର୍ମଫଳ ପରିବେଶଜ । ତଥାପି ଉଭୟ ମଧ୍ୟରେ କୌଣସି ପାର୍ଥକ୍ୟ ଲକ୍ଷିତ ହୁଏ ନାହିଁ ।

ଉପସଂହାରରେ 'ପ୍ରଣୟ ବଲ୍ଲରୀ' କାବ୍ୟରେ ଆମେ ଦେଖିବାକୁ ପାଉଁ ଏକ ସ୍ୱତନ୍ତ୍ର ମେହେରଙ୍କୁ, ଆତ୍ମ ବିଶ୍ୱାସର ପୂର୍ଣ୍ଣତାରେ ଯେ, ସ୍ୱୟଂ ସମ୍ପୂର୍ଣ୍ଣ । ଏହି 'ଆତ୍ମବିଶ୍ୱାସ'ର ରୂପଟି 'ପ୍ରଣୟ ବଲ୍ଲରୀ'ର ବିଷୟ ବସ୍ତୁର ବିନ୍ୟାସରେ, ରସାନୁଭୂତି ଏବଂ ପ୍ରେମାନୁଭୂତିର ମଧୁର ସମନ୍ୱୟରେ, ଚରିତ୍ର-ଯୋଜନାରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ପ୍ରୟୋଗରେ, ପ୍ରକୃତି ଏବଂ ମାନବ ଜୀବନର କ୍ଷୀର / ନୀର ସମ୍ପର୍କ ଦ୍ୟୋତନାରେ ଅଭିବ୍ୟଞ୍ଜିତ ହୋଇଅଛି । କାଳିଦାସଙ୍କର ବିଷୟବସ୍ତୁର ଅନୁସରଣ କରାଯାଇଥିଲେ ମଧ୍ୟ ସମଗ୍ର କାବ୍ୟଟିକୁ 'ରସ-ଘନ-ରୂପ ସୌନ୍ଦର୍ଯ୍ୟ' ପ୍ରଦାନ କରିବାରେ, ମେହେରଙ୍କର ମୌଳିକତାର ଅଭାବ ନାହିଁ । 'ପ୍ରଣୟ ବଲ୍ଲରୀ'ର ସ୍ୱତନ୍ତ୍ର ସୌନ୍ଦର୍ଯ୍ୟର ବନ୍ଦନା କରିବାକୁ ଯାଇ ଅଧ୍ୟାପକ ଡଃ ନଟବର ସାମନ୍ତରାୟ ଏଥିରେ ଦୁଇଟି ପ୍ରଶଂସନୀୟ ଉପାଦାନ ରହିଥିବାର ଲକ୍ଷ୍ୟ କରିଅଛନ୍ତି । ✿ ପ୍ରତ୍ୟେକ କ୍ଷେତ୍ରରେ ଆହୃତ-ବିଷୟର ସଂକ୍ଷିପ୍ତ ରୂପ ଯେ ପ୍ରକଟିତ ହୋଇଛି ତାହା ନୁହେଁ । ପ୍ରୟୋଜନ ବୋଧରେ ସଂକ୍ଷିପ୍ତ ବିଷୟ ମଧ୍ୟ ବିସ୍ତୃତ ହୋଇଛି । ମାତ୍ର ଗଙ୍ଗାଧର ଯାହା କରିଛନ୍ତି, ତାହା ଔଚିତ୍ୟର ସୀମା ମଧ୍ୟରେ ରହି କରିଛନ୍ତି । ସମଗ୍ର 'ପ୍ରଣୟ ବଲ୍ଲରୀ' କାବ୍ୟ ଏହି ଔଚିତ୍ୟବୋଧର ସ୍ପର୍ଶରେ ଦୀପ୍ତିମନ୍ତ ।

---

★ "ସେହି ପାଇଁ ସିନା / ଶ୍ରୀହସ୍ତେ ରଖନ୍ତି / ଅଜ୍ଞେୟ ଅଦୃଷ୍ଟ କହି,
ଯା ଭେଦ ନପାଇ / ଭାବି ଭାବି ବଣା / ହୁଅନ୍ତି ଜୀବ ବିରହି । [ ଗଙ୍ଗାଧର ଗ୍ରନ୍ଥାବଳୀ ପୃ ୧୦୬ ]

✳ "କର୍ମ ଫଳ ପ୍ରାଣୀ / ଅବଶ୍ୟ ଭୁଞ୍ଜଇ / କେ କରିପାରିବ ଆନ,
ଶତ ପ୍ରତିରୋଧ / ଲଂଘି ପଶିଥାଏ / କର୍ମଫଳ ବଳବାନ ।
ରହ ଶକୁନ୍ତଳା / ଧର୍ମ ଅନୁସରି / କର୍ମଫଳ କର ଭୋଗ—" [ ଗଙ୍ଗାଧର ଗ୍ରନ୍ଥାବଳୀ ପୃ, ୧୦୧ ]

$ ଭବିତବ୍ୟ ଯାହା / ଅବଶ୍ୟ ଘଟିବ / କିଏ ତା କରିବ ଆନ ?
କିଏ ଅବା ଏହି ଜ୍ୟୋତି-ସ୍ତୃତ-ଚିତ / ରୋଧିବାକୁ ବଳବାନ ? [ ଗଙ୍ଗାଧର ଗ୍ରନ୍ଥାବଳୀ ପୃ. ୧୦୬ ]

✿ "ବିଷୟ ବର୍ଣ୍ଣନାରେ ସଂକ୍ଷିପ୍ତତା ବା ସଂଯମଶୀଳତା ଓ କାବ୍ୟ-ସୌନ୍ଦର୍ଯ୍ୟ ପ୍ରଚଷ୍ଟାରେ ଔଚିତ୍ୟ-ବୋଧ ଏ କାବ୍ୟର ରସ-ଘନ-ରୂପ ପରିବେଷଣ କରିବାରେ ବେଶ ସହାୟକ ହୋଇ ଉଠିଛନ୍ତି—"
[ ଗଙ୍ଗାଧର ସାହିତ୍ୟ ସମୀକ୍ଷା : ପୃ. ୬୪ ]

ତପସ୍ୱିନୀ ୧୯୧୫ ସାଲରେ ପ୍ରକାଶିତ ହେଲେ ମଧ୍ୟ ୧୯୧୩ ସାଲ ବେଳକୁ ଏହାର ରଚନା ସମାପ୍ତି ହୋଇଯାଇଥିଲା । (୧) ଗଙ୍ଗାଧର ପତ୍ରାବଳୀର ନ ୩୬ ମ୍ବର ପତ୍ରରେ ଏହାର ପ୍ରଥମ ଉଲ୍ଲେଖ ଦେଖିବାକୁ ମିଳୁଛି ଏବଂ ତୃତୀୟ ସର୍ଗ ଶେଷ ହୋଇ ଯାଇଥିବାର ସୂଚନା ପ୍ରଦତ୍ତ ହୋଇଛି । (୨) ଏହାର ପରବର୍ତ୍ତୀ ଉଲ୍ଲେଖ ନଂ ୩୮ର ପତ୍ରରେ । ଏଠାରେ ୪ର୍ଥ ସର୍ଗ ପୂର୍ଣ୍ଣ ହୋଇ-ଥିବାର ସମ୍ବାଦ ଦିଆଯାଇଛି । (୩) ଶ୍ରୀ ବ୍ରଜମୋହନ ପଣ୍ଡା ଏ ସମ୍ବାଦ ପାଇ କବିଙ୍କୁ ସାଧୁବାଦ ଜଣାଇଥିବାର ପରବର୍ତ୍ତୀ ପତ୍ରରୁ ଦେଖିବାକୁ ମିଳୁଛି । 'ତପସ୍ୱିନୀ' ପରିକଳ୍ପନାର ଏକ ସୂଚନା ମଧ୍ୟ ଏଥିରେ ଦିଆଯାଇଛି । (୪) ଏହାର ପରବର୍ତ୍ତୀ ପତ୍ରରେ 'ତପସ୍ୱିନୀ'ର କଳେବର ବୃଦ୍ଧି ପାଉଥିବାର ସମ୍ବାଦ ଦିଆଯାଇଛି । (୫) ପରିକଳ୍ପନାରେ କିଛି ପରିବର୍ତ୍ତନ କରିଯାଇ 'ତପସ୍ୱିନୀ'କୁ ୮ ସର୍ଗ ପର୍ଯ୍ୟନ୍ତ ବିସ୍ତୃତ କରିବାର ଯୋଜନା ଶ୍ରୀ ବ୍ରଜମୋହନ ପଣ୍ଡାଙ୍କୁ ଜଣାଇ ଦିଆଯାଇଛି । ତା ୧୬ । ୮ । ୧୨ ରିଖର ପତ୍ରରେ ୮ ସର୍ଗ ବୃଦ୍ଧି ପାଇ ୯ ସର୍ଗ ହେବାର କଳ୍ପନା ପ୍ରକଟିତ ହୋଇଛି । (୬) ସେହି ବର୍ଷ ପୂଜା ପୂର୍ବରୁ ଗ୍ରନ୍ଥଟିର ସମାପ୍ତି ହୋଇଯାଇପାରେ ବୋଲି ମଧ୍ୟ ସେହି ପତ୍ରରେ ଉଲ୍ଲିଖିତ ହୋଇଛି ।

ତା ୨୨ । ୮ । ୧୨ ରିଖର ପତ୍ରରେ 'ତପସ୍ୱିନୀ'ର ୬ଷ୍ଠ ସର୍ଗ ଲେଖା ଚାଲିଥିବାର ସମ୍ବାଦ ଦିଆଯାଇଛି । (୭) ସେପ୍‌ଟେମ୍ବର ମାସରେ 'ଅଷ୍ଟମ ସର୍ଗ'ର ୭୬ ପଂକ୍ତିରେ ଲେଖା ସ୍ଥଗିତ ଥିବାର ସୂଚନା ଦିଆଯାଇଛି । (୮) ସେହି ମାସରେ 'ଅଷ୍ଟମ ସର୍ଗ' ପ୍ରାୟ ଶେଷ ହୋଇଯାଇ ନବମ ସର୍ଗରେ ବେଶୀ ଦିନ ଲାଗିବ ନାହିଁ ବୋଲି କୁହାଯାଇଛି । (୯) ସେପ୍‌ଟେମ୍ବର ଶେଷବେଳକୁ ନବମ ସର୍ଗର ୧୫୦ ପଂକ୍ତି ରଚିତ ହୋଇଯାଇଛି । ଏହିଠାରେ କାବ୍ୟଟିକୁ ଶେଷ କରିଦେବାର ଏକ କଳ୍ପନା ମଧ୍ୟ ସେତେବେଳ ପର୍ଯ୍ୟନ୍ତ କବିଙ୍କର ରହିଥିବାର ଜଣାଯାଉଛି । (୧୦) ନଭେମ୍ବର ମାସରେ ପୁଣି ସର୍ଗ ବୃଦ୍ଧିର ସମ୍ବାଦ ଦେଖିବାକୁ ମିଳୁଛି । (୧୧) ତା ୨୫ । ୭ । ୧୩ ରିଖ ବେଳକୁ 'ତପସ୍ୱିନୀ' କେବଳ

---

୧ । ଗଙ୍ଗାଧର ପତ୍ରାବଳୀ—ପୃ. ୧୨୩ — ୨୪ । ୮ । ୧୩ର ପତ୍ର ।

୨ । ଗଙ୍ଗାଧର ପତ୍ରାବଳୀ—ପୃ. ୭୯ — ୧୫ । ୬ । ୧୨ର ପତ୍ର ।

୩ । ଗଙ୍ଗାଧର ପତ୍ରାବଳୀ—ପୃ. ୮୩

୪ । "ତପସ୍ୱିନୀ" ୪ର୍ଥ ସର୍ଗ ପୂର୍ଣ୍ଣ ହୋଇଅଛି । ଅଳ୍ପ ସୁଖର ବିଷୟ ନୁହେଁ । ଆଉ ସର୍ଗେ ମାତ୍ର ଅବଶିଷ୍ଟ । X X 'ଅଯୋଧ୍ୟା ଦୃଶ୍ୟ' 'ଲକ୍ଷ୍ମଣ ଶକ୍ତିଶେଳ' ଓ 'ତପସ୍ୱିନୀ'କୁ ଜମାନ୍ୟସ୍ୱରେ ରଖି ରାମାୟଣଗାଥା ପ୍ରକାଶ କରିବା—" [ ଗଙ୍ଗାଧର ପତ୍ରାବଳୀ ପୃ. ୮୬ ]

୫ । ଗଙ୍ଗାଧର ପତ୍ରାବଳୀ — ପୃ. ୮୮ ।

୬ । ଗଙ୍ଗାଧର ପତ୍ରାବଳୀ—ପୃ. ୯୦ ।

୭ । ଗଙ୍ଗାଧର ପତ୍ରାବଳୀ—ପୃ. ୯୩

୮ । ଗଙ୍ଗାଧର ପତ୍ରାବଳୀ—ପୃ, ୯୬ ।

୯ । ଗଙ୍ଗାଧର ପତ୍ରାବଳୀ—ପୃ. ୯୯ ।

୧୦ । ଗଙ୍ଗାଧର ପତ୍ରାବଳୀ—ପୃ. ୧୦୪ ।

୧୧ । ଗଙ୍ଗାଧର ପତ୍ରାବଳୀ —ପୃ. ୧୦୭ ।

୨୦ / ୩୦ ପଂକ୍ତି ନିମନ୍ତେ ଅପୂର୍ଣ୍ଣ ରହିଥିବାର ସମ୍ବାଦ ଦେଖିବାକୁ ମିଳୁଛି । ☆ ଏହାପରେ ରଚନା-ସମାପ୍ତିର ଶେଷ ସମ୍ବାଦ ଦେଖିବାକୁ ମିଳୁଛି ତା ୨୫ । ୮ । ୧୩ ରିଖର ପତ୍ରରେ । ⁕ ଏତେବେଳକୁ ଏହାର କଳେବର ବୃଦ୍ଧି ପାଇ ଏକାଦଶ ସର୍ଗ ସମନ୍ୱିତ ହୋଇଅଛି ଏବଂ ପ୍ରାୟ ୩୨୩୩ ରୁ ଅଧିକ ପଂକ୍ତି ହୋଇଅଛି ।

ପ୍ରସ୍ତୁତିର ସମୟବର୍ତ୍ତିନୀର ଧାରା ମଧ୍ୟରୁ ଅନ୍ତତଃ ଗୋଟିଏ କଥା ସ୍ପଷ୍ଟ ହୋଇଯାଏ । ଏହି କାବ୍ୟଟିକୁ ଏତେ ଦୀର୍ଘ କରିବାର ଇଚ୍ଛା କବିଙ୍କର ମୂଳ-କଳ୍ପନା-ପରିସର ଭୁକ୍ତ ନଥିଲା । ଲିଖନୋଟି ପର୍ଯ୍ୟାୟରେ କବି ଏହାର ଅଂଶ ବୃଦ୍ଧି ଘଟାଇଛନ୍ତି । ନବମ ସର୍ଗ ରଚିତ ହେଲା ବେଳକୁ ମଧ୍ୟ ଆଉ ଦୁଇଟି ସର୍ଗ ଏଥିରେ ସଂଯୋଜିତ ହେବ, ଏହା କବି ଚିନ୍ତାକରି ନାହାନ୍ତି । ପ୍ରଥମ ୯ଟି ସର୍ଗ ରଚନାରେ ୩/୪ ମାସ ମାତ୍ର ଲାଗିଥିବା ସ୍ଥଳେ—ଶେଷ ଦୁଇ ସର୍ଗ ରଚନାରେ ପ୍ରାୟ ପାଖାପାଖି ଏଗାର ମାସ ସମୟ ନିଆଯାଇଛି । ପୂର୍ବ-ପରିକଳ୍ପନା ନଥିବାରୁ ଚିନ୍ତା ନିମନ୍ତେ ଏହି ସମୟ ନିଆଯାଇ ଥିବାର ଅନୁମାନ କରାଯାଇପାରେ । ସମଗ୍ର କାବ୍ୟଟି ରଚିତ ହେବା ନିମନ୍ତେ ବର୍ଷେରୁ କିଛି ଅଧିକ ସମୟ ଲାଗିଥିବାର ଜଣାଯାଏ ।

'ତପସ୍ୱିନୀ' ମେଧାବୀର ପ୍ରତିଭାର ଶୀର୍ଷବିନ୍ଦୁ । ଏହାପରେ ଆଉ କୌଣସି କାବ୍ୟ ତ ରଚିତ ହୋଇନାହିଁ । 'ଅର୍ଘ୍ୟଥାଳୀ', 'କୃଷକ ସଙ୍ଗୀତ' ଏବଂ 'କବିତାମାଳା' ଯଦିଓ ପ୍ରକାଶିତ କିନ୍ତୁ କବିତାର ସଂକଳନ ମାତ୍ର । ଏଥିରେ ବିଲୟମୁଖୀ କବି ପ୍ରତିଭାର ଇଙ୍ଗିତ ମାତ୍ର ରହିଛି । 'ତପସ୍ୱିନୀ' ରଚିତ ହେବାର ଦୀର୍ଘ ଏଗାର ବର୍ଷ ପର୍ଯ୍ୟନ୍ତ କବି ବଞ୍ଚି ରହିଥିଲେ ମଧ୍ୟ ପ୍ରତିଭାର ନିର୍ଝର ଶୁଖିଯାଇଛି । ତେଣୁ 'ତପସ୍ୱିନୀ'କୁ ମେଧାବୀର କାବ୍ୟ କୋଣାର୍କର ଚୂଡ଼ା ବୋଲି ଗ୍ରହଣ କରାଯାଇପାରେ । ପ୍ରତିଭା ସ୍ଫୁରଣର ଶେଷ ପର୍ଯ୍ୟାୟରେ କବି-ଶକ୍ତି ଶେଷ ସୂର୍ଯ୍ୟର କମନୀୟ ବିଭାରେ ମଣ୍ଡିତ ହୋଇଥିଲା । 'ପ୍ରଣୟ ବଲ୍ଲରୀ' ଏବଂ 'ତପସ୍ୱିନୀ' ଏହି କମନୀୟତାର ଜ୍ୱଳନ୍ତ ସ୍ୱାକ୍ଷର । ପ୍ରଥମ କାବ୍ୟଟି ନିମନ୍ତେ 'ବ୍ୟାସ-କାଳିଦାସ' ଆଦର୍ଶରୂପେ ଗୃହୀତ ହୋଇଥିଲେ ହେଁ, ଶେଷ କାବ୍ୟରେ କବି-ପ୍ରତିଭା ସ୍ୱଚ୍ଛନ୍ଦ-ବିହାରୀ ହୋଇଅଛି । 'ଇନ୍ଦୁମତୀ'ର ସୀମିତ ପରିସର ମଧ୍ୟରେ କବି ପ୍ରତିଭାର ଯେଉଁ ଆଦ୍ୟ ଓଁକାର ଧ୍ୱନି ନିର୍ଗତ ହୋଇଥିଲା, 'କୀଚକ ବଧ' ତଥା 'ପ୍ରଣୟ ବଲ୍ଲରୀ' ମଧ୍ୟ ଦେଇ ତାହାର ଗମ୍ଭୀର ସାରସ୍ୱତ ଝଙ୍କାର ପରିପୂର୍ଣ୍ଣତା ପ୍ରାପ୍ତ ହୋଇଥିଲା । 'ତପସ୍ୱିନୀ' ଏହି ଝଙ୍କାରର ଶେଷ ଅନୁରଣନ । ଏକ ସୁଗୀତ-ସଂଗୀତର କୃତିତ୍ୱ ଅନେକ ପରିମାଣରେ ଏହାର ଶେଷ ଅଂଶର ପ୍ରଭାବ ଉପରେ ନିର୍ଭରଶୀଳ ହୋଇଥାଏ । 'ତପସ୍ୱିନୀ' ଏ ଦୃଷ୍ଟିରୁ ଅନେକାଂଶରେ ସାର୍ଥକ । 'ଇନ୍ଦୁମତୀ'ଠାରୁ 'ତପସ୍ୱିନୀ' ପର୍ଯ୍ୟନ୍ତ ପଥ ବହୁଦୂର । ସମୟର ସୀମା ମଧ୍ୟ ସେଇଭଳି ବିସ୍ତୃତ । ଏହାର ମଧ୍ୟରେ କବି ତିଳେ ତିଳେ କରି ନିଜକୁ ପ୍ରସ୍ତୁତ କରିଛନ୍ତି । ନିର୍ମାଣ କରିଛନ୍ତି ନିଜର ଏକ ସ୍ୱତନ୍ତ୍ର କାବ୍ୟଶୈଳୀ । ଅବସନ୍ନତା / ନୈରାଶ୍ୟ ଯେ ଏ ମଧ୍ୟରେ ଆସି ନାହିଁ, ତାହା ନୁହେଁ । କିଛିକାଳ ନିମନ୍ତେ କବି ନୀରବ ରହିଯାଇଛନ୍ତି । ପୁନର୍ବାର ନବ-ପ୍ରେରଣାରେ ସେ ସାରସ୍ୱତ-ସେବାରେ ବ୍ରତୀ ହୋଇଛନ୍ତି, ଫଳ ଫଳ କରି ସଂଗ୍ରହ କରିଛନ୍ତି, ଆତ୍ମ-ବିଶ୍ୱାସ । ରାଧାନାଥଙ୍କ ଉପଦେଶ ସବୁ ସମୟରେ ତାଙ୍କର ହୃତ ଉତ୍ସାହକୁ ଫେରାଇଦେଇଛି ।

---

☆ । ଗଙ୍ଗାଧର ପତ୍ରାବଳୀ—ପୃ. ୧୨୨ ।

⁕ । ଗଙ୍ଗାଧର ପତ୍ରାବଳୀ—ପୃ. ୧୨୩ ।

‘ଉତ୍କଳ ଲକ୍ଷ୍ମୀ’ର ପାଣ୍ଡୁଲିପି ପାଠରେ ପ୍ରୀତ ରାଧାନାଥ ଲେଖିଥିଲେ, “କେହି ପ୍ରତିକୂଳ ମତ ଦେଲେ ସେଥିରେ ଭ୍ରୂକ୍ଷେପ କରିବା ଅନୁଚିତ । ପ୍ରତିଷ୍ଠା ବୃଦ୍ଧି ସଙ୍ଗେ ସଙ୍ଗେ ଆପଣଙ୍କର ଅନେକ ଅନିବଂଧନ ବାନ୍ଧବ ଏବଂ ଅନିବଂଧନ ଶତ୍ରୁ ବାହାରିବେ । ଏଥିପାଇଁ ଆପଣ ପୂର୍ବରୁ ପ୍ରସ୍ତୁତ ଥିବା ଭଲ —” [ କବିଲିପି — ପୃ. ୬୮ ] । ଗଙ୍ଗାଧର ଅଜାତ ଶତ୍ରୁ ଥିଲେ । କେବଳ ମାତ୍ର ‘ଉତ୍କଳ ଲକ୍ଷ୍ମୀ’ର ଆଲୋଚନାରେ ତାଙ୍କୁ ମୃଦୁ-ଭର୍ତ୍ସନା ଦିଆଯାଇଥିଲା । ଉପରୋକ୍ତ ବାକ୍ୟରେ ‘ରାଧାନାଥୀ-ବଂଦନା’ ଏହାର କାରଣ ହୋଇପାରେ । ସେହି ସମୟରେ ଏକ ବିତୃଷ୍ଣା କବିଚିତ୍ତକୁ କିଛିକାଳ ଆଚ୍ଛନ୍ନକରି ରଖିଥିଲେ ହେଁ, ଏହା ଦୀର୍ଘକାଳୀନ ନଥିଲା । ଆତ୍ମ-ବିଶ୍ୱାସ ସଂଗ୍ରହରେ କବି ପୁନର୍ବାର ଉଦ୍ୟମୀ ହୋଇଥିଲେ । ‘ତପସ୍ୱିନୀ’ ସଂଗୃହୀତ ଆତ୍ମ-ବିଶ୍ୱାସର ପରିପୂର୍ଣ୍ଣ ରୂପ ।

‘ତପସ୍ୱିନୀ’ର ସୃଷ୍ଟି ପରିକଳ୍ପନାରେ କବିଙ୍କର ସର୍ବୈକ ପ୍ରାଣତା ବିଦ୍ୟମାନ । ଆମେ ପୂର୍ବରୁ କହିଛୁଁ ଯେ ରସସୃଷ୍ଟି ମଧ୍ୟରେ ‘କରୁଣ ରସ’ ହିଁ କବିଚିତ୍ତର ମମତା ଲାଭ କରିଥିଲା, ଅଧିକ ବେଶୀ । ରାମ-ପତ୍ନୀ ସୀତାଙ୍କର ବନବାସ-ଜୀବନ ବର୍ଣ୍ଣନା କରିବାରେ ଏହି ଦୁଇଟି ଯାକ ଅନୁକୂଳତା ବିଦ୍ୟମାନ ଥିବାରୁ ଏଭଳି ଏକ ବିଷୟକୁ କାବ୍ୟ-ପରିସର ଭୁକ୍ତ କରିବା ନିମନ୍ତେ କବି ଉତ୍ସାହୀ ହୋଇଥିବେ, ଏଭଳି କଳ୍ପନା ଯୁକ୍ତିପୂର୍ଣ୍ଣ ନୁହେଁ । ‘ସୀତା’ଙ୍କର ତପସ୍ୱିନୀରୂପଟି ‘ରଘୁବଂଶ’ରୁ ସଂଗୃହୀତ ହୋଇଥିବ । ରଘୁବଂଶର ଚତୁର୍ଦ୍ଦଶ ସର୍ଗରେ ଅଛି—

“ସାହଂ ତପଃ ସୂର୍ଯ୍ୟ-ନିବିଷ୍ଟ ଦୃଷ୍ଟିରୂର୍ଦ୍ଧ୍ୱଂ
ପ୍ରସୂତେଶ୍ଚରିତୁଂ ଯତିଷ୍ୟେ,
ଭୂୟୋ ଯଥା ମେ ଜନନାନ୍ତରେଽପି ତ୍ୱମେବ
ଭର୍ତ୍ତା ନ ଚ ବିପ୍ରଯୋଗଃ ॥ ୧୪।୬୬ ॥
ନୃପସ୍ୟ ବର୍ଣ୍ଣାଶ୍ରମ-ପାଳନଂ ଯତ୍ସ ଏବ
ଧର୍ମୋ ମନୁନା ପ୍ରଣୀତଃ,
ନିର୍ବାସିତାପ୍ୟେବମତସ୍ତ୍ୱୟାହଂ
ତପସ୍ୱି ସାମାନ୍ୟ ମବେକ୍ଷଣୀୟା ॥ ୧୪।୬୭ ॥

× × × × ×

ଫଳାଭିଷେକ ପ୍ରଯତା ବସନ୍ତୀ
ପ୍ରଯୁକ୍ତ ପୂଜା ବିଧିନାତିଥିଭ୍ୟଃ,
ବନ୍ୟେନ ସା ବଲ୍କଳିନୀ ଶରୀରଂ
ପତ୍ୟୁଃ ପ୍ରଜାସନ୍ତତୟେ ବଭାର ॥ ୧୪।୮୨ ॥

ଉପରୋକ୍ତ ତିନୋଟି ଉଦ୍ଧୃତିରେ କାଳିଦାସ ‘ତପସ୍ୱିନୀ’ ସୀତାଙ୍କର ଏକ କରୁଣ-ଗମ୍ଭୀର ମୂର୍ତ୍ତିର ପରିକଳ୍ପନା କରିଅଛନ୍ତି । ପ୍ରଥମ ଉଦ୍ଧୃତିଟିରେ ସୂର୍ଯ୍ୟ-ନିବଦ୍ଧ ଦୃଷ୍ଟି ଜନ୍ମାନ୍ତରରେ ମଧ୍ୟ ପତିମିଳନ-ପ୍ରୟାସୀ ସୀତାଙ୍କର ‘ତପସ୍ୱିନୀ’ ମୂର୍ତ୍ତିର କଳ୍ପନା କରାଯାଇଅଛି । ଦ୍ୱିତୀୟ ଉଦ୍ଧୃତିଟିରେ ପତ୍ନୀର ଗୌରବରେ ନୁହେଁ, ‘ତପସ୍ୱିନୀ’ର କାରୁଣ୍ୟରେ ସୀତା ରାମଚନ୍ଦ୍ରଙ୍କ ଦ୍ୱାରା ରକ୍ଷଣୀୟା ବୋଲି ନିବେଦନ ପ୍ରକଟିତ ହୋଇଛି । ଶେଷ ଉଦ୍ଧୃତିଟିରେ ବଲ୍କଲ ବାସ-ଧାରିଣୀ ତପସ୍ୱିନୀ ସୀତାଙ୍କର କରୁଣ

ଭାବ ଗମ୍ଭୀର ମୂର୍ତ୍ତିର ପରିକଳ୍ପନା କରାଯାଇଅଛି । 'ଇନ୍ଦୁମତୀ' ରଚନା କାଳରେ ମେହେର ଅବଶ୍ୟ 'ରଘୁବଂଶ' କାବ୍ୟଟିକୁ ଭଲଭାବେ ଅଧ୍ୟୟନ କରିଥିବେ । ତେଣୁ ବିଷୟବସ୍ତୁ ତଥା ନାମକରଣ ନିମନ୍ତେ 'ତପସ୍ୱିନୀ' କାବ୍ୟ ମଧ୍ୟ 'ରଘୁବଂଶ'ର ପ୍ରେରଣା ସଂଗ୍ରହ କରିଥିବ, ଏଭଳି ଅନୁମାନ ଅଯୌକ୍ତିକ ନୁହେଁ ।

ରାବଣ-ଗୃହ ନିବାସିନୀ ସୀତା ଲୋକାପବାଦ ଆଶଙ୍କାରେ 'ଲଙ୍କାରେ' ରାମଚନ୍ଦ୍ରଙ୍କ ଦ୍ୱାରା ଅଗ୍ନିରେ ପରୀକ୍ଷିତା ହୋଇଥିଲେ । ସୀତାଙ୍କର ଏହି ପରୀକ୍ଷାର ସମ୍ବାଦ କିନ୍ତୁ ଅଯୋଧ୍ୟାରେ ଉଦାର ଭାବରେ ଗୃହୀତ ହୋଇ ନଥିଲା । ଯେଉଁ 'ଆଶଙ୍କା ଉପରେ ଅଗ୍ନି ପରୀକ୍ଷାର ସାବଧାନତା' ଅବଲମ୍ବନ କରାଯାଇ ଥିଲା, ତାହା ବଦୁରିତ ହେଲା ନାହିଁ । ତେଣୁ ସୀତା ସେଇ 'ଲୋକାପବାଦ'ର ପ୍ରଭାବରେ ପରିତ୍ୟକ୍ତା ହେଲେ । ଅଗ୍ନିଗ୍ରସ୍ତଗୃହରୁ ଦେବାଳୟ ନିସ୍ତାର ପାଏ ନାହିଁ । ତେଣୁ ଲୋକାପବାଦ ଅଗ୍ନି ସୀତା-ଦେବାଳୟକୁ ମଧ୍ୟ ପରିହାର କରିନାହିଁ । ସୀତା ଭାଗ୍ୟ-ହସ୍ତରେ କ୍ରୀଡ଼ନକ ହୋଇ ବାଲ୍ମୀକି ଆଶ୍ରମର ଉପାନ୍ତରେ ନିର୍ବାସିତା ହୋଇଛନ୍ତି । ବିନା-କାରଣରେ ମଧ୍ୟ ତାଙ୍କୁ ତପସ୍ୟା ଦ୍ୱାରା ନିଜକୁ ପୁନର୍ବାର ପରିଶୁଦ୍ଧା କରିବାର ପ୍ରଯତ୍ନ କରିବାକୁ ପଡ଼ିଛି । ଏ ତପସ୍ୟା ନିମନ୍ତେ ବାଲ୍ମୀକି-ଆଶ୍ରମର ଶାନ୍ତ / ଶୁଦ୍ଧ ପରିବେଶ ହିଁ ଉପଯୁକ୍ତ । ଅଶାନ୍ତ-ହୃଦୟକୁ ଶାନ୍ତିର ଅମଳ ସ୍ପର୍ଶ ଦେବା ନିମନ୍ତେ ଯେଉଁ ପରିବେଶର ପ୍ରୟୋଜନ ବାଲ୍ମୀକି ଆଶ୍ରମରେ କେବଳ ତାହା ସୁଲଭ । ସେଇଠାରେ ପୁଣି ସୀତା ନିଜ ଜୀବନର ଦ୍ୱିତୀୟ ଅଗ୍ନି-ପରୀକ୍ଷାର ସମ୍ମୁଖୀନା ହୋଇଛନ୍ତି । ତପସ୍ୟା ହେଉଛି ସେହି ଅଗ୍ନି, ଯାହା ସୀତାଙ୍କୁ ପରିଶୁଦ୍ଧା ଭାବରେ ପ୍ରତିଷ୍ଠିତ ହେବାର ଗୌରବ ଅର୍ପଣ କରିଛି । ରାମାୟଣ ଏବଂ ରଘୁବଂଶରୁ କଥା ଭାଗର ଏହି ଅଂଶଟି ସଂଗୃହୀତ ହୋଇଛି । ତେବେ ଆଶ୍ରମ ପରିବେଶର ଯେଉଁ ସମ୍ବେଦନଶୀଳ ରୂପଟି ମେହେର ବର୍ଣ୍ଣନା କରିଛନ୍ତି, ସୀତାଙ୍କ ଜୀବନ ସହିତ ପ୍ରକୃତି-ଜୀବନର ଯେଉଁ ନିବିଡ଼ତର ସମ୍ବନ୍ଧ ମେହେର ରଚନାରେ ପ୍ରକଟିତ ହୋଇଛି, ତାହାର ପରିକଳ୍ପନା ଅନେକାଂଶରେ କବିଙ୍କର ସ୍ୱ-କଳ୍ପନା ପ୍ରସୂତ । କାଳିଦାସ ମଧ୍ୟ ଚତୁର୍ଦ୍ଦଶ ସର୍ଗରେ ପ୍ରକୃତିର ସମ୍ବେଦନଶୀଳ ରୂପର ବର୍ଣ୍ଣନା କରିଅଛନ୍ତି । ତେବେ ମାତ୍ର ଗୋଟିଏ ଶ୍ଳୋକରେ ଏହି ରୂପ ପ୍ରକଟିତ ହୋଇଛି । ସୀତାଙ୍କ ଦୁଃଖରେ 'କାତର' ଆରଣ୍ୟ ପ୍ରକୃତି ରଘୁବଂଶରେ ନିମ୍ନ ଭାବରେ ବର୍ଣ୍ଣିତ । ଯଥା:—

> ନୃତ୍ୟଂ ମୟୂରାଃ କୁସୁମାନିବୃକ୍ଷା
>                 ଦର୍ଭାନୁପାତାନ୍ ବିଜହୁର୍ହରିଣ୍ୟଃ,
> ତସ୍ୟାଃ ପ୍ରପନ୍ନେ ସମଦୁଃଖ ଭାବ—
>                 ମତ୍ୟନ୍ତ ମାସୀ ଦ୍ରୁଦିତଂ ବନେଽପି ॥ ୧୪।୬୯ ॥

ଏହି ପରିବେଶ ବର୍ଣ୍ଣନା ନିମନ୍ତେ ଗଙ୍ଗାଧର କଳ୍ପନା କରିଛନ୍ତି ତିରିଶ ଗୋଟି ପଦର ଏବଂ ଏଗୁଡ଼ିକ ପ୍ରାୟ କବିଙ୍କର ମୌଳିକ କଳ୍ପନା ପ୍ରସୂତ । ଚତୁର୍ଥ ସର୍ଗରେ ଆଶ୍ରମ-ପ୍ରକୃତିର ଯେଉଁ ରମ୍ୟ-ରୂପ-ବିଭବ ପରିକଳ୍ପିତ ହୋଇଛି ତାହାର କଳ୍ପନା ମଧ୍ୟ କବିଙ୍କର ନିଜସ୍ୱ । ସାଧାରଣ ସମ୍ବେଦନା ମାତ୍ର ଦେଖାଇ ପ୍ରକୃତି ନିରସ୍ତ ରହି ନାହିଁ । ସୀତାଙ୍କର ଦୁଃଖ ସହିତ ନିଜକୁ ସମ୍ପୂର୍ଣ୍ଣ ଭାବରେ ମିଶାଇ ଦେଇଛି । ଏଇ କ୍ଷୀର-ନୀର ମିଶ୍ରଣ ହିଁ ସାହିତ୍ୟ-କଳାରେ 'Involvement'ର ରୂପ ନେଇଛି । ପ୍ରକୃତି ହୋଇଛି ସୀତାଙ୍କର 'Friend Philosopher and Guide' । ଏଇ ବନ୍ଧୁ ନିକଟରେ ପୁଣି

ମନକଥା ସବୁ କହିବାକୁ ଲାଗେ ସୁଖ * । ତେଣୁ ସମ୍ବେଦନଶୀଳା ପ୍ରକୃତି ନିକଟରେ ଆତ୍ମନିବେଦନ-ତତ୍ପର-ସୀତାଙ୍କ ରୂପ-ବିଭବ ପୁଷ୍ଟି ଲଭିଛି କମନୀୟତାର ସମସ୍ତ ଲାଳିତ୍ୟ ନେଇ । ଏଇ ପ୍ରକୃତିର ପୃଷ୍ଠଭୂମିକାରେ କେବଳ ସୀତାଙ୍କ ଚରିତ୍ର ନୁହେଁ, ସମଗ୍ର କାବ୍ୟଟିର ସୃଷ୍ଟି-ସୌନ୍ଦର୍ଯ୍ୟ ଉକୁଟି ଉଠିଛି । ଓଡ଼ିଆ ସାହିତ୍ୟରେ ଏହି ସ୍ୱାତନ୍ତ୍ର୍ୟର ତୁଳନା ନାହିଁ । ମେହେର କବିଙ୍କର ଏହାହିଁ ହେଉଛି ସବୁଠାରୁ ବଡ଼ କୃତିତ୍ୱ ।

ଅଦୃଷ୍ଟବାଦ ଉପରେ ମେହେରଙ୍କର ଥିଲା ଗଭୀର ବିଶ୍ୱାସ । ଜୀବନସାରା ନିଷ୍ପୀଡ଼ିତ ହୋଇ ରହିବା ଫଳରେ ହିଁ ଏହି ବିଶ୍ୱାସ ଆପେ ଆପେ ଗଢ଼ି ଉଠିଥିଲା । ସମଗ୍ର ମେହେର ସାହିତ୍ୟ ଉପରେ ଦୃକ୍‌ପାତ କଲେ କବିଜୀବନ ସେଥିରେ କିପରି ପ୍ରକଟିତ ତାହା ଜଣା ଯାଇଥାଏ । ଇନ୍ଦୁମତୀ / ପ୍ରଣୟ ବଲ୍ଲରୀ / କୀଚକ ବଧ ପ୍ରଭୃତିରେ ଏହି 'ଅଦୃଷ୍ଟ' ମୁଖ୍ୟ ଭୂମିକା ଗ୍ରହଣ କରିଥିବାର ଦେଖିବାକୁ ମିଳୁଛି । ତେଣୁ କୁହାଯାଇପାରେ, ଯେଉଁଠାରେ କବି ଅଦୃଷ୍ଟବାଦ ସମ୍ପର୍କରେ କିଛି ସୂଚନା ପାଇଛନ୍ତି, ତାହାକୁ ଅବଲମ୍ବନ କରି କାବ୍ୟ ରଚନା କରିବା ନିମନ୍ତେ ଉଦ୍ୟମୀ ହୋଇ ଅଛନ୍ତି । 'ତପସ୍ୱିନୀ' କାବ୍ୟରେ ଏହି ଅଦୃଷ୍ଟବାଦ ପୁଣି 'ନିୟତି' ରୂପରେ ପ୍ରକଟିତ । କାବ୍ୟର ମୁଖ୍ୟ ଦୁଇ ଚରିତ୍ର ଏହାର ପ୍ରଭାବରୁ ମୁକ୍ତ ନୁହନ୍ତି । 'ନିୟତି'ର 'କ୍ରୀଡ଼ନକ' ବ୍ୟବହାର ହିଁ ରାମ / ସୀତା ଜୀବନର ସମସ୍ତ ପ୍ରକାର Tragedy ର ସ୍ରଷ୍ଟା । ଏହାକୁ ଆଖି ଆଗରେ ରଖି 'ତପସ୍ୱିନୀ'ର ଆଙ୍ଗିକ-ସୌନ୍ଦର୍ଯ୍ୟ ପରିକଳ୍ପିତ । 'ତପସ୍ୱିନୀ' ର 'ମୁଖବନ୍ଧ' ରେ ସ୍ୱୟଂ କବି ଏହି ବିଷୟଟିକୁ ସ୍ପଷ୍ଟ କରି ଦେଇଛନ୍ତି । ★ ଭାଗ୍ୟ-ତାଡ଼ିତା ସୀତାଙ୍କର କାରୁଣ୍ୟ ଚିତ୍ରଣ କରିବା ନିମନ୍ତେ ମେହେର ଆଗ୍ରହୀ ହେବାର ପଛରେ ରହିଛି ଭାଗ୍ୟ ଉପରେ ତାହାଙ୍କର ଅତୁଟ ବିଶ୍ୱାସ । କବିଙ୍କର ଦୃଢ଼ ବିଶ୍ୱାସ ଥିଲା, ଦୈବୀ-ଶକ୍ତି ନିକଟରେ ମାନବୀ ଶକ୍ତିର ଦର୍ପ / ଅହମିକା ଇତ୍ୟାଦି ନିତାନ୍ତ ଦୁର୍ବଳ । 'ଭବିତବ୍ୟ' ର କବଳରୁ ମୁକ୍ତିଲାଭ କରିବା ମନୁଷ୍ୟ ପକ୍ଷରେ କୌଣସିମତେ ସମ୍ଭବ ନୁହେଁ । 'ନିୟତି'ର ଅନ୍ୟାୟ ବିରୁଦ୍ଧରେ 'ଅପିଲ' କରିଯାଇନପାରେ । ସୌଭାଗ୍ୟ କିମ୍ବା ଦୁର୍ଭାଗ୍ୟ ଏକାନ୍ତ କର୍ମଫଳ ଜନିତ । ତେଣୁ ସୀତାଙ୍କ କଣ୍ଠରେ ଧ୍ୱନିତ ହୋଇଛି, "ମୋ ଅର୍ଜିତ ପାପ ମୋର ଦୁଃଖର କାରଣ / ସେହି ପାପ ଏବେ ମୋର ହେଉଛି ସ୍ମରଣ ।" ଆତ୍ମ-ସ୍ୱୀକୃତିର ଅନ୍ୟ ପର୍ଯ୍ୟାୟରେ ସୀତା କହିଛନ୍ତି, "ସଖୀ ମୋ ଦୁର୍ବିପାକ / ଘଟାଇଛି ଏକା ମୋ ଦୁଃଖପାକ । ମୋ କର୍ମ ପାଇଁ ଦୋଷୀ ନୁହନ୍ତି ବିଧି / କାନ୍ତ ତ ସ୍ୱଭାବେ ମୋ କରୁଣା ନିଧି—" ସୀତାଙ୍କ ସ୍ୱରରେ ପ୍ରତିବାଦ ନାହିଁ । ଅଛି ଆତ୍ମ-ସମର୍ପଣର ଏକ ଗୀତ

---

* ମଲୟ ଆବାହନ—ଗଙ୍ଗାଧର ଗ୍ରନ୍ଥାବଳୀ : ପୃ ୨୬୭ ।

★ "ସୀତା ମିଥ୍ୟାପବାଦରେ ସ୍ୱାମୀକର୍ତ୍ତୃକ ପରିତ୍ୟକ୍ତା ହୋଇଥିଲେ ହେଁ ସ୍ୱାମୀଙ୍କ ହୃଦୟର ପ୍ରେମ ବୁଝିପାରିଥିଲେ । ସେ ନିର୍ବାସନକୁ ନିଜର ଭାଗ୍ୟଦୋଷ ବୋଲି ପତିଭକ୍ତିକୁ କିପରି ଦୃଢ଼ତର ଓ ଉଚ୍ଚତର କରିଥିଲେ—ବନବାସକୁ ପତି-ହିତ-ସାଧନା ତପସ୍ୟାରେ ପରିଣତ କରି ତପସ୍ୱିନୀ ରୂପେ କିପରି ଦିନଯାପନ କରିଥିଲେ, ତାହା ପ୍ରକଟ କରିବା ଏହି ପୁସ୍ତକର ପ୍ରଧାନ ଉଦ୍ଦେଶ୍ୟ—" ( ତପସ୍ୱିନୀ—ମୁଖବନ୍ଧ )

ପ୍ରଚେଷ୍ଟା । ଏହା କେବଳ ସୀତାଙ୍କର ନୁହେଁ, ସ୍ୱୟଂ କବିଙ୍କର ମଧ୍ୟ ଜୀବନ-ଦର୍ଶନ । 'ତପସ୍ୱିନୀ' କାବ୍ୟର ପ୍ରତ୍ୟେକ ଚରିତ୍ର ତେଣୁ ଭାଗ୍ୟ କିମ୍ବା ନିୟତିରେ ଏକାନ୍ତ ଅନୁଗତ । ଏହି ଆନୁଗତ୍ୟ ମାଧ୍ୟମରେ ସେମାନେ 'ବିଧି'ଙ୍କର କରୁଣା ଲାଭ କରିବାର ପ୍ରତ୍ୟାଶୀ । 'ନିୟତି'ର ଅଲଂଘ୍ୟ ଶାସନର ଅଧୀନତା ସ୍ୱୀକାର କରିଥିବାରୁ ଜୀବନ ପ୍ରତି ଏହି ଚରିତ୍ରଗୁଡ଼ିକର ସଂଗ୍ରାମୀ ମନୋଭାବ ପ୍ରକଟିତ ହୋଇ ପାରିନାହିଁ । ଭାରତରେ ନିୟତିର ଇଂଗିତକୁ ବରଣ କରିନେଇ ଅଜ ପତ୍ନୀଙ୍କୁ ଚିତାନଳରେ ବିଦାୟ ଦେଇ ଆସିଛନ୍ତି । ହସ୍ତିନା-ପାଟରାଣୀ ଦ୍ରୌପଦୀ ଗ୍ରହଣ କରି ନେଇଛନ୍ତି, ସୈରିନ୍ଧ୍ରୀର ଦାୟିତ୍ୱ । 'ଶକୁନ୍ତଳା' ଆତ୍ମ-ଗୋପନରେ ଚିତ୍ତଶୁଦ୍ଧିର ତପସ୍ୟା ଆରମ୍ଭ କରି ଦେଇଛନ୍ତି । ସୀତା ପ୍ରଥମେ ଅଗ୍ନିରେ ଶୁଦ୍ଧତାର ପରୀକ୍ଷା ଦେଇ ମଧ୍ୟ ଅପବିତ୍ରତାର ଦୋଷରେ ନିଃଶ୍ରୟ ଅବସ୍ଥାରେ ଅରଣ୍ୟ-ନିର୍ବାସିତା ହୋଇଛନ୍ତି । ରାମଚନ୍ଦ୍ର 'ପରଜା-ଭାତ' ଖାଇଥିବାରୁ ଅନ୍ୟାୟକୁ ଜ୍ଞାତସାରରେ ସମର୍ଥନ କରିଯାଇ ଅଯୋଧ୍ୟାର ରାଜମହଲକୁ କେବଳ ନିରର୍ଥକ ଦୀର୍ଘଶ୍ୱାସରେ ଆଚ୍ଛନ୍ନ କରିଛନ୍ତି । ଜୀବନ-ପଥରେ ଯାହା ଆସୁଛି; ତାକୁ ଗ୍ରହଣ କରିଯିବା ହେଉଛି, ମେହେରଙ୍କ ମତରେ ବୁଦ୍ଧିମାନର କାମ । ତାଙ୍କ ସୃଷ୍ଟ ଚରିତ୍ର ତେଣୁ ତାହାହିଁ କରିଛନ୍ତି । ସମଗ୍ର ସେକ୍ସପିୟର୍ ନାଟକରେ ମଧ୍ୟ 'Fate, ର ଏହି ନିରଙ୍କୁଶ କର୍ତ୍ତୃତ୍ୱଟି ପରିସ୍ଫୁଟ । ମାତ୍ର ସେକ୍ସପିୟରଙ୍କ ଚରିତ୍ର ଫେଟ୍ (Fate) ର ଦାସ ହୋଇ ସଂଗ୍ରାମୀ ମନୋବୃତ୍ତିଟିକୁ ପରିହାର କରିବା ନିମନ୍ତେ ରାଜି ନୁହନ୍ତି । ଗଙ୍ଗାଧରଙ୍କ ଭାଗ୍ୟବାଦ ସହିତ 'ରାଧାନାଥୀ' ଭାଗ୍ୟବାଦର ଅନେକଟା ସାମଞ୍ଜସ୍ୟ ବରଂ ଦେଖିବାକୁ ମିଳିବ ।

'ତପସ୍ୱିନୀ' କାବ୍ୟ କବି ପ୍ରତିଭାର ସାୟାହ୍ନ ଅବଦାନ । ଏତେବେଳକୁ ମେହେରଙ୍କ ରଚନା-ଶୈଳୀ ପରିପକ୍ୱ ହୋଇ ସାରିଥିଲା । କବି-ପ୍ରତିଭାର କଳା-ସୃଜିକା ଶକ୍ତି ପରିପୂର୍ଣ୍ଣ ରୂପରେ ଆତ୍ମପ୍ରକାଶ କରିଥିଲା । 'ରଚନା-ଶୈଳୀ' ଗୋଟିଏ କବିକୁ ଚିହ୍ନାଇବା ନିମନ୍ତେ ଯଥେଷ୍ଟ । କବିଙ୍କର ରଚନାରୁ ତାହାଙ୍କର ବ୍ୟକ୍ତିତ୍ୱର ସ୍ୱରୂପଟିକୁ ସହଜରେ ଧରି ହୋଇଯାଏ । ଯେମିତି ବାସ୍ତବ ଜୀବନରେ କବି ସରଳ ନିରାଡ଼ମ୍ବର, ତାହାଙ୍କର କାବ୍ୟ ମଧ୍ୟ ସେହିପରି ସାରଲ୍ୟ ଓ ଆଡ଼ମ୍ବରଶୂନ୍ୟତାର ଏକ ସାର୍ଥକ ପରିଚୟ । ଜୀବନଧାରାରେ ପ୍ରାଚୀନତାକୁ ପୂର୍ଣ୍ଣରୂପେ ଗ୍ରହଣ କରି ନେଇଥିଲେ ହେଁ ଆଧୁନିକତାର ମୋହରୁ ନିଜକୁ ଦୂରେଇ ନେବା କବିଙ୍କ ପକ୍ଷରେ ସମ୍ଭବ ନଥିଲା । ମୌଳିକତା ରକ୍ଷାକରି ଆଧୁନିକତାର ଅନୁସରଣ କରିବାକୁ ସେ ନିଜର ଉଦ୍ଦେଶ୍ୟରୂପେ ଗ୍ରହଣ କରି ନେଇଥିଲେ । ସାରସ୍ୱତ-ସେବାରେ ଏହି ସମନ୍ୱୟ-ବାଦୀ-ମନୋବୃତ୍ତିଟିର ସୁସ୍ପଷ୍ଟରୂପ ପ୍ରକଟିତ । ସଂସ୍କୃତ / ବଂଗଳା / ହିନ୍ଦୀ ତଥା ପ୍ରାଚୀନ ଓଡ଼ିଆ ସାହିତ୍ୟ ଗଙ୍ଗାଧରଙ୍କ କାବ୍ୟ-ଶୈଳୀକୁ ଯେଉଁ ରୂପରେ ଗଠିତ କରିଥିଲା, ସେଥିରେ ଆଧୁନିକତାର ମିଶ୍ରଣ ଘଟାଇ କବି ନିର୍ମାଣ କଲେ ସ୍ୱତନ୍ତ୍ର 'ଗଙ୍ଗାଧରୀ ଶୈଳୀ । 'ତପସ୍ୱିନୀ'ରେ ଏହାର ପରିଚୟ ପ୍ରକଟିତ । କରୁଣରସ ପ୍ରଧାନ ଆଲୋଚ୍ୟ କାବ୍ୟଟିର ଲାଳିତ୍ୟ ତଥା ମାଧୁର୍ଯ୍ୟ ସଂଗୀତମୟୀ ଛନ୍ଦର ପ୍ରକାଶିତ । ଭାଷା ପ୍ରୟୋଗରେ ସମନ୍ୱୟବାଦର ସ୍ପର୍ଶ ତଥା ସଂଗୀତ ପ୍ରୟୋଗରେ ପ୍ରାଚୀନତାର ଆରାଧନା 'ତପସ୍ୱିନୀ'କୁ ରସୋତ୍ତୀର୍ଣ୍ଣ କରାଇବାରେ ସଫଳ ହୋଇଅଛି ।

କାବ୍ୟର ଆରମ୍ଭରେ ପ୍ରାଚୀନରୀତି ଅବଲମ୍ବନରେ 'ନମସ୍କ୍ରିୟା' ସାଧନରେ 'ଭାରତୀବଂଦନା'ର ପରିକଳ୍ପନା ଯେଉଁଭଳି କବିଙ୍କର ପ୍ରାଚୀନ ପକ୍ଷପାତିତ୍ୱର ପରିଚୟ ଦେଇଥାଏ, ତାହାର ଠିକ୍ ପରେ ପରେ ନାଟକୀୟ ରୀତିରେ ବିଳାପମୁଖୀ-ସୀତାଙ୍କର ଉପସ୍ଥାପନ କବିଙ୍କର ଆଧୁନିକତାର

ପରିପୂରକ । ସୀତାଙ୍କର ଦୁଃଖ ଏବଂ ପ୍ରକୃତିର ସମବେଦନାର ରୂପ ଯେଉଁ ଶୈଳୀରେ ବର୍ଣ୍ଣିତ ତାହା କବିଙ୍କର ମୌଳିକ କଳ୍ପନାର ସୁସ୍ପଷ୍ଟ ଉଦାହରଣ ।

କଳ୍ପନା ବୈଚିତ୍ର୍ୟ ବିଷୟବସ୍ତୁର ଚମତ୍କାରୀ ଉପସ୍ଥାପନ ଏବଂ ଚରିତ୍ର ଚିତ୍ରଣରେ ଅଭିନବତା ଦ୍ୱାରା କାବ୍ୟ ସୌନ୍ଦର୍ଯ୍ୟର ସାମୂହିକ ସୌନ୍ଦର୍ଯ୍ୟ ଆତ୍ମ ପ୍ରକାଶ କରିଥାଏ । ପ୍ରତିଭା-ଉଦ୍ଭାସିତ ସର୍ଜନା-ଶକ୍ତିର ପ୍ରୟୋଜନ ଏଥି ନିମନ୍ତେ ଅପରିହାର୍ଯ୍ୟ । ଏହି ନୈସର୍ଗିକ ଶକ୍ତି ହିଁ ବିନ୍ୟାସ-କୌଶଳ ସାହାଯ୍ୟରେ କାବ୍ୟରେ ଥିବା ବିଭିନ୍ନ ଉପାଦାନଗୁଡ଼ିକୁ ସାମଗ୍ରିକ ରୂପ ଦେଇ ତାହାର ଏକ ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ ପ୍ରକଟ କରିବାରେ ସହାୟକ ହୋଇଥାଏ । 'ତପସ୍ୱିନୀ' କାବ୍ୟରେ ଏହି ସାମୂହିକ ସୌନ୍ଦର୍ଯ୍ୟଟି ଅନ୍ତମାନାରେ ସ୍ପଷ୍ଟ । ସୃଷ୍ଟି ପରିକଳ୍ପନାରେ କବିଙ୍କର ମୌଳିକତା ବିଦ୍ୟମାନ । ରାମାୟଣରୁ ସୀତାଙ୍କ 'ଉତ୍ତର ଜୀବନ' ଏହି କାବ୍ୟଟିର ବିଷୟବସ୍ତୁ ରୂପେ ଗୃହୀତ ହୋଇଥିଲେ ହେଁ, 'ତପସ୍ୱିନୀ' 'ସୀତା'ଙ୍କର ସହିତ 'ପ୍ରକୃତି'ର ଯେଉଁ ମଧୁର-ସଖ୍ୟ ଭାବ ଏଥିରେ ପରିକଳ୍ପିତ, ତାହାହିଁ ନେହାତି, କବି କଳ୍ପନାର ମୁଖ୍ୟ-ବିଭବ । ଆମେ ପୂର୍ବରୁ ସୂଚାଇ ଦେଇଛୁଁ ଯେ, ସୀତାଙ୍କର ସ୍ୱାଭାବିକ ଅଗ୍ରଗତିରୁ ଆଶ୍ରମ ପ୍ରକୃତିକୁ ବିଚ୍ଛିନ୍ନ କରି ଏହାର ବିଶ୍ଳେଷଣ ଏକ ଅସମ୍ଭବ କାର୍ଯ୍ୟ । ପ୍ରଥମ ସର୍ଗରେ ସୀତାଙ୍କ ଦୁଃଖରେ ବିଦ୍ରୋହିଣୀ ପ୍ରକୃତିର ରୂପ, ଦ୍ୱିତୀୟ ସର୍ଗରେ ସୀତାଙ୍କର ଦୁଃଖର ସାମୟିକ ଅବସ୍ଥାନରେ ପ୍ରକୃତିରେ 'ଶାନ୍ତି-ରଣ-ବିଜୟ ଘୋଷ' ବାଦନ, ତୃତୀୟ ସର୍ଗରେ ଆତ୍ମ ବିଶ୍ଳେଷଣ ପରାୟଣ ବିଷଣ୍ଣ ରାମଚନ୍ଦ୍ରଙ୍କ ସହ ପ୍ରକୃତିର ଅସହଯୋଗ, ଚତୁର୍ଥ ସର୍ଗରେ ସମ୍ବେଦନଶୀଳ ପ୍ରକୃତିର ଦ୍ୱିତୀୟ ପର୍ଯ୍ୟାୟ, ପଞ୍ଚମ ସର୍ଗରେ ପୁଣି ଏହାର ତୃତୀୟ ପର୍ଯ୍ୟାୟର ପରିକଳ୍ପନାରେ ପ୍ରକୃତି ସହ ମାନବର ଶାଶ୍ୱତ-ସମ୍ପର୍କ ପରିକଳ୍ପିତ ହୋଇଛି । ଅନ୍ୟାନ୍ୟ ସର୍ଗରେ ମଧ୍ୟ ପରିକଳ୍ପନାର ଏହିଧାରାଟି ଅନୁସୃତ । ସୃଷ୍ଟି ସୌନ୍ଦର୍ଯ୍ୟ ବିକାଶରେ ଏହି ନୂତନଧାରାଟି ଯେ ପରମ-ସହାୟକ ତେଣୁ ଅଭିନନ୍ଦନୀୟ, ଏହା ଯେ କେହି ସ୍ୱୀକାର କରିବ ।

ବିଷୟ-ବସ୍ତୁର ସଜ୍ଜୀକରଣରେ ମଧ୍ୟ ଏହି ମୌଳିକତାର ଆତ୍ମ ପ୍ରକାଶ ଲକ୍ଷ୍ୟଣୀୟ । ବିଷୟବସ୍ତୁ 'ରାମାୟଣ' 'ରଘୁବଂଶ' ଏବଂ 'ଉତ୍ତର ରାମଚରିତ'ରୁ ସଂଗୃହୀତ ହୋଇଥିଲେ ମଧ୍ୟ ତାହାର ବିନ୍ୟାସରେ କବିଙ୍କର ସ୍ୱାତନ୍ତ୍ର୍ୟ ବିଦ୍ୟମାନ । ପ୍ରଥମ ପାଞ୍ଚଟି ସର୍ଗରେ ସୀତାଙ୍କର ନିର୍ବାସନ ଜୀବନର ପ୍ରଥମ ପର୍ଯ୍ୟାୟ ସ୍ଥାନପାଇଛି । ଏକ ସର୍ବହରା-ପତି-ପରିତ୍ୟକ୍ତା ରମଣୀର ଜୀବନ ଯେମିତି ବ୍ୟର୍ଥତାର ହାହାକାରରେ ନିଷିକ୍ତ ହେବା କଥା ଏଠାରେ ତାହାର ପୁନରାବୃତ୍ତି ହୋଇ ନାହିଁ । ହୃଦୟର ଦୁଃଖ / ମାନସିକ ଅଶାନ୍ତି ଯେତେ ଚେଷ୍ଟା କଲେ ମଧ୍ୟ ଯେ, ପଲକ ପାତରେ ଅପସୃତ ହୋଇଯିବ, ଏକଥା କଳ୍ପନା କରିବା ବୃଥା । ତେବେ ପ୍ରିୟଜନର ସହାନୁଭୂତି ତାହାକୁ କେତେକାଂଶ ସହନଶୀଳତାର ରୂପ ଦେଇଥାଏ ମାତ୍ର । ସୀତାଙ୍କର ଦୁଃଖ ସମୁଦ୍ର ଭଳି ଅତଳ / ଗମ୍ଭୀର । ତାହା ଯେ ସହସା ଦୂର ହୋଇଯାଇଛି ଏପରି ନୁହେଁ । ତେବେ ପ୍ରକୃତିର ସମ୍ବେଦନଶୀଳତା, ସ୍ୱୟଂ ବାଲ୍ମୀକି ଏବଂ ତଦୀୟ ପରିଜନମାନଙ୍କର ଅପୂର୍ବ ସମବ୍ୟଥିତ୍ୱ ଏହାକୁ ଅନେକାଂଶ ସହଜ ଏବଂ ସହଣୀୟ କରି ଦେଇଥିଲା । ଏହାଛଡ଼ା ଥିଲା ସମୟ । ତାହାର ପ୍ରଭାବରେ ସୀତାଙ୍କର ଦୁଃଖର ସ୍ମୃତି ଉପରେ ଏକ ସୂକ୍ଷ୍ମ ବିସ୍ମୃତିର ଆସ୍ତରଣ ଧୀରେ ଧୀରେ ଜମି ଆସୁଥିଲା । ପ୍ରଥମ ପାଞ୍ଚ ସର୍ଗରେ ତେଣୁ ସୀତାଙ୍କର ଦୁଃଖ ଏବଂ ସମବ୍ୟଥୀ ପ୍ରକୃତିର ଯେଉଁ ସମାନ୍ତରାଳ ଚିତ୍ର ଅଙ୍କିତ ହୋଇଛି, ବିଷୟବସ୍ତୁ ସଜ୍ଜୀକରଣରେ ତାହାହିଁ ହେଉଛି, ଅଭିନବ ଏବଂ ମୌଳିକ । ଷଷ୍ଠ / ସପ୍ତମ ସର୍ଗରେ ସୀତାଙ୍କର 'ପୂର୍ବ ଜୀବନ'ର

ସମ୍ବାଦ ସ୍ମୃତି-ଚାରଣ ମାଧ୍ୟମରେ ବର୍ଣ୍ଣିତ । ରାମାୟଣର 'ପୂର୍ବ ଭାଗ' ରୂପେ ଏହାକୁ ଗ୍ରହଣ କରାଯାଇପାରେ ।

ରାମାୟଣ ଆଖ୍ୟାୟିକାରେ 'ସୀତା'ଙ୍କର ପ୍ରବେଶ-ପର୍ଯ୍ୟନ୍ତ ସେଠାରେ ସେଭଳି କୌଣସି ଉଲ୍ଲେଖ ଯୋଗ୍ୟ ଘଟଣା ଘଟିଥିବାର ଆମେ ଦେଖୁନାହିଁ । ଋଷ୍ୟଶୃଙ୍ଗଙ୍କ ପୁତ୍ରେଷ୍ଟି ଯଜ୍ଞ ଫଳରେ ରାମଚନ୍ଦ୍ର ପ୍ରଭୃତିଙ୍କର ଜନ୍ମ, ଗତାନୁଗତିକ ଭାବରେ ତାହାଙ୍କର ବାଲ୍ୟଲୀଳା, କିଶୋର ବୟସରେ ପୂତନାହତ୍ୟା ପର୍ଯ୍ୟନ୍ତ ଜୀବନର ଗତି ହୋଇଛି ନିତାନ୍ତ ସାଧାରଣ । ବିଶ୍ୱାମିତ୍ର ସମଭିବ୍ୟାହାରରେ ତାହାଙ୍କର ମିଥିଳା ଗମନଠାରୁ ତାଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟର ଆରମ୍ଭ ହୋଇଛି ଏବଂ ଏହି ପର୍ଯ୍ୟାୟରେ ସୀତା ମଞ୍ଚରେ ପ୍ରବେଶ କରିଛନ୍ତି । ତାହାପରେ ଦୀର୍ଘକାଳଧରି ସୀତାଙ୍କୁ କେନ୍ଦ୍ରକରି ଘଟଣାର ଗତି ନିୟନ୍ତ୍ରିତ ହୋଇଛି । ତେଣୁ ତ 'ସୀତା' ରାମାୟଣ କାବ୍ୟର ନାୟିକା । 'ସୀତା'ଙ୍କ ବିରହିତ 'ରାମାୟଣ' କାବ୍ୟର ପରିକଳ୍ପନା 'ହାମ୍ଲେଟ୍' ବିରହିତ 'ହାମଲେଟ୍' ନାଟକର ପରିକଳ୍ପନା ସହିତ ସମାନ । ତେଣୁ ସୀତାଙ୍କର ସାମ୍ପ୍ରତିକ ଜୀବନ ସହିତ, ତାହାଙ୍କର ଅତୀତ ବିଳାସ-ବିଭବ-ମଣ୍ଡିତ ଜୀବନର ଏକ ତୁଳନାତ୍ମକ ଚିତ୍ର ପ୍ରଦାନ କରି ପାଠକର ମନରେ ସମବେଦନାର ଗତିକୁ ଅଧିକ ତୀବ୍ର କରିବା ନିମନ୍ତେ ଏହି ଦୁଇଟି ସର୍ଗର ପରିକଳ୍ପନା ଅପ୍ରୟୋଜନୀୟ ନୁହେଁ । ବରଂ ସୀତା ଚରିତ୍ରର ପୂର୍ଣ୍ଣ-ସୌନ୍ଦର୍ଯ୍ୟ ଏହାଦ୍ୱାରା ପ୍ରକଟିତ ହୋଇଛି । ଅଷ୍ଟମ ସର୍ଗରେ ପୁନର୍ବାର ବର୍ଣ୍ଣନାର ଗତିକୁ ବର୍ତ୍ତମାନମୁଖୀ କରାଯାଇଅଛି । ଏଠାରେ 'ଗର୍ଭଭାର ଆଳସୀ' ତପସ୍ୱିନୀ ସୀତାଙ୍କର ଦୁଃଖରେ ସମ୍ବେଦନଶୀଳା ପ୍ରକୃତିର ରମ୍ୟ ଆଲେଖ୍ୟ ପୁନର୍ବାର ନୂତନ ରୂପରେ ପ୍ରକଟିତ ହୋଇଛି । ନବମ ସର୍ଗର ଅଧା ପର୍ଯ୍ୟନ୍ତ ପ୍ରକୃତିର ଏହି ସୌନ୍ଦର୍ଯ୍ୟ ପ୍ରକାଶିତ ହେଲା ପରେ, ଘଟଣାର ଗତିକୁ ଦ୍ରୁତ କରାଯାଇ ଲବକୁଶଙ୍କର ଜନ୍ମ, ସେମାନଙ୍କର ବାଲ୍ୟ ତଥା କୈଶୋର ଏବଂ ଅଶ୍ୱମେଧ ଯଜ୍ଞ ସମ୍ବାଦ ଶ୍ରବଣରେ ସୀତାଙ୍କର ପ୍ରତିକ୍ରିୟା ସମ୍ପର୍କରେ ବର୍ଣ୍ଣନାମାନ ଦିଆଯାଇଛି । ଘଟଣାର ଗତି ଶେଷ ସର୍ଗଗୁଡ଼ିକରେ ସାମାନ୍ୟ ଦ୍ରୁତ ହୋଇଥିଲେହେଁ, ଏହା ଅପ୍ରାସଙ୍ଗିକ ହୋଇନାହିଁ ।

'ତପସ୍ୱିନୀ'-'ସୀତା'ଙ୍କର କ୍ଷମା-ସୁନ୍ଦର ରୂପ ବର୍ଣ୍ଣନା ହିଁ ମେହେର କବିଙ୍କର ଲକ୍ଷ୍ୟ । ତପସ୍ୟାର ପୂର୍ଣ୍ଣତା ରିପୁ ଉପରେ ପ୍ରଭୁତ୍ୱ ପ୍ରତିଷ୍ଠାରେ । ସେହି ଗୁଣଟି ହାସଲ କଲେ ହିଁ ସୀତାଙ୍କର ସାଧନାରେ ସିଦ୍ଧି ପ୍ରାପ୍ତ ହେବ । ତାହା ହେବ 'ତପସ୍ୱିନୀ'ର ପୂର୍ଣ୍ଣରୂପ । ଅନ୍ତିମ ସର୍ଗରେ ଆମର ସେହିରୂପ ସହିତ ପରିଚୟ ଘଟିଛି ।

ସ୍ମରଣ ରଖିବାକୁ ହେବ ଯେ, 'ତପସ୍ୱିନୀ'ର କଳେବର ବୃଦ୍ଧି ଘଟିଛି ତିନିପର୍ଯ୍ୟାୟରେ । ପ୍ରଥମ ପର୍ଯ୍ୟାୟରେ ଯାହାର ମାତ୍ର ପାଞ୍ଚଟି ସର୍ଗ କଳ୍ପିତ ହୋଇଥିଲା, ଶେଷକୁ ତାହା ବଢ଼ି ବଢ଼ି ଏକାଦଶ-ସର୍ଗ ବିଶିଷ୍ଟ ହୋଇଛି । କବି ସର୍ବଦା କାବ୍ୟର-କଳେବର ସମ୍ପର୍କରେ ସଚେତନ ଥିବାର ଆମେ ଗଙ୍ଗାଧର ଗ୍ରନ୍ଥାବଳୀର ବିଭିନ୍ନ ସ୍ଥାନରୁ ଜାଣିପାରୁଁ । ତେଣୁ ପ୍ରଥମ ପାଞ୍ଚଟି ସର୍ଗ ଲେଖିଗଲାପରେ କବି ସ୍ଥାନ-ସଚେତନ ହୋଇଯାଇଥିବେ । ପରବର୍ତ୍ତୀ ସର୍ଗଗୁଡ଼ିକ ତେଣୁ ଘଟଣା-ବହୁଳ ହୋଇ ପଡ଼ିଛି । ମାତ୍ର ତାହାଦ୍ୱାରା କାବ୍ୟ ସୌନ୍ଦର୍ଯ୍ୟର ପରିପୂର୍ଣ୍ଣତାରେ କୌଣସି ଅସୁବିଧା ସୃଷ୍ଟି ହୋଇନାହିଁ ବୋଲି ଆମର ମତ । କାବ୍ୟର ମୂଳ ପ୍ରତିପାଦ୍ୟ ଲଙ୍ଘନ ହୋଇନାହିଁ । ବିଷୟବସ୍ତୁର ସଜ୍ଜୀକରଣରେ ମେହେରଙ୍କର ଦୂରଦର୍ଶିତା ପ୍ରଶଂସନୀୟ ।

‘ଚରିତ୍ର ଚିତ୍ରଣ’ରେ ମଧ୍ୟ ମେହେର କୃତିତ୍ୱର ପରାକାଷ୍ଠା ଦେଖିବାକୁ ମିଳିଥାଏ । ନିର୍ବାସିତା ସୀତାଙ୍କର ନିର୍ବାସନ ଜନିତ ତୀବ୍ର ମନୋବେଦନାର ଏକ ସୂକ୍ଷ୍ମ-ବିଶ୍ଳେଷଣ ମାଧ୍ୟମରେ ସୀତା ଚରିତ୍ରର ବୈଶିଷ୍ଟ୍ୟ ଏହି କାବ୍ୟରେ ଯେଉଁଭଳି ପରିସ୍ଫୁଟ, ଅନୁତାପ-ଦଗ୍ଧ ରାମଚନ୍ଦ୍ରଙ୍କର ମାନସିକ-ଦ୍ୱନ୍ଦ୍ୱର ଏକ ମନୋବୈଜ୍ଞାନିକ ପରୀକ୍ଷା ଜନିତ ଫଳ ସାହାଯ୍ୟରେ ରାମ ଚରିତ୍ରର ଯଥାର୍ଥ କମନୀୟତା ମଧ୍ୟ ସେହିଭଳି ପ୍ରକାଶିତ । ରାମଚନ୍ଦ୍ରଙ୍କର ଦୁଇ ସତ୍ତା ମଧ୍ୟରେ ବିରୋଧରୁ ହିଁ ଏହି ଦ୍ୱନ୍ଦ୍ୱର ସୃଷ୍ଟି ହୋଇଛି । ଅଯୋଧ୍ୟାର ଶାସକ ହିସାବରେ ପ୍ରଜାମାନଙ୍କର ଦାବୀକୁ ଅସ୍ୱୀକାର କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ଯେଉଁ ଆଦର୍ଶକୁ ଆଖି ଆଗରେ ରଖି ସେ ଆବାଲ୍ୟରୁ ପରିଚାଳିତ ହୋଇଥିଲେ, ପ୍ରଜାରଞ୍ଜନର ଦାୟିତ୍ୱକୁ ଅସ୍ୱୀକାର କରିଥିଲେ, ରାମଚନ୍ଦ୍ର ସେଥିରୁ ବିଚ୍ୟୁତ ହୋଇଥାଆନ୍ତେ । ଜୀବନ ଥିବା ପର୍ଯ୍ୟନ୍ତ ସେ ତାହା କରିପାରନ୍ତେ ନାହିଁ । ସୀତା ରାମଚନ୍ଦ୍ରଙ୍କର ପତ୍ନୀ ; ରାମଚନ୍ଦ୍ରଙ୍କ ଉପରେ ପୂର୍ଣ୍ଣ ନିର୍ଭର-ଶୀଳା । ବ୍ୟକ୍ତିଗତ ଜୀବନରେ ତାଙ୍କ ଅପେକ୍ଷା ରାମଚନ୍ଦ୍ରଙ୍କର ଆଉ କିଏ ଅଧିକ ପ୍ରିୟ ? ତାଙ୍କ ସହିତ ସମ୍ପର୍କିତ ଗମ୍ଭୀର ବାସ୍ତବତାବୋଧର ଭିତ୍ତି ଉପରେ ପ୍ରତିଷ୍ଠିତ । ପ୍ରଜା କିମ୍ବା ପତ୍ନୀ ? କିଏ ହେବ ରାମଚନ୍ଦ୍ରଙ୍କର ପ୍ରିୟ ? ଆଦର୍ଶ କିମ୍ବା ବାସ୍ତବ ? କର୍ତ୍ତବ୍ୟ-ବିରୋଧର ଏହି ଚରମ ମୁହୂର୍ତ୍ତରେ ଆଜନ୍ମ-ଆଦର୍ଶ-କୋଳରେ ପ୍ରତିପାଳିତ ରାମଚନ୍ଦ୍ର ଆଦର୍ଶକୁ ବଡ଼ବୋଲି ମନେକରିଛନ୍ତି । ତାଙ୍କ ନିଜର ଭବିଷ୍ୟତ୍‌ବାଣୀ ସଫଳ ହୋଇଛି । ଅଷ୍ଟାବକ୍ର ମୁନିଙ୍କୁ ରାମଚନ୍ଦ୍ର କହିଥିଲେ, “ପ୍ରକୃତିରଞ୍ଜନେ ଯେବେ ହୁଏ ପ୍ରୟୋଜନ / କରିପାରେ ପ୍ରାଣସମା ସୀତା ବିସର୍ଜନ—” ଏହା ଯେ କେବେ କରିବାକୁ ପଡ଼ିବ ଏହା ରାମଚନ୍ଦ୍ର ଭାବପ୍ରବଣତାର ସେଇ ମୁହୂର୍ତ୍ତରେ ଚିନ୍ତା କରିଥିଲେ, ଏଭଳି ଉକ୍ତି କେବେ କରି ନଥାନ୍ତେ । ମାତ୍ର ତାହା ସତ୍ୟ ହୋଇଛି । ତେଣୁ ସୀତା ନିର୍ବାସିତା ହୋଇ ଯାଇଛନ୍ତି । ମାତ୍ର ସେ କେବଳ ଆଖି ଆଗରୁ । ଆଖିର ଆଢ଼ୁଆଳ ହେବା ଯେ ମନ ଉପରେ ପରଦା ଟାଣି ଦେଇପାରେ ନାହିଁ, ଏ ସତ୍ୟ ଗଙ୍ଗାଧର ହୃଦୟଙ୍ଗମ କରିଥିଲେ । ତେଣୁ ସମଗ୍ର ତୃତୀୟ-ସର୍ଗଟିରେ ରାମଚନ୍ଦ୍ରଙ୍କର ମାନସିକ ଦ୍ୱନ୍ଦ୍ୱର ସ୍ୱରୂପ ଉଦ୍‌ଘାଟିତ ହୋଇଛି । ରାମଚନ୍ଦ୍ର ରାଜାରୂପେ ମହନ୍ତ-ଦେବତା ହୋଇପାରନ୍ତି । ମାତ୍ର ସେ ଜଣେ ସାଧାରଣ ମାନବ ମଧ୍ୟ । ତାଙ୍କର ସ୍ୱାଭାବିକ ଚେତନା ତେଣୁ ଜଣେ ସାଧାରଣ ମାନବ ଭଳି । ମାନବରୂପରେ ସେ ସୀତାଙ୍କର ପତି, ଯାହାଙ୍କ ପ୍ରତି ତାଙ୍କର ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ରହିଛି । ସୀତାଙ୍କୁ ନିର୍ବାସନ ଦଣ୍ଡ ଦେବା ଦ୍ୱାରା ଏହି କର୍ତ୍ତବ୍ୟ ସୁଚାରୁରୂପେ ପାଳିତ ହୋଇପାରି ନାହିଁ । ତେଣୁ ଦ୍ୱନ୍ଦ୍ୱ ଘଟିବା ସ୍ୱାଭାବିକ । ଏହି ଦ୍ୱନ୍ଦ୍ୱ ଦେବତା ଏବଂ ମାନବ ମଧ୍ୟରେ ଦ୍ୱନ୍ଦ୍ୱ । ପ୍ରଥମେ ଦେବତାର ବିଜୟ ଘୋଷିତ ହୋଇଥିଲେ ହେଁ, ଶେଷରେ ମାନବର ବିଜୟ ତେଣୁ ବର୍ଣ୍ଣିତ । ଦ୍ୱନ୍ଦ୍ୱ-ଗ୍ରସ୍ତ ରାମ ଚରିତ୍ରର ସ୍ୱାଭାବିକ ରୂପଟି କରୁଣରସ ମଧ୍ୟ ଦେଇ ଫୁଟିଉଠିଛି । ଏହି ଚରିତ୍ର ନିର୍ମାଣରେ କବିଙ୍କର ସୃଷ୍ଟିକୌଶଳ ପରିସ୍ଫୁଟ ହୋଇଛି ।

ନିର୍ବାସିତା-ସୀତାଙ୍କ ଜୀବନରେ ମଧ୍ୟ ଏଇ ଆଦର୍ଶ ଓ ବାସ୍ତବତା ମଧ୍ୟରେ ଚିରନ୍ତନ ଦ୍ୱନ୍ଦ୍ୱର ରୂପ ପ୍ରକଟିତ । ପତ୍ନୀରୂପରେ ରାମଚନ୍ଦ୍ରଙ୍କର ସ୍ୱୈରାଚାରକୁ ନୀରବରେ ସହ୍ୟ କରିନେବା ବିରୁଦ୍ଧରେ ବିଦ୍ରୋହ କରିବାର ଏକ କାମନା ତାଙ୍କ ମନରେ ଉଦିତ ହୋଇଥିଲେ ହେଁ ଉଚ୍ଛଳ ସେଇ କ୍ରୋଧ ଧୈର୍ଯ୍ୟରଜ୍ଜୁରେ ଆବଦ୍ଧ ହୋଇଛି । ସୀତା ଯେ ଆଦର୍ଶ ପୁରୁଷ ରାମଚନ୍ଦ୍ରଙ୍କର ପତ୍ନୀ । କରୁଣାର ସାଗର ରାମଚନ୍ଦ୍ର କେବେ ଅନ୍ୟାୟ କରିପାରନ୍ତି ନାହିଁ । ତେଣୁ ପତି ହିସାବରେ ତାଙ୍କର କର୍ତ୍ତବ୍ୟ ପାଳନ କରିବା ନିମନ୍ତେ ଯାହାକରିଛନ୍ତି, ତାକୁ ନୀରବରେ ରୂପଦେବାଦ୍ୱାରା ପତ୍ନୀତ୍ୱର ମହିମାମଣ୍ଡିତ ରୂପ

ଫୁଟି ଉଠିବ । ତେଣୁ ବିଦ୍ରୋହ ନୁହେଁ, ଆତ୍ମ-ସମର୍ପଣ ଦ୍ୱାରା ହିଁ ସୀତା ନିଜର ପତ୍ନୀତ୍ୱର ଏକ ପ୍ରସିଦ୍ଧକୁ ନିଜର ବଧୂତ୍ୱର ଗୌରବ ପ୍ରତିଷ୍ଠା କରିଦେଇଛନ୍ତି । ଏଠାରେ ଆଦର୍ଶ ଏବଂ ବାସ୍ତବର ଦ୍ୱନ୍ଦ୍ୱରେ ଆଦର୍ଶର ଜୟ-ଘୋଷଣା ପ୍ରତିଷ୍ଠା କରାଯାଇଛି । ବାସ୍ତବ କିନ୍ତୁ ଫାଙ୍କେ ଫାଙ୍କେ ଆତ୍ମ-ପ୍ରକାଶର ସୁଯୋଗ ଖୋଜି ବୁଲୁଛି । ନାଗ୍ନ-ସୀତା ରାମଚନ୍ଦ୍ରଙ୍କର ଅଶ୍ୱମେଧ ଯଜ୍ଞର ସମ୍ବାଦ ପାଇ ପତ୍ନୀତ୍ୱର ଗୌରବ ହରାଇବାର ଆଶଙ୍କାରେ 'ନବନାରୀ ହେଉଥିବ ବାମାଙ୍କେ ସ୍ଥାପିତ' କଳ୍ପନାରେ ଶିହରି ଉଠିଛନ୍ତି । ବାସ୍ତବ ପରିସ୍ଥିତି ବୁଝି ସାରିବାପରେ ପୁନର୍ବାର ନିଜକୁ 'ଦୁର୍ବଳ ହୃଦୟ' ବୋଲି ପ୍ରକାଶକରି କ୍ଷମାଭିକ୍ଷା କରିଛନ୍ତି ।

ଆଦର୍ଶ ତଥା ବାସ୍ତବ ମଧ୍ୟରେ ଦ୍ୱନ୍ଦ୍ୱର ଅବତାରଣା କରାଯାଇଛି ଏବଂ ଆଦର୍ଶର ବିଜୟ ପ୍ରତିଷ୍ଠା କରାଇ କରୁଣରସାତ୍ମକ ଏହି କାବ୍ୟର ସୃଷ୍ଟି ସୌନ୍ଦର୍ଯ୍ୟ ପ୍ରକଟ କରିବା ନିମନ୍ତେ ଉଦ୍ୟମ କରାଯାଇଥିଲେ ହେଁ, ଯଥାର୍ଥରେ କିନ୍ତୁ 'ଆଦର୍ଶବାଦ'ର ଜୟ ହୋଇନାହିଁ । ଯାହା ହୋଇଛି ତାହା 'ଜୟ'ର ଛଳନା ମାତ୍ର । ତାହାର ଫଳରେ କାବ୍ୟର ସ୍ୱାଭାବିକ ରୂପଟି ପରିସ୍ଫୁଟ ହୋଇଛି ଅଧିକ । ମଣିଷ ଜୀବନରେ ଆଦର୍ଶର ଏକ ନିର୍ଦ୍ଦିଷ୍ଟସୀମା ରହିଛି । କେବଳ ଆଦର୍ଶର ସମ୍ମାନରେ ଯେ ଏହାକୁ ଅତିକ୍ରମ କରିଯାଏ, ତାହାର ମନୁଷ୍ୟତ୍ୱ ଉପରେ ସନ୍ଦେହ ହେବା ସ୍ୱାଭାବିକ । ଗଙ୍ଗାଧର ଦେବତା ସୃଷ୍ଟି କରିବାକୁ ଚାହିଁନଥିଲେ । ବରଂ ଦେବଚରିତ୍ରର ମାନବାୟନ ତାଙ୍କ ସୃଷ୍ଟିକର୍ମର ମୂଳ ଉଦ୍ଦେଶ୍ୟ । 'ତପସ୍ୱିନୀ' କାବ୍ୟରେ ତାହାହିଁ ହୋଇଛି ।

ଉପସଂହାରରେ ବୋଧହୁଏ ଏତିକି କହିଲେ ଯଥେଷ୍ଟ ହେବ ଯେ, କବିଙ୍କର ଜୀବନ/ କବିମାନସ ଯେଉଁଭଳି ଭାବରେ 'ତପସ୍ୱିନୀ' କାବ୍ୟରେ ଫୁଟି ଉଠିଛି, ସେଥିରେ ଆମେ ସ୍ୱୀକାର କରିବାକୁ ବାଧ୍ୟ ଯେ, କାବ୍ୟ ହେଉଛି କବି ଜୀବନର ସାର୍ଥକ ପ୍ରତିଛବି । ଗଙ୍ଗାଧରଙ୍କର ବ୍ୟକ୍ତିଗତ ଜୀବନର ଅନୁଭୂତି ସହିତ କାବ୍ୟିକ ସୃଷ୍ଟି କ୍ଷମତାର ମଧୁର ସମନ୍ୱୟରେ 'ତପସ୍ୱିନୀ' କାବ୍ୟର ଅଙ୍ଗ ଗଠିତ ହୋଇଛି । ତେଣୁ ଏହା ଏତେ ବାସ୍ତବ ଏବଂ ପ୍ରଭାବଶାଳୀ ।

## ପ୍ରତିଭାର ଅବରୋହ

'ତପସ୍ୱିନୀ' ରଚନା ତୃପ୍ତ-ମାନସ କବି ପ୍ରତିଭା ଯେଉଁ ଗୌରବ ପ୍ରଶାନ୍ତି ମଧ୍ୟରେ ବିଶ୍ରାମ-ସୁଖ ଲୋଡ଼ିଲା, ସେଠାରୁ ତାହାର ନିଷ୍କ୍ରମଣ ଘଟିଲା ନାହିଁ । ନିଜର କାରୁଣ୍ୟ-ମର୍ମରିତ ଜୀବନକୁ 'ତପସ୍ୱିନୀ' ପୃଷ୍ଠାରେ ଲିପିତ କରିଦେବାପରେ କବି ତାଙ୍କର ସାରସ୍ୱତ ଜୀବନର ଅନ୍ତିମ-ପ୍ରହର ଆସିଯାଇଥିବାର ହୃଦୟଙ୍ଗମ କରିପାରିଲେ । ଏହାପରେ ତେଣୁ ସେ ଆଉ ଉଲ୍ଲେଖଯୋଗ୍ୟ କିଛି ରଚନା କରିନାହାନ୍ତି । 'ପ୍ରଣୟ-ବଲ୍ଲରୀ', 'ତପସ୍ୱିନୀ' ରଚନା ଚାଲିଥିବାବେଳେ ପରିବର୍ତ୍ତିନଳିନୀ କବି କେତେକ ଖଣ୍ଡ-କବିତା ରଚନା କରନ୍ତି । ସେଗୁଡ଼ିକ ବିଭିନ୍ନ ପତ୍ର ପତ୍ରିକାରେ ୧୯୧୦ରୁ ୧୯୧୯ ମଧ୍ୟରେ ପ୍ରକାଶିତ ହୋଇ 'ତତ୍ପ୍ରତି ବହୁଦର୍ଶୀମାନଙ୍କର ଦୃଷ୍ଟିଆକୃଷ୍ଟ' ହୋଇଥିଲା । 'ପାରଳାଧିପତି କୃଷ୍ଣଚନ୍ଦ୍ର ଗଜପତି ଦେବ' 'ତପସ୍ୱିନୀ'ର କବିଙ୍କର ଖଣ୍ଡିଏ ଗ୍ରନ୍ଥ ପ୍ରକାଶ କରିଦେବା ନିମନ୍ତେ ଆଗ୍ରହାନ୍ୱିତ ହେବାରୁ ମେହେର ପୂର୍ବ ପ୍ରକାଶିତ କବିତାଗୁଡ଼ିକ ମଧ୍ୟରୁ 'ଅଣଗୃଳଶ ଗୋଟି' କବିତାର ସମନ୍ୱୟରେ ଏକ ଗ୍ରନ୍ଥ ପ୍ରସ୍ତୁତ କଲେ । 'ଅର୍ଘ୍ୟଥାଳୀ' ହେଉଛି ପାରଳାଧିପତିଙ୍କ ଆଗ୍ରହର ପ୍ରକାଶିତ ରୂପ । ଏହାର ଭୂମିକାଟି ୨୫ - ୨ - ୧୯୧୮ରେ ରଚିତ ହୋଇଥିଲେ ହେଁ ଏଥିରେ ଏହି ତାରିଖ ପରେ 'ଉତ୍କଳ ସାହିତ୍ୟ'ରେ

ପ୍ରକାଶିତ ହୋଇଥିବା ତିନୋଟି କବିତା ସଂଯୁକ୍ତ । ଏହାବ୍ୟତୀତ ୧୯୧୯ ମସିହା ନଭେମ୍ବର 'ଉତ୍କଳ ସାହିତ୍ୟ'ରେ 'ଅର୍ଘ୍ୟଥାଳୀ'ର ~~ପୁସ୍ତକ~~-ପ୍ରକାଶନ ସମ୍ପର୍କରେ ସମ୍ବାଦ ପରିବେଷିତ ହୋଇଛି । ଏଥିରେ ପ୍ରକାଶିତ 'ଉଦ୍‌ବୋଧନ' ନାମଧେୟ କବିତା ୧୯୧୮ ଜୁନ୍ ସଂଖ୍ୟା 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଛି । ଏହି ସବୁ ପ୍ରମାଣରୁ ଅନୁମାନ କରିଯାଇପାରେ ଯେ, 'ଅର୍ଘ୍ୟଥାଳୀ' ୧୯୧୮ ଡିସେମ୍ବର କିମ୍ବା ~~୧୯୧୯ର ପ୍ରଥମ ଭାଗରେ~~ ପ୍ରକାଶିତ । ଏହା 'ପାରଳାଧିପତି'ଙ୍କ ନାମରେ ଉତ୍ସର୍ଗୀକୃତ ।

ଏଥିରେ ପ୍ରକାଶିତ କବିତା ସଂଖ୍ୟା ଅଣ-ଚାଳିଶ ଏବଂ ସେଗୁଡ଼ିକ ବିଭିନ୍ନ ରସର । ଆଲୋଚନାର ସୁବିଧା ଦୃଷ୍ଟିରୁ ସେଗୁଡ଼ିକୁ ନିମ୍ନ ଭାବରେ ବିଭକ୍ତ କରିଯାଇପାରେ ।

(୧) ଭକ୍ତି-ରସାତ୍ମକ :—ଚାରିଟି
(୨) ଜାତୀୟତା ଦ୍ୟୋତକ :—ଚାରିଟି
(୩) ସଂସ୍କାର ମୂଳକ :—ଦୁଇଟି
(୪) ପ୍ରକୃତି ବର୍ଣ୍ଣନାତ୍ମକ :—ନଅଟି
(୫) କିମ୍ବଦନ୍ତୀମୂଳକ :—ଗୋଟିଏ
(୬) ଶୋକଗୀତି :—ଚାରିଟି
(୭) ପ୍ରଶସ୍ତି ମୂଳକ :—ଦୁଇଟି
(୮) ପୌରାଣିକ :—ଗୋଟିଏ
(୯) ଅନ୍ୟାନ୍ୟ :—ବାରଟି

'ଅର୍ଘ୍ୟଥାଳୀ'ରେ ସଂଗୃହୀତ କବିତାମାନଙ୍କ ମଧ୍ୟରୁ ଭକ୍ତିରସାତ୍ମକ କବିତା ଚାରୋଟି ଯଥାର୍ଥରେ ସ୍ମରଣୀୟ ସୃଷ୍ଟି । ଏଥିରୁ "ଭକ୍ତି" କବିତାର ପୁଣି ତୁଳନା ନାହିଁ । ଐକାନ୍ତିକ ଈଶ୍ୱର ବିଶ୍ୱାସ ସହିତ କବି ପ୍ରତିଭାର ମଧୁର ସମନ୍ୱୟରେ ଏହି କବିତାଟିର 'ଶରୀର' ନିର୍ମିତ ହୋଇଛି । କବି ବ୍ୟକ୍ତିଗତ ଜୀବନରେ ଦୃଢ଼ ଭଗବତ୍ ବିଶ୍ୱାସୀ ଥିଲେ । ଏହାର କାରଣ ଆମେ ପୂର୍ବରୁ ଆଲୋଚନା କରିଛୁଁ । ଭଗବତ୍-ପ୍ରସନ୍ନତା କବିଙ୍କର ଚିନ୍ତାରେ / ବାକ୍ୟରେ / କର୍ମରେ ବିକୀର୍ଣ୍ଣ ହେଉଥିଲା । କବି ଶରୀରର ପ୍ରତ୍ୟେକ ଲୋମରେ ପରମ-ପୁଲକମୟ ଈଶ୍ୱରୀୟ-ପ୍ରସନ୍ନତା ପ୍ରବେଶ କରି କବି-ଶରୀରକୁ 'ଭଗବତ୍ ତନୁ'ରେ ପରିଣତ କରିସାରିଥିଲା । ତେଣୁ କବି-ଶରୀର ପରିଣତ ହୋଇଥିଲା ସ୍ରଷ୍ଟାଙ୍କର ପ୍ରସାଦ-ଅମୃତର ପବିତ୍ର ପାତ୍ରରେ । ଏହି ପ୍ରସନ୍ନତାର ସ୍ପର୍ଶ ତାଙ୍କର କାବ୍ୟ କବିତାରେ ଆତ୍ମପ୍ରକାଶ ଲାଭ କରିବା ସ୍ୱାଭାବିକ । ଏଗୁଡ଼ିକ ମଧ୍ୟରେ ସତେ ଯେପରି କବି ସ୍ୱୟଂ ଆତ୍ମପ୍ରକାଶ କରିଛନ୍ତି ! 'ଭକ୍ତି' କବିତା କବି ପ୍ରତିଭାର ଶୀର୍ଷସ୍ଥାନୀୟ ଅବଦାନ । ଏହାର ପ୍ରକାଶ ୧୯୧୪ ସେପ୍ଟେମ୍ବର । ତେଣୁ ଅନାବିଳ ଭକ୍ତିରସର ସ୍ୱତଃସ୍ଫୂର୍ତ୍ତ ଭାବୋଚ୍ଛ୍ୱାସରେ ଏହି କବିତାଟି ମେହେର ପ୍ରତିଭାର ଯଥାଯୋଗ୍ୟ ପରିଚୟ । "କି ଦେଇ ପୂଜିବି / ଯାହା ମୁଁ ଦେଖୁଛି / ସବୁ ତୁମ୍ଭର ପ୍ରସାଦ, ଯାହା ପରସାଦ / ତାଙ୍କୁ ଅରପିଲେ / ହେବ କିନା ଅପରାଧ—" ପ୍ରଭୃତି ବାରମ୍ବାର ଆବୃତ୍ତି କଲେ ମଧ୍ୟ ତୃପ୍ତି ଆସେ ନାହିଁ ।

ଆଉ ଏକ ସ୍ମରଣୀୟ କବିତା ହେଉଛି, "ଉତ୍କଳ ଭାରତୀଙ୍କ ଉକ୍ତି" । ୧୯୧୪ ମସିହା ଏପ୍ରିଲ୍ ମାସରେ 'ଉତ୍କଳ ସାହିତ୍ୟ'ରେ 'ଜାତୀୟତା ଭାବମୂଳକ' ଏହି କବିତାଟି ପ୍ରକାଶିତ ହୋଇଥିଲା ।

ସେତେବେଳେ ଜାତୀୟତାର ସ୍ୱରୂପ ସ୍ୱତନ୍ତ୍ର ଥିଲା । ଏହାର କାରଣ ଆମେ ଅନ୍ୟତ୍ର ସୂଚାଇଛୁ । ସେତେବେଳର କବି ଯେ ନିତାନ୍ତ ରକ୍ଷଣଶୀଳ ନଥିଲେ ତାହାର ଖୋଲା ଖୋଲି ସ୍ୱୀକାରୋକ୍ତି ଏଥିରେ ରହିଛି । "ନାନା ଦେଶୁ ଆଣ / ତରୁବଲ୍ଲୀମାନ / ରୋପଣକର ମୋ ଉଦ୍ୟାନ ଗର୍ଭେ, ଉଦ୍ୟାନ କରିବ / ସୁଫଳ ପ୍ରଦାନ / ଭୁଞ୍ଜିବ ସୁଖେ ମୋ ନନ୍ଦନ ସର୍ବେ—" ପଙ୍କ୍ତିରୁ କବିଙ୍କର ଏହି ଉଦାର ମନୋଭାବର ପରିଚୟ ମିଳିଥାଏ ।

ସଂସ୍କାର ବାଦୀ-କବିତା "ତାଙ୍କୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର" ୧୯୧୮ ମସିହା ଫେବୃୟାରୀ ମାସ ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିବା ଏକ ଅବଶ୍ୟ ପାଠ୍ୟ ରଚନା । ଏଥିରେ ଖୋଲାଖୋଲି ଭାବରେ ତତ୍କାଳୀନ ଶାସନ ପ୍ରତି କଟାକ୍ଷ କରାଯାଇ ଥିଲା । ସେ ସମୟରେ ଏହା ନିତାନ୍ତ ସାହସର କାର୍ଯ୍ୟ ହୋଇଥିଲା ଏଥିରେ ସନ୍ଦେହ ନାହିଁ । ୧୯୧୫ ମସିହା ବେଳକୁ କବିଙ୍କର 'ଇଂରେଜ ସେବାରେ ବୈରାଗ୍ୟ ଜନ୍ମି ଆସିଲାଣି ଏବଂ ତେଣୁ ସେ 'ଅନ୍ୟ କେଉଁ ରାଜାଙ୍କର ସେବାକୁ ଇଚ୍ଛା' କରୁନଥିଲେ ବୋଲି ଶ୍ରୀ ବ୍ରଜମୋହନ ପଣ୍ଡାଙ୍କୁ ଲେଖି ଜଣାଇ ଦେଇଛନ୍ତି । ଆଜୀବନ ଅନ୍ୟର ଅଧୀନତା ସ୍ୱୀକାର କରି ତାହାଙ୍କର ଯେଉଁ କ୍ଷତି ହୋଇଥିଲା, ତାହା ସେ ହୃଦୟଙ୍ଗମ କରିପାରି ବିଦ୍ରୋହୀ ହୋଇ ପଡ଼ିଥିଲେ । ଆଲୋଚ୍ୟ କବିତା ଆତ୍ମ-ସଚେତନ କବି-ପ୍ରାଣର ବିମୂର୍ତ୍ତ ହାହାକାର ।

ଅନ୍ୟାନ୍ୟ କବିତା ସମ୍ପର୍କରେ ବିଶେଷ କରି କିଛି କହିବାର ନାହିଁ । କେବଳ 'ସମୟର ପ୍ରାଣସ୍ପନ୍ଦନ' ବାରିବାକୁ ଏଗୁଡ଼ିକୁ ପାଠ କରାଯାଇପାରେ । ନଚେତ୍ ଏଥି ମଧ୍ୟରୁ ଅଧିକାଂଶ 'ଅକ୍ଷର ଗଣିବା-ହାତରେ' ଖଣ୍ଡରେ ଲିଖିତ । ଏଗୁଡ଼ିକୁ ଆମେ ଯଥାର୍ଥ କବିତାର ମର୍ଯ୍ୟାଦା ମଧ୍ୟ ଦେବାକୁ ରାଜିନୋହୁଁ । ଏଥିରେ ସନ୍ନିବିଷ୍ଟ ହୋଇଥିବା 'ଚତୁର୍ଦ୍ଦଶ-ପଦୀ କବିତା', 'ଶୋକ ଗୀତ' ଏବଂ 'ସ୍ତୁତି' କବିତାର ବହିରଙ୍ଗ ଦେଖିବାରୁ ବିଦେଶୀ । ସେ ସମୟରେ ମୁଖ୍ୟତଃ ମଧୁସୂଦନ ଏହି ଧରଣର କବିତା ଲେଖୁଥିଲେ । 'ଗଙ୍ଗାଧର ଏହି ଧାରାଟିକୁ କୌଣସି ଓଡ଼ିଆ କମ୍ବା ବଂଗୀୟ କବିଙ୍କ ମାଧ୍ୟମରେ ଗ୍ରହଣ କରିଥାଇ ପାରନ୍ତି ।

୧୯୧୮ ଜୁଲାଇ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୁଏ 'ପୁରାଣ କବି ଫକୀରମୋହନ' ଆଲୋଚନା । 'ଫକୀର ମୋହନ'ଙ୍କ ମୃତ୍ୟୁରେ ଆଶା / ନୈରାଶ୍ୟର ବିତର୍କ ମୂଳକ ଆଲୋଚନା ମାଧ୍ୟମରେ ଏହି ନାତିଦୀର୍ଘ ପ୍ରବନ୍ଧରେ କବି ସ୍ୱ-ଅନୁଭୂତି ପ୍ରକାଶ କରିଛନ୍ତି ।

'କୃଷକ ସଙ୍ଗୀତ'ର ଭୂମିକା ତା ୨୦।୧ ୧୯୨୧ ଖ୍ରୀଷ୍ଟାବ୍ଦରେ ଲିଖିତ । ଏହା ବୋଡ଼ାସମ୍ବର ଅଧୀଶ୍ବର ରାଜେନ୍ଦ୍ର ସିଂ ବରିହାଙ୍କ 'ଉପଦେଶାନୁସାରେ' ଲିଖିତ ହୋଇଥିବାର କବି ସ୍ୱୟଂ ଲେଖିଛନ୍ତି । ପ୍ରଚାର ମୂଳକ ଏହି ସଙ୍କଳନଟିର ସାହିତ୍ୟିକ ପ୍ରୟୋଜନ ଶୂନ୍ୟ ହୋଇପାରେ । ତେବେ ଏହାର ଅନ୍ୟ ପ୍ରୟୋଜନକୁ ଅସ୍ୱୀକାର କରିହେବ ନାହିଁ ।

ଶେଷ କବିତା ସଙ୍କଳନ 'କବିତାମାଳା'ର ପ୍ରକାଶ ସମୟ ସମ୍ପର୍କରେ କିଛି କୁହାଯାଇ ପାରିବ ନାହିଁ । ତେବେ ଏଥିରେ ଥିବା 'ଅର୍ପଣ' କବିତାଟି 'ଉତ୍କଳ ସାହିତ୍ୟ'ର ୧୯୨୨ ମସିହା ଡ଼ିସେମ୍ବର ସଂଖ୍ୟାରେ ପ୍ରକାଶିତ ହୋଇଥିବାରୁ, ଅନୁମାନ କରାଯାଇପାରେ ଏହା ୧୯୨୩ ମସିହାର ପ୍ରଥମାର୍ଦ୍ଧରେ ଆତ୍ମ ପ୍ରକାଶ କରିଥିବ । ଏଥିରେ ସମୁଦାୟ ୨୯ଗୋଟି କବିତା ସନ୍ନିବିଷ୍ଟ ।

ଏହାର ଅଧିକାଂଶ କବିତା ଅବକ୍ଷୟୀ କବିପ୍ରତିଭାର ଅଶ୍ରୁଳ ସ୍ମାରକୀ । କବିତାଗୁଡ଼ିକ ରଚନା ସମୟକୁ କବି ପରିଣତ ବୟସ୍କ ହୋଇସାରିଥିଲେ ହେଁ ପ୍ରଜ୍ଞାର ସେଇ 'ନବ ନବ-ଉନ୍ମେଷ-ଶାଳିନୀ' ରୂପଟି ଏଥିରେ ଅନୁପସ୍ଥିତ ଯାହାକୁ 'ପ୍ରତିଭା' କୁହାଯାଇଥାଏ । ଆଜୀବନ ସାହିତ୍ୟ-କର୍ମରେ ରତ ରହି ଜୀବନର ଶେଷ ମୁହୂର୍ତ୍ତରେ ସେ ନିଜକୁ ସେଥିରୁ ଦୂରେଇ ନେଇ ପାରିନଥିଲେ । ତେଣୁ ପ୍ରୟୋଜନର ଆହ୍ୱାନରେ ଏଥିରେ ସନ୍ନିବିଷ୍ଟ ଅଧିକାଂଶ କବିତା ରଚିତ ହୋଇଛି । ପ୍ରଥମ ମହାଯୁଦ୍ଧରେ ଶାସକ ସହିତ ସହଯୋଗର ଆହ୍ୱାନରେ ରଚିତ ହୋଇଛି 'ଉଦ୍‌ବୋଧନ' କବିତା । ଯେଉଁ କବି ଦୃପ୍ତକଣ୍ଠରେ ଘୋଷଣା କରିଥିଲେ, "ମୁଁ ରାଜ ସେବାରେ ଲାଳସୀ ନୁହେଁ । ଇଂରେଜ ଠାରୁ ବଳି ବଡ଼ ରାଜା ଆଉ କଏ ଅଛି ? ଯେତେବେଳେ ସେହି ରାଜାଙ୍କ ସେବାରେ ବୈରାଗ୍ୟ ଜନ୍ମି ଆସିଲାଣି'— ସେହି କବି ପୁଣି ଇଂରେଜ ସ୍ତୁତି କରିଛନ୍ତି, "ନୁହେଁ ତାହା ରାଜ / ଦେବତାଙ୍କ ବାକ୍ୟ / ତୁଚ୍ଛବାକ୍ୟ ନୁହେଁ, ଗୌରବ କର, ଦେଉଛନ୍ତି ନର- / କଳେବର ଧରି / ଦେବତା ଆମ୍ଭର ଭାରତେଶ୍ୱର । ଭାରତ ଭୂପତି / ଧରମ ମୂରତି / ଯୁଗେ ଯୁଗେ ରକ୍ଷଣକନେ ଦକ୍ଷ, × × ରାଜା ପାଇଁ ଧନ / ଜୀବନ କି ମନ / ଦାନେ ଏତେବେଳେ ହେଲେ କୁଣ୍ଠିତ. ବରଂ ଏତଦର- / ଭକ୍ତି ବପଦର- / ପଦେ, ପଦେ ପଦେ, ହେବ ଲୁଣ୍ଠିତ ।" ଭାଗ୍ୟର କି ନିଦାରୁଣ ଅଟ୍ଟହାସ୍ୟ ! ୧୯୧୯ ମସିହାରେ ପ୍ରକାଶିତ 'ଶାନ୍ତ ସଙ୍ଗୀତ'ରେ ଏହି ସ୍ୱରଟି ସ୍ପନ୍ଦିତ ।

'ଭାରତୀ ଭାବନା' ବୋଧହୁଏ କବି ଜୀବନର ଅନ୍ତିମ ରଚନା । ମୃତ୍ୟୁର ଏକବର୍ଷ ଚାରିମାସ ପୂର୍ବରୁ ଏହା ପ୍ରକାଶିତ । ଏଥିରେ ବଳିୟ ମୁଖୀ କବି ପ୍ରତିଭାର ପଶ୍ଚାଦପସରଣ ଘଟିଛି । ସଳିତା ଲିଭିଯିବା ପୂର୍ବରୁ ଶେଷ ଶକ୍ତିରେ ପୂର୍ଣ୍ଣ ତେଜରେ ଜଳି ଉଠିଛି । ପୁନର୍ବାର ଆମେ ଦେଖିବାକୁ ପାଉଛୁ, ସେଇ ପ୍ରାଚୀନ କବିଙ୍କୁ ଶାସକ-ଶକ୍ତିର ଶୋଷଣ ବିରୁଦ୍ଧରେ ଯେ ସାରାଜୀବନ ଧରି ସ୍ୱର ଉତ୍ତୋଳନ କରି ଆସିଛନ୍ତି ।

ତତ୍କାଳୀନ ସମୟର ପ୍ରାଣ-ସ୍ପନ୍ଦନଟି ଏହି କବିତାରେ ପ୍ରକଟିତ । ୧୯୨୦ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ଅସହଯୋଗ ଆନ୍ଦୋଳନର ପ୍ରସ୍ତାବଟି ଗ୍ରହଣ କରିନେଲେ, କିନ୍ତୁ ଆଂଶିକ ଶାସନ-ସୁଯୋଗ କାମନା କରୁଥିବା ଅନେକ ରକ୍ଷଣଶୀଳ ନେତା ଏହାକୁ ସମର୍ଥନ କରିପାରନ୍ତି ନାହିଁ । ଓଡ଼ିଶାରେ କୁଳବୃଦ୍ଧ ମଧୁସୂଦନ ମଧ୍ୟ ଏଥିରୁ ନିଜକୁ ଦୂରେଇ ନିଅନ୍ତି । ମାତ୍ର ପରିବର୍ତ୍ତନବାଦୀ ଯୁବଶକ୍ତି କୌଣସି ଆପୋସ୍‌ରେ ବିଶ୍ୱାସୀ ନହୋଇ ପୂର୍ଣ୍ଣ ସ୍ୱାଧୀନତା ଦାବୀରେ ଆନ୍ଦୋଳନ ଆରମ୍ଭ କରିଦିଅନ୍ତି । ଓଡ଼ିଶାରେ ଗୋପବନ୍ଧୁଙ୍କ ନେତୃତ୍ୱରେ ଆନ୍ଦୋଳନର ପ୍ରସ୍ତୁତି ଆରମ୍ଭ ହୁଏ । ୧୯୨୧ର ମସିହାରେ ଗାନ୍ଧିଜୀଙ୍କର ଓଡ଼ିଶା ଆଗମନ ଯୁବଶକ୍ତିକୁ ନୂତନ ଉଦ୍ଦୀପନା ଯୋଗାଇଲା । ସ୍ୱତନ୍ତ୍ର ଓଡ଼ିଶା-ପ୍ରଦେଶ ଗଠନ ନିମନ୍ତେ ଯେଉଁ ଦାବୀ ଉତ୍କଳ ସମ୍ମିଳନୀ ଜରିଆରେ ଏଯାଏଁ ହୋଇ ଆସୁଥିଲା, ତାହାକୁ ବାତିଲ କରିଦିଆଯାଇ, ଭାରତର ସ୍ୱାଧୀନତା ନିମନ୍ତେ ସମସ୍ତ ଶକ୍ତି ବିନିଯୋଗ ନିମନ୍ତେ ଆହ୍ୱାନ ଦିଆଗଲା । ଦେଶର କବି-ଶକ୍ତି ପ୍ରୟୋଜନର ଏଇ ମୁହୂର୍ତ୍ତରେ ନିଜକୁ ଦୂରେଇ ରଖି ପାରିଲେ ନାହିଁ । ସେମାନଙ୍କ ରଚନାରେ 'ଜାତୀୟତା'ର ଝଙ୍କାର ନିନାଦିତ ହେଲା । 'ଭାରତୀ-ଭାବନା' ଏହି ସମୟର ପ୍ରସୂତ ।

୧୯୧୯ ମସିହାରେ ଗଙ୍ଗାଧର ଲେଖିଥିଲେ, "ସମ୍ମିଳନୀ-କର ପାଇବା ଏଥର ଓଡ଼ିଆମାନେ ନିଶ୍ଚୟ ହେ—" ଉତ୍କଳ ସମ୍ମିଳନୀର ସଫଳତା ଉପରେ ଦୃଢ଼ ଆସ୍ଥା ରଖିଥିବା ଏହି ସ୍ୱର କିନ୍ତୁ ଅସହଯୋଗର ଆହ୍ୱାନରେ ବଦଳି ଯାଇଥିବାର ଦେଖିବାକୁ ମିଳୁଛି । ଦ୍ୟର୍ଥବୋଧକ 'ଭାରତୀ-ଭାବନା' କବିତାରେ ଶାସକ-ଶକ୍ତି ବିରୁଦ୍ଧରେ ତୀବ୍ର ସମାଲୋଚନାର ସ୍ୱରରୁ ଏହାର ପରିଚୟ ମିଳିଥାଏ । ଜାତୀୟତାର ଏହି ବ୍ୟଞ୍ଜନାତ୍ମକ ପ୍ରକାଶ ଗଙ୍ଗାଧରଙ୍କ ଶାସନ-ଭୀତିର ପରିଚୟସୂଚକ, ଏଭଳି ଅନୁମାନ ଅଯୌକ୍ତିକ ନୁହେଁ । ଚିରଜୀବନ ଅବନତ ଭାବରେ ରହି ଜୀବନର ଶେଷ ଭାଗରେ ସ୍ୱକୀୟତା ପ୍ରକାଶ କରିବାକୁ କବି ସମର୍ଥ ହୋଇନାହାନ୍ତି । ତାହା ସମ୍ଭବ ମଧ୍ୟ ନୁହେଁ । ଶିଶୁ-ବଟବୃକ୍ଷ ଉପରେ ବିରାଟ ଏକ ପାଷାଣର ଭାର ଲଦି ଦେଇ କିଛି ବର୍ଷପରେ ପାଷାଣକୁ ଅପସାରଣ କଲେ ମଧ୍ୟ ଦ୍ରୁମରାଜ ତାହାର ସ୍ୱାଭାବିକ ଦୃପ୍ତ ଭଙ୍ଗୀରେ ମଥା ଉତ୍ତୋଳନ କରିପାରେନାହିଁ । କବିଙ୍କ ପକ୍ଷରେ ଏହା ଏକାନ୍ତ ଭାବରେ ସତ୍ୟରୂପେ ପ୍ରମାଣିତ ହୋଇଛି । ଶ୍ଳେଷାଳଙ୍କାରରେ ରଚିତ ହୋଇଥିଲେ ହେଁ ଅର୍ଥାବବୋଧରେ କିଛିମାତ୍ର ଅସୁବିଧା ହେଉନଥିବାରୁ କବିଙ୍କ ପକ୍ଷରେ ଏହି ଉଦ୍ୟମ ମଧ୍ୟ ଯେ ନିତାନ୍ତ ସାହସିକ ହୋଇଥିଲା, ଏକଥା ସତ୍ୟ । ଜାତୀୟତାର ସ୍ୱର ଉତ୍ତୋଳନ ଏ କବିତାର ମୂଳ ଉଦ୍ଦେଶ୍ୟ । ତଥାପି କମନୀୟ-କଳ୍ପନା ବିଳାସର ରୂପ ପାଠକକୁ ଅବଶ୍ୟ ମୁଗ୍ଧ କରିବ । ସ୍ଥାନେ ସ୍ଥାନେ ହାସ୍ୟରସର ବ୍ୟଞ୍ଜନା ମାଧ୍ୟମରେ (ଷଣ୍ଢ ମାଣିବାର / ଧରମ ଲୁମର / ବିଷକଣ୍ଟ ଆହାର) ଏହାର ଯେଉଁ ଆଳଙ୍କାରିକ ସୌନ୍ଦର୍ଯ୍ୟ ପ୍ରକାଶିତ, ତାହା ଯେ କବି-ପ୍ରତିଭାର ପରିଚୟସୂଚକ, କବିଙ୍କ ଅନ୍ତିମ ରଚନା ସମ୍ପର୍କରେ ଏହି ମନ୍ତବ୍ୟ ହିଁ ଯଥାଯଥ ।

କବିଙ୍କର କର୍ତ୍ତବ୍ୟ ସମାପ୍ତିର ପର୍ଯ୍ୟାୟରେ । ଅସ୍ତସୂର୍ଯ୍ୟର ସ୍ନିଗ୍ଧ-କିରଣରେ ଓଡ଼ିଆ ସାହିତ୍ୟ ଆକାଶ ଦୀପ୍ୟମାନ । ଏଥର 'ଚିର ବିଦାୟ' ନେବାର ସମୟ ଆଗତ । ୧୮୬୨ରୁ ୧୯୨୪ : ସମୟ କିଛି କମ୍ ନୁହେ । ଉଦୟ ; ପୂର୍ଣ୍ଣିମାରେ । ପୂଣ୍ୟର ସ୍ନିଗ୍ଧ ଦୀପ୍ତିରେ ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ଉଦ୍ଭାସିତ କରିବାର ଲକ୍ଷ୍ୟ ନେଇ । ସେଇ ଲକ୍ଷ୍ୟ ଏବେ ପରିପୂର୍ଣ୍ଣ । କଳା ଅଙ୍ଗ ହିସାବରେ ସାହିତ୍ୟକଳାର ଶ୍ରେଷ୍ଠତ୍ୱ ସ୍ୱୀକାର କରାଗଲେ ହେଁ, କଳା ନିମନ୍ତେ କଳା ଚର୍ଚ୍ଚା କରି ସରସ୍ୱତୀଙ୍କୁ କଳୁଷିତ କରିବା ନିତାନ୍ତ ଏକ ତ୍ରୁଟିପୂର୍ଣ୍ଣ ଧାରଣା । ସାହିତ୍ୟ ପରିଚ୍ଛଦରେ ଆସିଲେ ମଧ୍ୟ, ପାପ ପାପ ହିଁ । ପ୍ରଜ୍ୱଳିତ ଅଗ୍ନି-ତୁଲ୍ୟ ତାର ରୂପ । "ରୂପରେ ରମ୍ୟ ଦିଶିଲେ ହେଁ ସ୍ପର୍ଶ ତାର ଅତି ମାରାତ୍ମକ ।" ତେଣୁ 'ସତ୍ୟ'କୁ ଭୁଲିଲେ ଚଳିବ ନାହିଁ । ଅବହେଳାକଲେ ଚଳିବ ନାହିଁ ଶିବକୁ । ସତ୍ୟ ଆଉ ଶିବର ଚର୍ଚ୍ଚା କରାଗଲେ ସୁନ୍ଦର ଆପେ ଆପେ ଆତ୍ମ-ପ୍ରକାଶ କରିବ । ଜୀବନ ସତ୍ୟ—ଜୀବନ ଶିବ—ତେଣୁ ହିଁ ଏହା ସୁନ୍ଦର । ଏକ ପରିଶୁଦ୍ଧ / ପରିଶୀଳିତ ଜୀବନ ଆତ୍ମାକୁ ଅଖଣ୍ଡ ଶାନ୍ତି ପ୍ରଦାନ କରିଥାଏ । ନୀତିହୀନ ଜୀବନ ମନକୁ ଅଶାନ୍ତି-ଆବର୍ତ୍ତରେ ନିମଜ୍ଜିତ କରାଏ । ଜୀବନ ତ ଏକ ମହାକାବ୍ୟ । ଏଥିରେ ଯଦି ନୀତିର ନିର୍ଦ୍ଦେଶନା ପୂର୍ଣ୍ଣତା ପଥରେ ବ୍ୟକ୍ତିକୁ ଅଗ୍ରସର କରାଇଦେଇ ପାରିଲା, ତେବେ ଯଥାର୍ଥ କାବ୍ୟରେ ସେଇ ନୀତି / ପୁଣ୍ୟ / ପବିତ୍ରତାର ଆବାହନ କରାନଯିବ କାହିଁକି ? କେବଳ ଚିନ୍ତା ନୁହେଁ, କାର୍ଯ୍ୟରେ ମଧ୍ୟ ଏହାର ପ୍ରୟୋଗ କରାଯିବା ଆବଶ୍ୟକ । ତେଣୁ 'ଅହଲ୍ୟାସ୍ତବ', 'ଇନ୍ଦୁମତୀ', 'କୀଚକ ବଧ' ପ୍ରଭୃତିର ରଚନାରେ ଏହି 'ନୀତି'ର ଉପାସନା କରାଗଲା । ଜୀବନଠାରୁ ଏଠାରେ ଶିଳ୍ପକୁ ସ୍ୱତନ୍ତ୍ର ଭାବରେ ବିଚାର କରିହେବ ନାହିଁ । ଜୀବନ ମହତ୍ ହେଲେ ଶିଳ୍ପ ଆପେ ଆପେ ମହତ୍ ହୋଇଯିବ । କଳାରେ କଳଙ୍କର ନିମନ୍ତେ ଉପସ୍ଥିତି ଏକ ସର୍ବଜନୀନ ସତ୍ୟନୁହେଁ । ବରଂ ଏକ ମହତ୍ତ୍ୱ-ଜୀବନର ନୈତିକ ପଦଚିହ୍ନ ବିନା ହିଁ ଧାରେ

ଅନ୍ୟମାନଙ୍କ ଦ୍ୱାରା ଅନୁସୃତ ହୁଏ । ଗଙ୍ଗାଧରଙ୍କ ବ୍ୟକ୍ତିଗତ ଜୀବନ ସହିତ ତାହାଙ୍କ ଶିଳ୍ପୀ-ସତ୍ତାର ଅଭୂତ ସମନ୍ୱୟରୁ ଏହାହିଁ ପ୍ରମାଣିତ ହୁଏ ।

ଉଚ୍ଚ-ସାହିତ୍ୟ କର୍ମ ନିମନ୍ତେ ଗୋଟିଏ ଧରଣର ଅନ୍ତରଙ୍ଗ Involvement ର ପ୍ରୟୋଜନ ହୋଇଥାଏ । ଏହି Involvement ଯେତେ ଗଭୀର ହୋଇଥାଏ, ଶିଳ୍ପ ହୁଏ ସେତେ ପ୍ରଭାବଶାଳୀ । ଏଥି ନିମନ୍ତେ ପ୍ରୟୋଜନ ହୋଇଥାଏ କବିର ସ୍ୱଚ୍ଛ ଦୃଷ୍ଟି ଏବଂ ଋଜୁ ଅନୁଭୂତିର । ଏହାକୁ 'ଆସକ୍ତି' ବା 'ପ୍ରେମ' କୁହାଯାଇପାରେ । ଶିଳ୍ପ କର୍ମରେ ଏଇ ପ୍ରେମର ସ୍ପର୍ଶ ନ ଲାଗିଲେ, ଏହା ସ୍ମରଣୀୟ ପର୍ଯ୍ୟାୟର ହୋଇ ନପାରେ । ଏଇ ପ୍ରେମ ପୁଣି ଈଶ୍ୱର ପ୍ରେମ ହୋଇପାରେ, ପ୍ରକୃତି / ମାନବ / ମାନବେତର ପ୍ରାଣୀ ପ୍ରଭୃତି ମଧ୍ୟ ଏହାର ବିଷୟୀଭୂତ ହୋଇପାରନ୍ତି । ଏଇ 'ପ୍ରେମ' ବିରହିତ ସାହିତ୍ୟ ସାହିତ୍ୟ ପଦବାଚ୍ୟ ନୁହେଁ । ଗଙ୍ଗାଧରଙ୍କ କ୍ଷେତ୍ରରେ ଏହି 'ଆସକ୍ତି' କୋଟି ରୂପରେ ଆତ୍ମ-ପ୍ରକାଶ ଲାଭକରିଛି । ତାଙ୍କର ଈଶ୍ୱରାନୁରାଗ, ଅନ୍ତରଙ୍ଗ ପ୍ରକୃତି-ପ୍ରୀତି ତଥା ମମତାମୟ-ମାନବ-ପ୍ରେମ ମାଧ୍ୟମରେ ଏଇ 'Involvement' ର ଜାତ୍ୟଧାରାଟି ଆତ୍ମ-ପ୍ରକାଶ ଲାଭକରିଛି । ମେହେରଙ୍କ ଶିଳ୍ପ-ସଂପଦରେ 'ଆଦର୍ଶ'ର ଉପାସନା ଯେମିତି ସାର୍ଥକ ଭାବରେ କରାଯାଇଛି, ସେମିତି ଅନୁରକ୍ତି ପ୍ରକାଶ ପାଇଛି, ଜୀବନର ଶାଶ୍ୱତ-ମୂଲ୍ୟ ବୋଧ ପ୍ରତି । ଆଦର୍ଶ ଆଉ ବାସ୍ତବର ସଂଘର୍ଷରୁ ହିଁ ମେହେର ଆହରଣ କରିଛନ୍ତି, ତାଙ୍କ କାବ୍ୟର ଯଥାର୍ଥ ବକ୍ତବ୍ୟଟି । ଶିଳ୍ପ-ରଚନାରେ ଏଇ 'ଆଦର୍ଶ' କଦାପି ତାହାର ମୂଲ୍ୟବୋଧ ହରାଇନାହିଁ । ଭାବ ପ୍ରବଣତାରେ ଭାସିଯାଇ କଦାପି ଉଚ୍ଚାରଣ କରିନାହିଁ, ଏଭଳି ପଦଟିଏ ଯାହାର ତରଳ ପ୍ରୟୋଗ ହୁଏ ତ ତାହାଙ୍କର ଲୋକପ୍ରିୟତା ବଢ଼ାଇ ଦେବ । ମାତ୍ର ଯାହାର ଶାଶ୍ୱତ-ସାରସ୍ୱତ ମୂଲ୍ୟ ହେବ ଶୂନ୍ୟ । ମେହେର 'ଜୀବନ'ର ଭଙ୍ଗୁରତାରେ ବିଶ୍ୱାସୀ ନଥିଲେ । ତାହା ପ୍ରାଚ୍ୟ ଆଦର୍ଶ ମଧ୍ୟ ନୁହେଁ । ମୃତ୍ୟୁର ଅନନ୍ତ ପାରାବାରରେ ଜୀବନ ନିଜର ସତ୍ତା ହରାଏ । ମାତ୍ର ତାହା ନବ-ରୂପରେ ଆତ୍ମ-ପ୍ରକାଶ କରିବାକୁ ମାତ୍ର । ଆତ୍ମାର ବିଲୟ ନାହିଁ । ତେଣୁ ସୀତା କୁହନ୍ତି, "ଜୀବନେ ନ ପାରିଲେ ମୋତେ ମରଣେ / ସେବିକା କରିଦେବ ପ୍ରଭୁ ଚରଣେ—" ମୃତ୍ୟୁର ନିଷ୍ଠୁରଣ ପରିଣତି ଜୀବନ ବୃକ୍ଷରେ ଅମଳିନ ଫୁଲ ଫୁଟାଇବାରେ ସହାୟକ ହୋଇଥାଏ । ତେଣୁ ଚିରନ୍ତନ ମୃତ୍ୟୁ ଏଠାରେ ଭୟଙ୍କର ନୁହେଁ । ବରଂ ଏହାର କଲ୍ୟାଣମୟୀ ରୂପହିଁ ମେହେର ସାହିତ୍ୟର ପ୍ରତିପାଦ୍ୟ ।

ମନୋରଞ୍ଜନ-ଲଘୁତା କୁ କବି ସର୍ବଦା ପରିହାରକରି ଅସିଛନ୍ତି । ଅଧିକାଂଶ କାବ୍ୟରେ 'ପ୍ରେମ' ମୂଳ ବିଷୟବସ୍ତୁ ରୂପେ ଗୃହୀତ ହେଲେ ହେଁ କୁତ୍ରାପି ନିଜ ଆଦର୍ଶରୁ ଦୂରେଇ ଯାଇନାହିଁ । ବରଂ ଶାଶ୍ୱତ ରୂପରେ ହିଁ ପ୍ରକଟିତ ହୋଇଛି ।*

ଶିଳ୍ପକର୍ମ ନିମନ୍ତେ କବି କେବଳ ଥରେ ମାତ୍ର ସମାଲୋଚିତ ହୋଇଥିବାର ଦେଖିବାକୁ ମିଳୁଛି । ଉତ୍କଳର ତତ୍କାଳୀନ ଜ୍ଞାନୀ / ଗୁଣୀ ମେହେର ପ୍ରତିଭାର ଅନୁରାଗୀ ଥିଲେ । ତେଣୁ ସାରାଜୀବନ ସେ

* କିନ୍ତୁ ସେ ପ୍ରେମ ସଂଯତ, ମହତ୍, ଉଚ୍ଚସ୍ତରଶ୍ରିତ । ଯୌବନ ରୂପର ମୋହଗ୍ରସ୍ତ ତଥାକଥିତ ପ୍ରେମର ଉନ୍ମତ୍ତତା ଏଥିରେ ନାହିଁ ; କିନ୍ତୁ ଏଥିରେ ମାଧୁରୀ ଅଛି ; ତ୍ୟାଗ ଅଛି, ସ୍ନେହ ଅଛି । ଏହା ନୈତିକତାର ଶକ୍ତ ଗଧାର ଉପରେ ଦଣ୍ଡାୟମାନ ତେଣୁ ଅସାଧାରଣ ହେଲେ ହେଁ ମନୋହର, ନମସ୍ୟ, ବସ୍ତୁସ୍ୱକର —"

[ ମେହେରଙ୍କ ମହତ୍ତ୍ୱ —ଡ଼ଃ. ମାୟାଧର ମାନସିଂ — ପୃ. ୧୩ ]

ଅନ୍ୟର ପ୍ରଶଂସା ଭାଜନ ହୋଇ ଆସିଥିଲେ ହେଁ, ନିଜର ବିନମ୍ରତା ଗୁଣ କେବେହେଲେ ବିସର୍ଜନ ଦେଇନାହାନ୍ତି । ଫଳ ଭାରାବନତ ବୃକ୍ଷତୁଲ୍ୟ ସର୍ବଦା ନମିତ ହୋଇ ରହିଛନ୍ତି । ନିଜର ଦୀର୍ଘ ବାଷଠି ବର୍ଷ ଜୀବନକାଳ ମଧ୍ୟରେ କବି କେବେ ଏହାର ବ୍ୟତିକ୍ରମୀ ହୋଇଥିବାର ଜଣାଯାଉ ନାହିଁ ।

ଶେଷ ଜୀବନରେ ଅବସର ଭୋଗୀ ହୋଇ ମଧ୍ୟ ସେ ନିର୍ଦ୍ଦ୍ୱନ୍ଦ୍ୱରେ ନିଜର ଅବସର ଜନିତ ଦୁର୍ଲ୍ଲଭ ଶାନ୍ତିକୁ ଉପଭୋଗ କରିପାରି ନଥିଲେ । ନାନା ଜଞ୍ଜାଳରେ ଜଡ଼ିତ ହୋଇପଡ଼ି କବିଚିତ୍ତ ନିତାନ୍ତ ଅଶାନ୍ତ ହୋଇ ଉଠିଥିଲା । ଏ ସମ୍ପର୍କରେ ଶ୍ରୀ ମାଧବ ମିଶ୍ରଙ୍କ ମନ୍ତବ୍ୟରୁ ଜଣାଯାଇ ଥାଏ ଯେ, ସତ୍ୟାନୁରକ୍ତ / ନ୍ୟାୟ ପ୍ରୀତି ହେତୁରୁ କବିଙ୍କୁ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।☆ ଅଶାନ୍ତିର ଆବର୍ତ୍ତରେ ବୁଡ଼ିରହି ମଧ୍ୟ କବି ନିଜର ମୂଳ ଆଦର୍ଶରୁ ଲକ୍ଷ୍ୟଚ୍ୟୁତ ହୋଇନଥିଲେ । ଜୀବନ ବିପନ୍ନମୟରେ ମଧ୍ୟ ପରର ହିତ ସାଧନ କରିବା ନିମନ୍ତେ ସେମାନେ କେବେ ପଶ୍ଚାତ୍ପଦ ହେଉନଥିଲେ । ସର୍ବଜନ ସୁଖ ହିଁ କବିଙ୍କର ଆତ୍ମସୁଖ ଥିଲା । ଏଥିନିମନ୍ତେ ବରପାଲିରେ କବି ପ୍ରତିଷ୍ଠା କଲେ 'ସାଧୁ ସମିତି' । ଅତ୍ୟାଚାରର ପ୍ରତିବାଦରେ ଏମାନଙ୍କର କାର୍ଯ୍ୟକଳାପ ତତ୍କାଳୀନ ବରପାଲିର ଯୁବକ ଜମିଦାରଙ୍କ ଦ୍ୱାରା ଉଦାର ଭାବରେ ଗୃହୀତ ହୋଇ ନଥିଲା । ତେଣୁ ଆରମ୍ଭ ହେଲା ଅତ୍ୟାଚାର ଦୁର୍ବଳ ଉପରେ ସବଳର । କବି ଏଥି ସହିତ ପୂର୍ବରୁ ଅପରିଚିତ ନ ଥିଲେ । ତେଣୁ ପର୍ବତର ଅଟଳତା ନେଇ ସହ୍ୟ କରିଯିବାକୁ ଲାଗିଲେ ଏହି ଅମାନବୋଚିତ ଆଚରଣକୁ । ଏହି ଘଟଣା କବିପୁତ୍ର କବିମୃତ୍ୟୁର ଦୀର୍ଘ ଦିନପରେ ବର୍ଣ୍ଣନା କରିଛନ୍ତି ।✳ ମୃତ୍ୟୁ ଶଯ୍ୟାରେ ମଧ୍ୟ କବି ଅତ୍ୟାଚାରୀର କ୍ରୋଧ-ବହ୍ନିର କବଳରୁ ମୁକ୍ତ ନଥିଲେ ।★ ଜୀବନ-ସାରା ଯେ ନିଜେ ଅନ୍ୟର ଅମଙ୍ଗଳ କାମନା କରିନାହାନ୍ତି, ଅନ୍ୟକୁ ତିଳେ ମାତ୍ର ଅସୁବିଧାରେ ପକାଇବା ନିମନ୍ତେ ଇଚ୍ଛା କରିନାହାନ୍ତି, ତାଙ୍କ ଜୀବନର ଏଇ ଅନ୍ତିମ ପରିଣତିରେ ବୋଧହୁଏ ତାଙ୍କର 'ଅନ୍ତବାଣୀ' ସଫଳ ହୋଇଥିଲା । କବି ଲେଖିଥିଲେ, "ଜାଣିଲି ବେଶ ନୁହେଁ ଗୁଣର ଚିହ୍ନ / ଉପରେ ସାଧୁ ବେଶ ଭିତରେ ଭିନ୍ନ—" ଏହି ସାଧୁବେଶଧାରୀ ବ୍ୟକ୍ତିମାନେ ହିଁ ୨

---

☆ "ମାତୃଭୂମି ବରପାଲିରେ କେତେକ ଅଶାନ୍ତି, ଅନ୍ୟାୟ, ଅତ୍ୟାଚାରର ନିବାରଣ କଲେ । ଅଗତ୍ୟା ତାହାଙ୍କ ସତ୍ୟ-ନ୍ୟାୟ-ଧର୍ମ ଦୃଢ଼ ହୃଦୟ ତତ୍ର ସଂଶ୍ଳିଷ୍ଟ ତତ୍କାଳୀନ ସ୍ୱଜନବର୍ଗର ବିଦ୍ରୋହୀ ହୋଇଉଠିଲା । ଏହି ଭୀଷଣ ଅଶାନ୍ତ ସମୟରେ ସତ୍ୟ ଓ ନ୍ୟାୟର ସମର୍ଥନ ପାଇଁ କବିଙ୍କୁ ଯେପରି ନିର୍ଭୀକ ଭାବରେ ଅସାଧାରଣ ଧୈର୍ଯ୍ୟ, ସହିଷ୍ଣୁତା ସହିତ କାର୍ଯ୍ୟ କରିବାକୁ ପଡ଼ିଥିଲା, ତାହା କେବଳ ତାଙ୍କପରି ବୀର ହୃଦୟ ବ୍ୟକ୍ତିଙ୍କ ଠାରେ ହିଁ ସମ୍ଭବ—" [ ଗଙ୍ଗାଧର ଗ୍ରନ୍ଥାବଳୀ — ପୃ. 'ଜ' ]

✳ "ଅତ୍ୟାଚାର ନିକଟରେ ମସ୍ତକ ଅବନତ କରିବା କବିଙ୍କର ପ୍ରକୃତି ବିରୁଦ୍ଧ ଥିଲା । × × × ଯେଉଁଠାରେ ଲୋକଙ୍କ ଉପରେ ଅତ୍ୟାଚାର ହେଉଥିଲା ସେ ତହିଁର ପ୍ରତିରୋଧ ପାଇଁ ବାଧ୍ୟ ହେଉଥିଲେ । ଏଥିପାଇଁ ତାଙ୍କୁ ନାନା ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଥିଲା । ଧୋବା, ଭଣ୍ଡାରି, କୂଅ, ପୋଖରୀ, ଦେବ ମନ୍ଦିର ଆଦି ତାଙ୍କୁ ବାସନ୍ଦ କରାଯାଇଥିଲା । ଏପରିକି ତାଙ୍କୁ ହତ୍ୟା କରିବାପାଇଁ ମଧ୍ୟ ଉଦ୍ୟମ ହୋଇଥିଲା ।"
[ ଶ୍ରୀ ଭଗବାନ୍ ମେହେର — 'ସମାଜ' ତା ୧୪ - ୪ - ୭୦ —
ପ୍ରଫେସ୍ର ବଳିଆ ଓ ଗଙ୍ଗାଧର, ଶ୍ରୀ ଅସିତ୍ କବି — ପୃ. ୧୬ ]

★ "ଏପରିକି ତାଙ୍କ ଅନ୍ତିମ ସମୟରେ ଚିକିତ୍ସକ ଦ୍ୱାରା ତାଙ୍କୁ ବିଷ ପ୍ରୟୋଗକରି ମାରି ଦେବାର ଚକ୍ରାନ୍ତ ମଧ୍ୟ ହୋଇଥିବାର ଶୁଣା ଯାଇଥିଲା ।" ( ତତ୍ରୈବ )

ଗଙ୍ଗାଧରଙ୍କର ଅନ୍ତିମ-ଜୀବନକୁ ସମସ୍ୟା ସଙ୍କୁଳ କରିଥିଲେ । ଆର୍ଥିକ-ସ୍ୱଚ୍ଛଳତା ତାଙ୍କର କେବେ ନଥିଲା । ତଥାପି ନିଜ ପ୍ରୟୋଜନରେ କେବେ ତାଙ୍କୁ ଅନ୍ୟ ନିକଟରେ ହାତପାତିବାକୁ ହୋଇନାହିଁ, ବରଂ ସେ ମନେ କରୁଥିଲେ, "ଅଳ୍ପ ବେଶୀ ସମସ୍ତଙ୍କର ଅଭାବ ଅଛି । ରାଜା ମହାରାଜାଙ୍କୁ ମଧ୍ୟ ଏହା ଛାଡ଼ ନାହିଁ । କିନ୍ତୁ ଦେବାକୁ ଅନେକଙ୍କର ପ୍ରାୟ କଷ୍ଟ ହୁଏ । କାହାରି ମନରେ କଷ୍ଟ ଦେବା କିମ୍ବା ନିଜ ଭଦ୍ରତା କ୍ଷୁର୍ଣ୍ଣ କରିବା ଉଚିତ ନୁହେଁ ।" ପ୍ରୟୋଜନକୁ ସୀମିତ କରିଦେଇ କବି ନିଜର ଅର୍ଥାଭାବ ଜନିତ ଶୂନ୍ୟତାକୁ ପୂରଣ କରିଦେଇଥିଲେ ହେଁ ତଥାପି ଶାନ୍ତି ପାଇ ପାରିନଥିଲେ । ଆଜୀବନ ସଂସାର-ପଥର ନିଃସଙ୍ଗଯାତ୍ରୀ ଏହି କବି ଅନ୍ତିମ ସମୟରେ ସଂସାର କ୍ଷେତ୍ରରୁ ଯେଉଁଭଳି ବ୍ୟବହାର ପାଇଲେ, ତାହା ଯେଉଁଭଳି ଜଘନ୍ୟ, ସେଇଭଳି ଘୃଣ୍ୟ ମଧ୍ୟ ।

ଜରା ଆସିଥିଲା ମୃତ୍ୟୁର ବହୁପୂର୍ବରୁ । ସାଂସାରିକ ବ୍ୟବହାରରେ ଅନୁଦାରତା ତାଙ୍କ ମନକୁ ସଂସାର ପ୍ରତି ବୀତସ୍ପୃହ କରାଇ ଦେଇଥିଲା ।★ ଅଶାନ୍ତିର ଘନ-ଅନ୍ଧକାର ମଧ୍ୟରେ ଏକମାତ୍ର ଶାନ୍ତିର ଆଲୋକ ଥିଲେ ଶ୍ରୀ ବ୍ରଜମୋହନ ପଣ୍ଡା । ଅଯାଚିତ ଉପସ୍ଥିତ ଏହି ବନ୍ଧୁଙ୍କୁ ଗଙ୍ଗାଧର ନିଜର ତ୍ରାଣକର୍ତ୍ତା ବୋଲି ମନେ କରିଥିଲେ । ବହୁ ପୂର୍ବରୁ ବ୍ରଜମୋହନଙ୍କ ପ୍ରତି ଗଙ୍ଗାଧରଙ୍କ ନିର୍ଭରଶୀଳ ମନୋଭାବ ପ୍ରକଟିତ ହୋଇଥିଲା ।✳ ବ୍ରଜମୋହନ ହିଁ ତାଙ୍କ ମନର ଗ୍ଲାନି ସମସ୍ତ ଦୂରକରି ଦେଇଥିଲେ । ତେଣୁ କୃତଜ୍ଞ କବି ତାଙ୍କୁ ଲେଖିଥିଲେ, "ମୁଁ ଆପଣଙ୍କୁ ଜୀବନର ଚତୁର୍ଥ ସମୟରେ ପାଇଅଛି । ମୁଁ ଏହି ସମୟରେ ବିଗତକାଳର ଅଭାବ ପୂରଣ କରିବାକୁ ବ୍ୟସ୍ତ ଏବଂ ଉପସ୍ଥିତ ସମୟର କର୍ତ୍ତବ୍ୟଭାର ମୋ ଉପରେ ନ୍ୟସ୍ତ—" [ ଗଙ୍ଗାଧର ପତ୍ରାବଳୀ ପୃ. ୬୭ ] କେଜାଣି କାହିଁକି ଅନ୍ତିମ ସମୟବେଳକୁ ସମ୍ପର୍କର ଏହି ଘନିଷ୍ଠତା ଆଉ ନ ଥିଲା । ହୁଏତ ସ୍ୱଭାବ-ବିନମ୍ର କବି ତାଙ୍କର ଏହି ତରୁଣବନ୍ଧୁଙ୍କୁ ନିଜର ବ୍ୟକ୍ତିଗତ ସମସ୍ୟା ମଧ୍ୟରେ ଜଡ଼ିତ କରିବାକୁ ଚାହୁଁ ନଥିଲେ । କିମ୍ବା ଗୃହଜୀବନର ଭାବାକୁଳତାରେ ଯେଉଁ ଦାୟିତ୍ୱ ଶ୍ରୀ ପଣ୍ଡା ସ୍ୱୟଂ ଗ୍ରହଣ କରିଥିଲେ, ସଂସାରର ପ୍ରୟୋଜନରେ ତାହା କ୍ରମେ କ୍ରମେ ଶିଥିଳ ହୋଇ ଆସୁଥିଲା । ତଥାପି ଶ୍ରୀ ପଣ୍ଡା ୧୯୨୦ ବେଳକୁ ଅନୁଯୋଗ କରି ଲେଖିଥିଲେ, "ଆପଣ ବରପାଲିରେ ଅଛନ୍ତି, ହେଲେ ସୁଦ୍ଧା ଦେଖା ହୋଇପାରୁ ନାହିଁ । ମୋର ପୂର୍ବ ପତ୍ର ପାଇଥିଲେ କି ? ନୀରବ ରହିଲେ କାହିଁକି ? [ ଗଙ୍ଗାଧର ପତ୍ରାବଳୀ ପୃ. ୨୩୦ ] ଏ ସ୍ଥଳେ ଆମର ପ୍ରଥମ ଅନୁମାନ ସତ୍ୟ ହୋଇପାରେ । ଜୀବନ-ପଥରେ କବି ତେଣୁ ସମ୍ପୂର୍ଣ୍ଣ ଏକାକୀ ।

---

★ "ଦିନୁ ଦିନ ମୋର କି ଶାରୀରିକ, କି ମାନସିକ ସବୁ ବଳ ହ୍ରାସ ହୋଇ ଆସୁଛି । ହେବାର କଥା । ସଂସାରର ଗତି ବଡ଼ ବିରକ୍ତିକର ହେଉଅଛି । ଲୋକଙ୍କର ବ୍ୟବହାର ବଡ଼ ଭୟଙ୍କର ବୋଧ ହେଉଅଛି । ଏ ସବୁ ମୃତ୍ୟୁ ଆସନ୍ନତାର ଲକ୍ଷଣ କି ? ବହୁତ ଦିନ ବଞ୍ଚିଲିଣି । ମୃତ୍ୟୁ ଆଉ ଅବାଞ୍ଛନୀୟ ନୁହେଁ । ଏ ସବୁ ପ୍ରାଣର ଅବସାଦର ଲକ୍ଷଣ—"

[ ଗଙ୍ଗାଧର ପତ୍ରାବଳୀ ପୃ. ୨୧୦ ତା ୨୦ । ୧୧ । ୧୫ ଶଗର ପତ୍ର ]

✳ "ମୁଁ ଆପଣଙ୍କୁ ପାଇ ମୋର ଭବିଷ୍ୟତ୍ ଆଲୋକମୟ ଦେଖୁଅଛି । ମୋର ହୃଦୟରୁ ନୈରାଶ୍ୟ-ତିମିର ଦୂର ହୋଇଅଛି । ମୋର ସାହିତ୍ୟ-ସେବା ଫଳବତୀ ହେଲା ବୋଲି ଗଭୀର ଆନନ୍ଦ ଅନୁଭବ କରୁଅଛି—"

[ ଗଙ୍ଗାଧର ପତ୍ରାବଳୀ ପୃ. ୮, ତା ୧୯ । ୧ । ୧୦ ଶଖର ପତ୍ର ]

ନାନାବିଧ ଦୁଶ୍ଚିନ୍ତା / ପାରିବାରିକ ସମସ୍ୟାଗ୍ରସ୍ତ କବି ଦ୍ରୁତ ମୃତ୍ୟୁ ଆଡ଼କୁ ଆଗେଇ ଯାଉଥିଲେ । ଅସ୍ତସୂର୍ଯ୍ୟର ସହମାସ୍ତ ଆଲୋକରେ ଆଦିଗନ୍ତ ପ୍ଲାବିତ ହୋଇ ଯାଇଥିଲା । ଏଇ ବରିଷ୍ଠ-ପ୍ରତିଭାର ଆଡ଼ମ୍ବର-ବିହୀନ ଅନ୍ତିମ-ପରିଣତି ଦେଖିବା ନିମନ୍ତେ ସେତେବେଳେ ସହାନୁଭୂତିଶୀଳ ବନ୍ଧୁ ଜଣେ ହେଲେ ନଥିଲେ । ବିଦାୟୀର ଅନ୍ତିମ ଲଗ୍ନ ଆସିଲା ଏକ ଚୈତ୍ର ଅମାବାସ୍ୟା ରାତ୍ରିର ଗଭୀର ନିସ୍ତବ୍ଧତା ମଧ୍ୟରେ । ୧୯୨୪ ମସିହା ଚାରି ତାରିଖ ଏପ୍ରିଲ୍‌ରେ ଝାଉଁଳ ଆସୁଥିବା ଫୁଲଟି ଝଡ଼ି ପଡ଼ିଲା । ଶେଷ ହୋଇଗଲା ଏକ ବରିଷ୍ଠ କର୍ମମୟ ଜୀବନର ।

ଭାଷା ଓ ସାହିତ୍ୟର ଦାରିଦ୍ର୍ୟ ଦୂରକରିବା ନିମନ୍ତେ ଯେଉଁ ବ୍ୟକ୍ତି ଆଜୀବନ ସ୍ୱପ୍ନ ଦେଖି ଆସୁଥିଲା, ତାହାର ବିୟୋଗରେ 'ଉତ୍କଳ ଜନନୀ' ମାତ୍ର ପୁତ୍ରହୀନା ହେଲେ । ମାତ୍ର ପ୍ରତିଭାର ତ ମୃତ୍ୟୁ ନାହିଁ । ସାହିତ୍ୟ ପାଇଁ ବଞ୍ଚିଥିବା / ସାହିତ୍ୟ ନିମନ୍ତେ ଚିନ୍ତା କରୁଥିବା / ଗଙ୍ଗାଧରଙ୍କର ସାହିତ୍ୟ-ମୟ ରୂପଟି ଏ ଯୁଗରେ ସମ୍ଭବ କି ?



ରସ ରତ୍ନାକର

ଅହଲ୍ୟା ସ୍ତବ

ଇନ୍ଦୁମତୀ
ଉତ୍କଳ ଲକ୍ଷ୍ମୀ

କୀଚକ ବଧ

ପ୍ରଣୟ ବଲ୍ଲରୀ

ତପସ୍ୱିନୀ

ଅର୍ଘ୍ୟଥାଳୀ
କୃଷକ ସଙ୍ଗୀତ

କବିତାମାଳା

ଆରୋହ ——> <—— ଅବରୋହ

୧୮୮୫ ୧୮୯୨ ୧୯୦୩ ୧୯୧୪ ୧୯୨୪

( ଗଙ୍ଗାଧର ପ୍ରତିଭାର ଆରୋହ ଓ ଅବରୋହ )

*"Society, friend-ship and love,*
*Divinely bestowed upon man".*

[ W. Cowper ]

ମଣିଷ ମରିଯାଏ । ସ୍ମୃତିର ପଦଚିହ୍ନ ଉପରେ ପରସ୍ତ ପରସ୍ତ ଧୂଳିର ଆସ୍ତରଣ ଜମିଯାଏ । ଏମିତି ଦିନେ ସେଇ ଚିହ୍ନଟି ସମ୍ପୂର୍ଣ୍ଣ ଲୋପ ହୋଇ ବିସ୍ମୃତିର ଅତଳ-ସାଗରରେ ମିଳାଇଯାଏ । ଅସାଧାରଣ-ସତ୍ତ୍ୱ କ୍ଷେତ୍ରରେ କିନ୍ତୁ ଏହି ଚିରନ୍ତନୀ ସତ୍ୟଟି ବିଫଳ ହୋଇଥାଏ । ସାମାଜିକତାର ଉଦ୍ୟାନରେ ଫୁଲ ହୋଇ ଫୁଟି କିଛି ସମୟ ପାଇଁ ହେଲେ ମଧ୍ୟ ଯେଉଁ ସୁରଭି ସେ ବିତରଣ କରିଥାଏ, ତାହାର ପ୍ରଭାବ ଏତେ ଶୀଘ୍ର ଦୂର ହୋଇଯାଏ ନାହିଁ । ପରିଚିତ / ଅପରିଚିତ ମହଲ ସେଇ ସୁରଭିକୁ ଆଘ୍ରାଣ କରନ୍ତି, ସେଥିରୁ ପ୍ରେରଣା ସଂଗ୍ରହ କରନ୍ତି ଆଉ ଅଶ୍ରୁର ଉପଗୃହରେ ବିଦେହୀ-ଆତ୍ମାର ସ୍ମୃତି-ତର୍ପଣ କରନ୍ତି । ତେଣୁ ସେ ମରି ମଧ୍ୟ ପୁଣି ବଞ୍ଚେ — ବଞ୍ଚିଥାଏ କାଳକାଳକୁ ।

ମଣିଷ ସମାଜ ଗଢ଼ି ନିଃସଙ୍ଗ ଜୀବନର ବିଭୀଷିକାରୁ ଆତ୍ମରକ୍ଷା କରିବା ନିମନ୍ତେ ପ୍ରୟାସୀ ହୋଇଥାଏ । ସ୍ନେହ / ପ୍ରେମ / ଶ୍ରଦ୍ଧା ଆଉ ଶୁଭେଚ୍ଛା ମାଧ୍ୟମରେ ସେ ସାମାଜିକ ଜୀବନରେ ସମ୍ପର୍କ ବଢ଼ାଇଥାଏ । ଅନ୍ୟର ଦୁଃଖ / ସୁଖରେ ସମବ୍ୟଥୀ ହୋଇ ପାଖରେ ଠିଆ ହୁଏ । ନିଜ ଦୁଃଖ / ସୁଖରେ ଅନ୍ୟର ସମ୍ବେଦନଶୀଳତା କାମନା କରେ । ଏହାକୁ ହିଁ କହନ୍ତି ବନ୍ଧୁତା । ଈର୍ଷ୍ୟା / ଅସୂୟା / ହିଂସା / ଦ୍ୱେଷ ପରିପୂର୍ଣ୍ଣ ପୃଥିବୀରେ ଏହା ହେଉଛି ସ୍ୱର୍ଗୀୟ ଏବଂ ମାନବକୁ ଈଶ୍ୱରଙ୍କର ଶାଶ୍ୱତ ଦାନ ।

ମଣିଷକୁ ବୁଝିବାକୁ ହେଲେ, ତାହାର ପରିବେଶ ସମ୍ପର୍କରେ ପ୍ରଥମେ ବୁଝିବାକୁ ହୋଇଥାଏ । କେଉଁ ପରିବେଶରେ ସେ ବଢ଼ି ଉଠିଥିଲା, ବା ତାହାର ଜୀବନ ବିତାଇ ଥିଲା, ଏତିକି ଜାଣିଗଲେ, ମଣିଷଟିକୁ ବୁଝିବାରେ ଆଉ ଅସୁବିଧା ହୁଏନାହିଁ । ଏହି ପରିବେଶ ବାଛିବାରେ କିମ୍ବା ନିର୍ମାଣ କରିବାରେ ଯେତେ କୃତିତ୍ୱ ଦେଖାଇଥାଏ, ମଣିଷ ହିସାବରେ ତାହାର ସାର୍ଥକତା ସେତେ ବେଶୀ । ପରିବେଶ ହିଁ ତାକୁ ଗଢ଼ିଦିଏ । ତେଣୁ ତ କୁହାଯାଏ, "ସଂସର୍ଗଜା ଦୋଷଗୁଣାଃ ଭବନ୍ତି —" ଯାହାର ପରିବେଶ ଯେତେ ଉନ୍ନତ, ତାହାର ବ୍ୟକ୍ତିତ୍ୱ ସେତେ ପ୍ରଭାବଶାଳୀ । ମଣିଷ ଯେତେ ଉପରକୁ ଉଠେ, ନିମ୍ନଭୂମିର ବିସ୍ତାର କ୍ରମେ କ୍ରମେ ସେତେ ଅଧିକ ଦେଖାଯାଏ । ରୁଚି-ଅନୁକୂଳ ପରିବେଶ ନିର୍ମାଣରେ ମନୁଷ୍ୟ ପ୍ରଥମେ ଖୋଜେ ସମମନୋଭାବର ମନୁଷ୍ୟକୁ । ଚୋର ଖୋଜେ ଚୋରକୁ । ସାଧୁ ଅନ୍ୱେଷଣ କରେ ସାଧୁକୁ । ବ୍ୟବସାୟୀର ମନ ବ୍ୟବସାୟୀ ନିମନ୍ତେ ଟାଣେ । ସାହିତ୍ୟିକ ସନ୍ଧାନ କରିଯାଏ ତାହାର ସମଧର୍ମୀ ସାରସ୍ୱତ ସାଥୀକୁ । ଗଙ୍ଗାଧରଙ୍କ କ୍ଷେତ୍ରରେ ଏହାର ସତ୍ୟତା ପ୍ରମାଣିତ । କାରଣ ବନ୍ଧୁତ୍ୱର ଉଦାର ହୃଦୟ ନେଇ ଯେଉଁମାନେ ତାଙ୍କ ପାଖକୁ ଆଗେଇ ଆସିଲେ, ସେମାନଙ୍କ ମଧ୍ୟରୁ ଅନେକେ ହୁଏତ ସାହିତ୍ୟିକ କିମ୍ବା ସାହିତ୍ୟର ପୃଷ୍ଠପୋଷକ । କବିବର ରାଧାନାଥ, ସତ୍ୟସ୍ରଷ୍ଟା ଫକୀରମୋହନ, ପଲ୍ଲୀକବି ନନ୍ଦକିଶୋର, ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ଏବଂ କବିପ୍ରାଣ ବ୍ରଜମୋହନ ସମସ୍ତେ ହେଲେ ତାଙ୍କର ବନ୍ଧୁ — କିନ୍ତୁ ସାହିତ୍ୟର । ଅବଶ୍ୟ ଏମାନଙ୍କ ମଧ୍ୟରୁ ଦୁଇଜଣ ମାତ୍ର ସାହିତ୍ୟର ସୀମା ଡେଇଁ କବିଙ୍କର

ବ୍ୟକ୍ତିଗତ ସୁଖ / ଦୁଃଖର ମଧ୍ୟ ଭାଗୀଦାର ହୋଇଥିଲେ । ଏମାନେ ହେଲେ ରାଧାନାଥ ଏବଂ ବ୍ରଜମୋହନ । ଗଙ୍ଗାଧରଙ୍କୁ ବୁଝିବାକୁ ହେଲେ, ଏମାନଙ୍କ ସହିତ ତାଙ୍କର ସମ୍ପର୍କ କେଉଁ ଧରଣର ଥିଲା, ସେ ବିଷୟରେ ବିସ୍ତୃତ ଆଲୋଚନାର ପ୍ରୟୋଜନ ।

## ରାଧାନାଥ : ଗଙ୍ଗାଧର

ଗଙ୍ଗାଧର ସାହିତ୍ୟ-କର୍ମରେ ଆତ୍ମ-ନିୟୋଗ କଲାବେଳକୁ ରାଧାନାଥ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ । ୧୮୯୨ ମସିହାରେ 'ଗଙ୍ଗାଧର'ଙ୍କ 'ଅହଲ୍ୟାସ୍ତବ' ରଚିତ ହୋଇଥିଲା । ଏତେବେଳକୁ ରାଧାନାଥ 'କେଦାରଗୌରୀ', 'ଉଷା', 'ନନ୍ଦିକେଶ୍ୱରୀ', 'ପାର୍ବତୀ', 'ଚିଲିକା', 'ମହାଯାତ୍ରା' ପ୍ରଭୃତି କୃତିର ଅଧିକାଂଶ ରଚନା ପ୍ରକାଶ କରି ସାରିଥିଲେ । ରାଧାନାଥୀ-ପ୍ରତିଭାର ମାଧ୍ୟନ୍ଦିନ ଦୀପ୍ତିରେ ଓଡ଼ିଆ ସାହିତ୍ୟାକାଶ ଦୀପ୍ୟମାନ । ବରପାଲି ଅଞ୍ଚଳର ନିର୍ଜନତାରୁ ଜଣେ କବିଯଶଃ ପ୍ରାର୍ଥୀ ଯେ ରାଧାନାଥଙ୍କ ଅନୁକମ୍ପା ଲାଭ କରିପାରିବ, ଏକଥା କଣ ସ୍ୱୟଂ ଗଙ୍ଗାଧର ଜାଣିପାରିଥିଲେ ? ତଥାପି ଏହା ସମ୍ଭବ ହୋଇପାରିଥିଲା । ସ୍ୱୟଂ ରାଧାନାଥ ଅତି ଉଦାର ଥିଲେ । ତାଙ୍କ ନିକଟରେ ଜାତି / ଧର୍ମ / ବର୍ଣ୍ଣ ନିର୍ବିଶେଷରେ ପ୍ରତିଭା ହିଁ ସମ୍ମାନିତ ହେଉଥିଲା ।* କେବଳ ରାଧାନାଥ କୁହେଁ । ମାତୃଭାଷାର ଦାରିଦ୍ର୍ୟ ଦୂର କରିବା ନିମନ୍ତେ ଏକ ପୁଷ୍କଳ-କବି ଗୋଷ୍ଠୀ ସୃଷ୍ଟି କାମନାରେ ଗୁଣୀ ଅଧିକେ ପ୍ରାୟ ସମସ୍ତ ପ୍ରତିଷ୍ଠିତ ଲେଖକ ନୂତନ ଲେଖକମାନଙ୍କର ପୃଷ୍ଠପୋଷକତା କରୁଥିଲେ । ତେବେ ରାଧାନାଥଙ୍କ ପ୍ରେରଣାକୁ ଏତେ ଲଘୁ ଭାବରେ ଦେଖିଲେ ଚଳିବ ନାହିଁ । ତାହାର ଏକ ସ୍ୱତନ୍ତ୍ର ମୂଲ୍ୟ ରହିଥିଲା !

ସୁଦୂର ବରପାଲିର ଅରଣ୍ୟରେ ବିକଶିତ ହୋଇଥିବା ଏହି 'ଅରଣ୍ୟ ପ୍ରସୂନ' ଯେ ଏକ ନୈସର୍ଗିକ ସୁରଭି ତଥା ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ; ଜହ୍ଲୁରୀ ରାଧାନାଥ ଏହା ଭଲ ଭାବରେ ବୁଝିପାରି-ଥିଲେ । ଉତ୍ସାହ ଏବଂ ପ୍ରେରଣା ଅଭାବରେ ଏହି ପୁଷ୍ପଟି ଯଦି ଯଥାର୍ଥ 'ଅରଣ୍ୟ ପ୍ରସୂନ'ର ଦଶା ଭଜେ, ତେବେ ଉତ୍କଳ-ଭାଷାର ଧନତା ପୂରିବ କିପରି ? ତେଣୁ ରାଧାନାଥ 'ଅହଲ୍ୟାସ୍ତବ'ର ପାଣ୍ଡୁଲିପି ପାଇ ସଙ୍ଗେ ସଙ୍ଗେ ଗଙ୍ଗାଧରଙ୍କ ସଙ୍ଗେ ସମ୍ପର୍କ ସ୍ଥାପିତ କଲେ । ମଣି-ସହିତ କାଞ୍ଚନର ସଂଯୋଗ ହେଲା । ଏହି ମୁହୂର୍ତ୍ତକୁ ଓଡ଼ିଆ ସାହିତ୍ୟର ସୌଭାଗ୍ୟର ଏକ ଅମଳିନ ମୁହୂର୍ତ୍ତ ବୋଲି ସ୍ୱୀକାର କରିବାକୁ ହେବ ।

ରାଧାନାଥ ଗଙ୍ଗାଧରଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଏହି ମୁହୂର୍ତ୍ତରୁ ହିଁ ଆଗ୍ରହୀ ହୋଇଥିବାର ଦେଖିବାକୁ ମିଳୁଛି । କାରଣ ଚିରଦାରିଦ୍ର୍ୟ ପ୍ରପୀଡ଼ିତ ଉତ୍କଳର ଏକ ଅବହେଳିତ ଅଞ୍ଚଳରେ ଏଇ ଝଡ଼ୀସୁମାନ କିପରି କେଉଁ ଅବସ୍ଥାରେ ଜୀବନ-ନିର୍ବାହ କରୁଅଛନ୍ତି, ଏହିକ ଜାଣି ସେ ଉଦ୍‌ବେଗ ଦୂର କରିବାକୁ ଚାହୁଁଥିଲେ । ଅବହେଳାରେ / ଅନାଦରରେ ଯଦି ଏଭଳି ପ୍ରତିଭା-ପୁଷ୍ପ ଅକାଳରେ ମଉଳ

---

* "ଲୋକର ଯେତେ ଦୁର୍ଗୁଣ ଥାଉ, କବିତାରେ ଯେତେ ଦୋଷ ଥାଉ ତହିଁରେ ଲେଖକଙ୍କର ଶକ୍ତିମତ୍ତାର ଓ ପ୍ରତିଭାର ବିଷୟ କିଛି ଥିଲେ, ସେ ଦୋଷ ସେ ଦୁର୍ଗୁଣର କଥା, ବୟସ ଯୋଗ୍ୟତା, ଜାତି ବା ଅବସ୍ଥା ଓ ପଦ ମର୍ଯ୍ୟାଦାର ପ୍ରଭେଦ ବିସ୍ମୃତ ହୋଇ ସେ ଲେଖକ ବା କବିଙ୍କୁ ସମ୍ପୂର୍ଣ୍ଣ ଆଦର କରି ନେଉଥିଲେ ।"
[ ମାଳମଣି ବିଦ୍ୟାରତ୍ନ — ଉତ୍କଳ ସାହିତ୍ୟ ୨ୟ ଭାଗ : ପ୍ରଥମ ସଂଖ୍ୟା — ଗଙ୍ଗାଧର ଜୀବନୀ —ପୃ. ୨୪୨ ]

ଯାଏ, ତେବେ ସେଥି ନିମନ୍ତେ ସେ ନିଜେ ମଧ୍ୟ ଅଭିଯୁକ୍ତ ହେବେ, ଏଥିରେ ରାଧାନାଥଙ୍କର ସନ୍ଦେହ ନଥିଲା । ତେଣୁ ‘ଉତ୍କଳ ସାହିତ୍ୟ’ ସହ ‘ବ୍ୟକ୍ତିଗତ ଅନୁସନ୍ଧାନ’ ମଧ୍ୟ ରାଧାନାଥଙ୍କର ପ୍ରବର୍ତ୍ତିତ ହୋଇଥିଲା ।* ରାଧାନାଥଙ୍କର ଅନୁମାନ ସତ୍ୟ ପ୍ରମାଣିତ ହୋଇଥିଲା । ଗଙ୍ଗାଧରଙ୍କର ପ୍ରକୃତ ଅବସ୍ଥା ଜାଣିପାରିବା ପରେ କବି ତାଙ୍କ ପ୍ରତି ଅଧିକ ଆକୃଷ୍ଟ ହୋଇ ପଡ଼ିଥିଲେ । ଦାରିଦ୍ର୍ୟ ସତ୍ତ୍ୱେ ମାତୃଭୂମି-ସେବାର ଦୃଷ୍ଟାନ୍ତ ‘ସମଗ୍ର ଉତ୍କଳରେ ବୋଧହୁଏ ଦ୍ୱିତୀୟ ନାହିଁ’ ବୋଲି ମଧ୍ୟ ରାଧାନାଥଙ୍କର ମନେ ହୋଇଥିଲା ପରବର୍ତ୍ତୀକାଳରେ ୧୮୯୮ ମସିହାରେ ‘ଦରବାର’ରେ ଚନ୍ଦ୍ରଶେଖରଙ୍କ ଯଶଃ ବର୍ଣ୍ଣନା ସମୟରେ ହୁଏତ ଗଙ୍ଗାଧରଙ୍କ ସ୍ମୃତି କବି ମାନସକୁ ଆଚ୍ଛନ୍ନ କରିଦେଇଥିବ । ତେଣୁ ସେ ଲେଖିଥିବେ, “ଶୁଷ୍କ ବନ୍ଧ୍ୟ ଗୃହ ସଙ୍ଗେ ଅର୍ଦ୍ଧାସନ / ପ୍ରତିଭାର ପିତା ଲଲାଟଲେଖନ ! ଲକ୍ଷ୍ମୀଙ୍କ ସପତ୍ନୀ ହେବାରୁ କମଳା / ଦାରିଦ୍ର୍ୟ ତୁମ୍ଭର ସଙ୍ଗୀ ହେଲା ସଦା !”

ସେ ହେଉନ ଗଙ୍ଗାଧରଙ୍କ ସହ ପତ୍ର-ସମ୍ପର୍କ ସ୍ଥାପିତ ହେବାର ଅଳ୍ପକାଳ ମଧ୍ୟରେ ହିତୈଷିଣୀ ସମ୍ପାଦକ ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କ ପ୍ରଯତ୍ନରେ ଗଙ୍ଗା / ଯମୁନାର ମିଳନ ତୁଲ୍ୟ ଉଭୟ ପ୍ରତିଭାର ପ୍ରଥମ-ପ୍ରତ୍ୟକ୍ଷ ସମ୍ପର୍କ ‘ବାଙ୍କୀ’ଠାରେ ସ୍ଥାପିତ ହୋଇଥିଲା । ଗଙ୍ଗାଧରଙ୍କ ସହ ରାଧାନାଥଙ୍କ ବ୍ୟବହାର ‘ବାତ୍ସଲ୍ୟ ସୁଲଭ’ ହୋଇଥିଲା ବୋଲି ନୀଳମଣି ବିଦ୍ୟାରତ୍ନଙ୍କ ବିବୃତିରୁ ଜଣାଯାଉଛି । କାରଣ ଏତେବେଳକୁ ରାଧାନାଥ ୪୫ ବର୍ଷ ବୟସର ପ୍ରୌଢ଼ ଏବଂ ଗଙ୍ଗାଧର ମାତ୍ର ୩୧ ବର୍ଷ ବୟସର ଯୁବକ ଥିଲେ । ଆହାର-ନିଦ୍ରା ବିସ୍ମୃତ ହୋଇ ଉଭୟ କବି ଏକାଦିକ୍ରମେ ୩/୪ ଘଣ୍ଟା ସାହିତ୍ୟିକ ମତ ବିନିମୟ କରି ପରମ ତୃପ୍ତି ଲାଭ କରିଥିଲେ ।

ଏହି ସମୟକୁ ଶିକ୍ଷକ-ପ୍ରଶାସକ ଏବଂ କବି ରାଧାନାଥଙ୍କ ବିରୁଦ୍ଧରେ ତୀବ୍ର ସମାଲୋଚନାର ସ୍ୱର ଉଚ୍ଚାରିତ ହୋଇସାରିଥାଏ । ପ୍ରଶାସକ ରାଧାନାଥ ପାଠ୍ୟ-ପୁସ୍ତକ ନିର୍ବାଚନରେ ମନମୁଖୀ କାରବାର ଚଳାଇଥିବାର ଏକ ଗୁରୁତର ଅଭିଯୋଗର ସୋଚ୍ଚାର ସ୍ୱର ଏତେବେଳକୁ ଉତ୍କଳର ସର୍ବତ୍ର ଶୁଣାଯାଉଥିଲା । ଏହି ଅଭିଯୋଗ ଆଦୌ ଈର୍ଷ୍ୟା ବା ଅସୂୟା ପ୍ରଣୋଦିତ ନଥିଲା । ୧୮୭୩ ରୁ ୧୮୯୧ ମସିହା ମଧ୍ୟରେ ରାଧାନାଥଙ୍କର ଏଗାର ଖଣ୍ଡି ପାଠ୍ୟ ପୁସ୍ତକ ବିଭିନ୍ନ ଶ୍ରେଣୀ ନିମନ୍ତେ ନିର୍ବାଚିତ ହୋଇସାରିଥିଲା । ଏହାଛଡ଼ା ରାଧାନାଥଙ୍କ ଅନୁଜ ସୀତାନାଥ ରାୟ ମଧ୍ୟ ଜଣେ ପାଠ୍ୟ-ପୁସ୍ତକ ରଚୟିତା ଥିଲେ । ଯଦିଓ ଅନ୍ୟ ବ୍ୟାପାରରେ କୁତ୍ରାପି ସେ ଧାଡ଼ିଏ ଲେଖିଥିବାର ଦେଖାଯାଏ ନାହିଁ । ପାଠ୍ୟପୁସ୍ତକ ରଚନାରେ ତାହାଙ୍କର ବିଶେଷ ପ୍ରସିଦ୍ଧି ଥିଲା । ଏହାଛଡ଼ା ରାଧାନାଥ-ଅନୁଗୃହୀତ କତିପୟ ସୌଭାଗ୍ୟଶାଳୀ ବ୍ୟକ୍ତି ମଧ୍ୟ ସ୍ୱ-ସ୍ୱ ପୁସ୍ତକମାନ ପାଠ୍ୟ-ପୁସ୍ତକ ରୂପେ ଗୃହୀତ କରାଇ ନେଇଥିଲେ । ଦ୍ୱିତୀୟତଃ, କେତେକ ଜଣାଶୁଣା କାରଣରୁ ରାଧାନାଥ ତତ୍କାଳୀନ କଟକ ପ୍ରିଣ୍ଟିଂ କମ୍ପାନୀ ପ୍ରେସ୍‌ରୁ ବାହାରୁଥିବା ପୁସ୍ତକଗୁଡ଼ିକୁ ବିଭିନ୍ନ ପାଠ୍ୟ ନିମନ୍ତେ ଗୃହୀତ କରାଇ ନେଇଥିଲେ । ଫଳ ଯାହା ହେବାର ହେଲା । ଅଭିଯୋଗ ସରକାରୀ ସ୍ତରକୁ ନୀତ ହେଲା ଏବଂ ୧୮୯୦ ମସିହାରେ ଏକ ‘ଅନୁସନ୍ଧାନ’ କରାଯାଇ

---

* “ଆପଣଙ୍କର ରଚନା ଶକ୍ତି ବାସ୍ତବ ପ୍ରଶଂସନୀୟ । × × × ମାତ୍ର ଏହି କଠିନ ଛନ୍ଦ ଅବଲମ୍ବନ କରି ମଧ୍ୟ ଆପଣ ଆଶାତୀତ କୃତକାର୍ଯ୍ୟତା ଲାଭ କରିଅଛନ୍ତି । × × × ଆପଣ ବିଦ୍ୟାଳୟରେ କି କାର୍ଯ୍ୟ କରନ୍ତି ? ଆପଙ୍କର ନିବାସ କେଉଁଠାରେ ?
[ ମେହେର କବି : ପୃ. ୧୨ / କବି ଗଙ୍ଗାଧର ଜୀବନୀ — ପୃ. ୨୦୪ ]

ରାଧାନାଥଙ୍କୁ ସରକାରୀ ଦୃଷ୍ଟିରେ ନିର୍ଦ୍ଦୋଷ ବୋଲି ଘୋଷଣା କରିଦିଆଗଲା । ଅନୁସନ୍ଧାନ ଯେ ନିରପେକ୍ଷ ହୋଇଥିବ, ଏଭଳି ଭାବିବାର କୌଣସି କାରଣ ନାହିଁ । ବରଂ ଏହାର ଓଲଟା ଯୁକ୍ତିଟିକୁ ଗ୍ରହଣ କରିନେବାର ଅନେକ କାରଣ ଦେଖିବାକୁ ମିଳୁଛି । ଯାହାହେଉ, ଅଭିଯୋଗର ସ୍ୱର କର୍ମଜୀବନରୁ ସାହିତ୍ୟ-ଜୀବନକୁ ବ୍ୟାପିଲା । 'କେଦାର-ଗୌରୀ' ପ୍ରକାଶ ଠାରୁ ଏହି ତୀବ୍ର ସମାଲୋଚନା' ଆରମ୍ଭ ହୋଇ ୧୮୯୫ / ୯୬ ପର୍ଯ୍ୟନ୍ତ ସମାନ ଗତିରେ ଚାଲିଥିଲା । ଏଥି ନିମନ୍ତେ ମଧ୍ୟ 'ରାଧାନାଥ'ଙ୍କୁ ଦାୟୀ କରାଯାଇପାରେ । ରାଧାନାଥଙ୍କ ବିପକ୍ଷରେ ଏହିଭଳି ଏକ ବାତାବରଣ କେବଳ 'ରୁଚି ସଂଘର୍ଷ'ରୁ 'ସାହିତ୍ୟ ଭୂମିରେ ପ୍ରାଚୀନ ଏବଂ ନବୀନ'ର ଦ୍ୱନ୍ଦ୍ୱରୁ ସୃଷ୍ଟି ବୋଲି କହିଲେ ହେବ ନାହିଁ । ବରଂ ଏହିଭଳି ପରିସ୍ଥିତି-ସୃଷ୍ଟିରେ ରାଧାନାଥଙ୍କର ଭୂମିକା କିଭଳି ଥିଲା, ତାହା ଗୁରୁତ୍ୱପୂର୍ଣ୍ଣ ଭାବରେ ବିଚାର କରିବାକୁ ହେବ । ଜଣେ ପ୍ରତିଭାଧର କବି ହେଲେହେଁ ରାଧାନାଥ ପ୍ରଥମେ ମଣିଷ । ମଣିଷ ହିସାବରେ ସ୍ୱାର୍ଥସିଦ୍ଧିର ଉପାୟମାନ ଯଦି ସେ ଅନୁସରଣ କରିଥାଆନ୍ତି, ତେବେ ଏଥି ନିମନ୍ତେ ତାହାଙ୍କୁ ଦୋଷଦେଇ ହେବ ନାହିଁ । ପ୍ରତିଭା ଯେ ସବୁ ପ୍ରକାର ଦୋଷ ତ୍ରୁଟିରୁ ମୁକ୍ତହେବ ଏଭଳି କଥା ତ ନୁହେଁ । ରୂପରେ / ଗୁଣରେ ସ୍ୱୟଂ ସମ୍ପୂର୍ଣ୍ଣ ମଣିଷ ହେବା ଜଣ ଏତେ ସହଜ କଥା ? ଦୋଷ / ତ୍ରୁଟି ହିଁ ତ ମାନବର ମାନବତାର ପରିଚାୟକ । ମଣିଷ ରାଧାନାଥଙ୍କୁ ଦେବତା ରୂପେ ପ୍ରତିଷ୍ଠା କରିବାର ଯେଉଁ ପ୍ରଚେଷ୍ଟା ଊନବିଂଶ ଶତାବ୍ଦୀର ଶେଷପାଦରେ ଚାଲିଥିଲା ( ଯେଉଁଥିରୁ କି ଯଥାର୍ଥରେ ତତ୍‌କାଳରେ ରାଧାନାଥୀ ସମାଲୋଚନାର ଜନ୍ମ ବୋଲି ଆମେ ଅନୁଭବ କରୁଁ ) ତାହାର ଶେଷ ଏ ପର୍ଯ୍ୟନ୍ତ ହୋଇନାହିଁ । ମାତ୍ର ରାଧାନାଥ ଯେ କାମ / କ୍ରୋଧ / ଲୋଭ / ମୋହ ବିଶିଷ୍ଟ ରକ୍ତମାଂସଧାରୀ ସାଧାରଣ ମଣିଷଠାରୁ ଭିନ୍ନ ନଥିଲେ, ଏହାର ପ୍ରମାଣ ତ ତାଙ୍କର ଜୀବନ । ୬୨ ବର୍ଷ ବୟସରେ ତାଙ୍କ ଜୀବନରେ ଯେଉଁ ସ୍ଖଳନ ଆସିଲା, ଏଥିରୁ କ'ଣ ପ୍ରକଟିତ ହେଉଛି ? ଆମ ବିଚାରରେ, ରାଧାନାଥଙ୍କର ଦୋଷତ୍ରୁଟିକୁ ସାଧାରଣ ମଣିଷର ଦୋଷ ତ୍ରୁଟି ହିସାବରେ ଗ୍ରହଣ କରିନେଲେ, ରାଧାନାଥଙ୍କର ପ୍ରତିଭା କିଛି ହେଲେ ମ୍ଲାନ ହେବ ନାହିଁ । ବରଂ ପ୍ରତିଭାର ଯେଉଁ ଖର-ରଶ୍ମି ମାନବ ରାଧାନାଥଙ୍କୁ ଘୋଡ଼ାଇ ପକାଉଛି, ତାହା ଦୂର ହେଲେ, ଏକ ପରିପୂର୍ଣ୍ଣ କବିରୂପ ସମାଲୋଚକମାନଙ୍କ ଆଗରେ ପ୍ରକଟିତ ହେବ ।

ରାଧାନାଥୀ-ସମାଲୋଚନାର ସ୍ୱର ସହିତ ଗଙ୍ଗାଧର ଅପରିଚିତ ନଥିଲେ । ହେଁ, ସ୍ୱଭାବ-ନମ୍ର ତା ହେତୁରୁ ଏବଂ ସ୍ୱୟଂ ରାଧାନାଥଙ୍କ ଅନୁଗ୍ରହ ଭାଜନ ହୋଇଥିବାରୁ ତାଙ୍କ ବିରୁଦ୍ଧରେ କିଛି କହିବେ, ଗଙ୍ଗାଧର ଏ ଭଳି ଚିନ୍ତା ମଧ୍ୟ କରିପାରି ନଥିଲେ । ବ୍ୟକ୍ତି ରାଧାନାଥଙ୍କ ଠାରୁ ସେ ପାଇଥିଲେ, ନିଜର ବ୍ୟକ୍ତିଗତ ଦୁଃଖ / ସୁଖ ନିମନ୍ତେ ପ୍ରଚୁର ସହାନୁଭୂତି / ଆନନ୍ଦ । କବି ରାଧାନାଥ ଥିଲେ କବି-ପୁରୁଷ ଗଙ୍ଗାଧରଙ୍କର ଦିଗ୍‌ଦର୍ଶକ । ଏ କ୍ଷେତ୍ରରେ ଯଦି ଗଙ୍ଗାଧର ରାଧାନାଥଙ୍କୁ ଦେବତା ଜ୍ଞାନରେ ପୂଜା କରିଥାଆନ୍ତି, ତେବେ ସେଥି ନିମନ୍ତେ ତାଙ୍କୁ ଦୋଷ ଦେଇ ହେବ ନାହିଁ । ବିଶେଷ ରୂପେ ରାଧାନାଥଙ୍କର କବିସତ୍ତା ଗଙ୍ଗାଧରଙ୍କର ପରମ ବିସ୍ମୟ ଜନିତ ଶ୍ରଦ୍ଧାର ପାତ୍ର ଥିଲା । ତେଣୁ ସମଗ୍ର ଉତ୍କଳ ଯେତେବେଳେ 'କବି-କଳି'ର ମର୍ମ-ସୁଖଦାୟୀ (?) ଉତ୍ତପ୍ତ ଆଲୋଚନାରେ ମତ୍ତ ଭଞ୍ଜ ଏବଂ ରାଧାନାଥ : ଏଇ ଦୁଇକବିଙ୍କ ସମ୍ପର୍କରେ ନୂତନ ନୂତନ କୁତ୍ସାମାନ ଆବିଷ୍କାର କରିବା ଯେତେବେଳେ ଶିକ୍ଷିତ ଉତ୍କଳୀୟମାନଙ୍କର ଅବଶ୍ୟ କର୍ତ୍ତବ୍ୟ ହୋଇପଡୁଛି, ଗଙ୍ଗାଧର ସମ୍ପୂର୍ଣ୍ଣ ନୀରବତା ଅବଲମ୍ବନ କରିଛନ୍ତି । ନୀରବତାର ସୁବର୍ଣ୍ଣ-କୋଷ ତାଙ୍କୁ ଆଶ୍ରୟ ଦେଇଛି । ବରଂ ଏଇ ମୁହୂର୍ତ୍ତରେ କବି ଚିନ୍ତା

କରିଛନ୍ତି ଅନ୍ୟ କଥା । ରାଧାନାଥଙ୍କ ବ୍ୟକ୍ତିତ୍ୱ ଏଇ ସମାଲୋଚନାର ଶକ୍ତି-ଶେଲର ଆଘାତରେ କଭଳି ଖଣ୍ଡ ଖଣ୍ଡ ହୋଇ ଛିନ୍ନ ଭିନ୍ନ ହୋଇ ଯାଇଛି, ତାହାର ନୀରବଦ୍ରଷ୍ଟା ହୋଇ ରହିବାର କୌଣସି ଅର୍ଥ ହୁଏ ନାହିଁ । ବରଂ କିଛି ଗୋଟାଏ କରିପିବାର କଥା ।

ଏହି ଅବସରରେ ଅଗଷ୍ଟ, ୧୮୯୩ରେ ପ୍ରକାଶିତ ହୋଇଛି 'ଇନ୍ଦ୍ରଧନୁ' ଏବଂ ତା'ପର ମାସରେ 'ବିଜୁଳୀ' । ରାଧାନାଥ-ଭଞ୍ଜ ବିବାଦ ଚରମ ସୀମା ସ୍ପର୍ଶ କରିଛି । ଗଙ୍ଗାଧର ହାତରେ ଲେଖନୀ ଉଠାଇ ନେଇଛନ୍ତି । ପ୍ରୟୋଜନରେ ଜଣେ ସମବ୍ୟଥୀ ବନ୍ଧୁର ଭୂମିକା ନେଇ, ବନ୍ଧୁର ଦୁଃଖ ପ୍ରଶମନ କାମନାରେ ଓଠରେ କେବଳ ସହାନୁଭୂତିପୂର୍ଣ୍ଣ କଥା ବ୍ୟତିରେକେ ଗଙ୍ଗାଧରଙ୍କ 'କବି-ସତ୍ତ୍ୱ' କାମ କରିଯାଇଛି । ରଚିତ ହୋଇଛି 'ଉତ୍କଳ ଲକ୍ଷ୍ମୀ' । ଏଇ କାବ୍ୟରେ 'ରାଧାନାଥ'ଙ୍କ କବି-ପ୍ରତିଭାର ବନ୍ଦନା ଗାନ ଉଦାତ୍ତକଣ୍ଠରେ କରାଯାଇଛି । ଏକଗୁଣ ମୁଗ୍ଧ ଭକ୍ତର ସମସ୍ତ ଆକାଂକ୍ଷା ନେଇ ଗଙ୍ଗାଧର କଳ୍ପନା କରିଛନ୍ତି, "କାବ୍ୟ ହିଁ ଗଲେଣି / କାବ୍ୟ ରଚିବାକୁ / ରାଧାନାଥ ନାମ ବହି" ରାଧାନାଥଙ୍କର ମାନବସତ୍ତ୍ୱ ଏବଂ ଦେବସତ୍ତ୍ୱର ମଧୁର ସମନ୍ୱୟ ଘଟାଇ କବି ଗଙ୍ଗାଧର ଷଡ଼ାକ୍ତ କବିବରଙ୍କ ଯନ୍ତ୍ରଣା ଜର୍ଜରିତ ହୃଦୟରେ ଶାନ୍ତିର ପ୍ରଲେପ ବୋଳିଦେବା ନିମନ୍ତେ ଉଦ୍ୟମ କରିଛନ୍ତି । ରାଧାନାଥ ମଧ୍ୟ ଘୋଷଣା କରିଛନ୍ତି ଯେ, ଗଙ୍ଗାଧରଙ୍କ ନିମନ୍ତେ ସେ ଓଡ଼ିଶା ପ୍ରତି ସ୍ନେହଶୀଳ ହେବାକୁ ବାଧ୍ୟ । 'ଉତ୍କଳ ଲକ୍ଷ୍ମୀ' ପଢ଼ି ନିଜେ ଚରମ ମାନସିକ ଅଶାନ୍ତିର ଶିକାର ହୋଇଥିଲେ ମଧ୍ୟ ଗଙ୍ଗାଧରଙ୍କୁ 'ଜାଗତିକ ସମାଲୋଚନାକୁ ଉଦାର ଦୃଷ୍ଟିରେ ବିଚାର କରିବା ନିମନ୍ତେ ଉପଦେଶ ପ୍ରଦାନ କରିଛନ୍ତି । 'ଉତ୍କଳ ପ୍ରଭା'ରେ "ଉତ୍କଳ ଲକ୍ଷ୍ମୀ" ଦୀର୍ଘଦିନ ଧରି ପ୍ରକାଶିତ ନହେବାରୁ କ୍ଷୋଭ ପ୍ରକାଶ କରିଛନ୍ତି ।★

ମାନସିକତାର ଗୋଟିଏ ବିନ୍ଦୁରେ ଉଭୟ କବିଙ୍କର ସ୍ଥିତି । ପ୍ରତିକୂଳ ସମାଲୋଚନା ବିରକ୍ତ ରାଧାନାଥ 'କବିର ଜୀବନ ଆଦୌ ସ୍ପୃହଣୀୟ ଜୀବନ ନୁହେଁ' ଏବଂ 'ଲେଶ ମାତ୍ର ଆର୍ଥିକ ଲାଭ ନାହିଁ, ଅଥଚ ଈର୍ଷ୍ୟା ଜନିତ ମାନସିକ ଅଶାନ୍ତି ସମସ୍ତ ସମୟରେ ମନ କ୍ଷୁବ୍ଧ କରେ । ଏହିପରି ସାହିତ୍ୟ ଚର୍ଚ୍ଚା ଠାରୁ ଦୂରେଇଥିବା ଭଲ' ବୋଲି ଘୋଷଣା କରିଥିବା ବେଳେ ପାରିବାରିକ ସମସ୍ୟା-ବିବ୍ରତ ଗଙ୍ଗାଧରଙ୍କ କଣ୍ଠରୁ ନିର୍ଗତ ହୋଇଛି । "ସାହିତ୍ୟ ନିମନ୍ତେ ସରିଦତ୍ତ ଅର୍ଥ ମୋର ବିଳାସିତାରେ ବ୍ୟୟ କରିବା ଅଭିପ୍ରାୟ ନାହିଁ । ତାହା କେବଳ ସାହିତ୍ୟ ଉନ୍ନତିରେ ଲଗାଇ ପାରିଲେ, ସାହିତ୍ୟ-ଚର୍ଚ୍ଚା ରୂପ ମହାପାପର ପ୍ରାୟଶ୍ଚିତ୍ତ ହୋଇପାରନ୍ତା ।" *

ଆମେ ପ୍ରଥମରୁ କହିଛୁଁ ଯେ, ସାରସ୍ୱତ ସାଥି କବିବର ଏବଂ ସ୍ୱଭାବ-କବି ଉଭୟେ ସାହିତ୍ୟର ସୀମା ଅତିକ୍ରମ କରି ବ୍ୟକ୍ତିଗତ-ଇଲାକାର ଅଙ୍ଗନରେ କ୍ରମେ କ୍ରମେ ପ୍ରବେଶ କରୁଥିଲେ । ପରସ୍ପରର ସୁଖ / ଦୁଃଖର ସମ୍ବାଦ ନେଉଥିଲେ । ଏହିଭଳି ଅବସ୍ଥାରେ ୧୮୯୭ ମସିହାରେ ଗଙ୍ଗାଧରଙ୍କର

---

★ "ଏ ଅଗ୍ରାହକ ଦେଶରେ ଆପଣଙ୍କପରି ପ୍ରକୃତ ପ୍ରତିଭାଶାଳୀ ବ୍ୟକ୍ତିଙ୍କର ସମୁଚିତ ଆଦରର ଆଶା ସୁଦୂର ପରାହତ—" [ କବିଲିପି : ପୃ. ୭୯ ]

* ଗଙ୍ଗାଧର ଗ୍ରନ୍ଥାବଳୀ ପୃ. ୨୦୯

ବୃଦ୍ଧ ଭଗ୍ନ ହୋଇଛୁ । ପତ୍ନୀ-ଶୋକକାତର ଗଙ୍ଗାଧର ଦ୍ୱିତୀୟ-ଦାର ପରିଗ୍ରହ ସମ୍ପର୍କରେ ଅନ୍ତରଙ୍ଗ ବନ୍ଧୁ ରାଧାନାଥଙ୍କ ମତାମତ ଜିଜ୍ଞାସା କରିଅଛନ୍ତି । ରାଧାନାଥ ଏ ବିଷୟରେ ଦୃଢ଼ ଆପତ୍ତି ଉଠାଇ କହିଅଛନ୍ତି । "× × ମୋହର ମତରେ ପାର୍ଯ୍ୟମାଣରେ ଦ୍ୱିତୀୟ ସଂସାର କର୍ତ୍ତବ୍ୟ ନୁହେଁ । ବିଶେଷତଃ, ଯାହାଙ୍କର ପୁତ୍ର କନ୍ୟା ଅଛନ୍ତି ତାହାଙ୍କ ପକ୍ଷରେ କଦାଚ ନୁହେଁ । ମୋହୋ ମତରେ ଯେଉଁ ପିତା ସନ୍ତାନମାନଙ୍କୁ ବିମାତା ଯୋଗାଇ ଦିଅନ୍ତି, ସେ ପିତୃ ସିଂହାସନରୁ ଅବତରଣ କରନ୍ତି'–ଏହି ସମୟରେ କବିଙ୍କର ମନେ ହୋଇଛି, 'ମୃତ-ପତ୍ନୀଙ୍କର ହୃଦୟ ଅତି ଶୋଚନୀୟ' । ଏହି ବିଷୟ ସ୍ମରଣରେ ଭାବ-ପ୍ରବଣ କବିହୃଦୟ ସହାନୁଭୂତି ବିଗଳିତ ହୋଇ ଗଙ୍ଗାଧରଙ୍କୁ ଅନୁମତି ଦେଇ ଲେଖିଛି, "ଆପଣଙ୍କର ଯେବେ ପ୍ରବୃତ୍ତି ଥାଏ ଏବଂ ସୁଶୀଳା ଅଧିକ ବୟସ୍କା କନ୍ୟା ଯେବେ ସୁଲଭ ହୁଏ, ତାହା ହେଲେ ଆପଣ ପୁନର୍ବାର ବିବାହ କରିପାରନ୍ତି । ଏ ବିଷୟରେ ଆପଣଙ୍କର ସ୍ୱର୍ଗୀୟା ପତ୍ନୀଙ୍କର ଅନୁରୋଧ ମଧ୍ୟ ଅଛି—" ★

ଗଙ୍ଗାଧରଙ୍କ ଜୀବନରେ ପୁଣି ଦୁର୍ଯୋଗ ଆସିଛି । ୧୯୦୨ ମସିହାରେ ଜ୍ୟେଷ୍ଠ-ପୁତ୍ରର ବିୟୋଗରେ କବି ନିତାନ୍ତ କାତର ହୋଇ ପଡ଼ିଛନ୍ତି । ଏହି ସମୟରେ ରାଧାନାଥ ଗୋଟିଏ ଧରଣର ଆଚ୍ଛନ୍ନ-ଅବସ୍ଥା ମଧ୍ୟଦେଇ ଗତି କରୁଥିଲେ ହେଁ କର୍ତ୍ତବ୍ୟ ଭୁଲିନାହାନ୍ତି । ଲେଖିଛନ୍ତି, "ଦାର୍ଶନିକତାର ଆଶ୍ରୟ ଗ୍ରହଣ ବ୍ୟତୀତ ଶାନ୍ତି ଲାଭର କୌଣସି ଆଶା ନାହିଁ । ଦାର୍ଶନିକତାର ଆଶ୍ରୟ ଏବଂ କାଳର ପ୍ରଭାବ ଦ୍ୱାରା ଆପଣଙ୍କର ଶୋକାବେଗ କ୍ରମଶଃ ମନ୍ଦୀଭୂତ ହୋଇପାରେ ।*

ରାଧାନାଥ ଶିକ୍ଷା ବିଭାଗରେ ପ୍ରବେଶ କରି ସ୍ଥାୟୀ ହେବାପରେ ପାଠ୍ୟ ପୁସ୍ତକ ରଚନାରେ ମନୋନିବେଶ କରିଥିଲେ । ଏହି ସବୁ ପାଠ୍ୟ-ପୁସ୍ତକ ତତ୍କାଳୀନ ଶିକ୍ଷାର ମାନଦଣ୍ଡରେ ଅତି ଉଚ୍ଚକୋଟିର ବିବେଚିତ ହେଉଥିଲା । ତଥାପି ସେ ଆହୁରି ପୂର୍ବରୁ ପାଠ୍ୟପୁସ୍ତକ ରଚନା ପ୍ରତି ମନଯୋଗୀ ହୋଇଥିଲେ, ତାହାଙ୍କର ଆର୍ଥିକ ଅବସ୍ଥା ଅଧିକ ଉନ୍ନତ ହୋଇଥାଆନ୍ତା ବୋଲି ମନେ କରୁଥିଲେ । ଏହା ସତ୍ୟର ବିକୃତ ଅପଳାପ ମାତ୍ର । କାରଣ ଆମେ ଦେଖିବାକୁ ପାଉଛୁଁ ଯେ ୧୮୭୩ ମସିହା ବେଳକୁ ରାଧାନାଥଙ୍କର ପାଠ୍ୟପୁସ୍ତକ ମାନ ବିଭିନ୍ନ ଶ୍ରେଣୀରେ ଚଳିବାକୁ ଆରମ୍ଭ କଲାଣି । ତାହାପରେ ଦୀର୍ଘଦିନ ଧରି ଏହି ବ୍ୟବସ୍ଥାର ବ୍ୟତିକ୍ରମ ମଧ୍ୟ ହୋଇନାହିଁ । ପଚିଶ ବର୍ଷ ବୟସରେ ରାଧାନାଥ ଓଡ଼ିଶାର ପାଠ୍ୟ-ପୁସ୍ତକ ରଚୟିତା ରୂପେ ବହୁ ପରିଚିତ ଥିଲେ । ପାଠ୍ୟ-ପୁସ୍ତକ ରଚନା ନିମନ୍ତେ ଯାହା ପ୍ରୟୋଜନ, ତାହା ପୂର୍ବରୁ ସୁଲଭ ହେବା ସମ୍ଭବ ଥିଲା କି ?

ସେଇ ରାଧାନାଥ କିନ୍ତୁ ଗଙ୍ଗାଧରଙ୍କର ପାଣ୍ଡିତ୍ୟ ସମ୍ପର୍କରେ ଶ୍ରଦ୍ଧା ପୋଷଣ କରୁଥିଲେ । ଅନ୍ତତଃ ଦୁଇଟି କ୍ଷେତ୍ରରେ ଏହାର ପରିଚୟ ମିଳିଥାଏ । ୧୯୦୦ ମସିହାରେ 'ଗଙ୍ଗାଧରଙ୍କ ପ୍ରବନ୍ଧ 'ଏହା କି ପୃଥିବୀର ଗନ୍ଧ' ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ପ୍ରଥମରୁ କବିବର ନିଜର ଅସାମର୍ଥ୍ୟ ପ୍ରକାଶ କରିଥିଲେ । କେବଳ ସେତିକି ନୁହେଁ । ସମଗ୍ର ଓଡ଼ିଶାରେ ଗଙ୍ଗାଧରଙ୍କ ଜିଜ୍ଞାସାର ସଦୁତ୍ତର କେହି ଦେଇପାରିବେ, ଏ ଧାରଣା ରାଧାନାଥଙ୍କର ନଥିଲା । ଦ୍ୱିତୀୟତଃ, ସ୍ୱ-ପ୍ରଣୀତ ଖଣ୍ଡିଏ ବ୍ୟାକରଣ

★ କବିଲିପି : ପୃ. ୮୦ ।
* କବିଲିପି : ପୃ. ୯୩ ।

ପୁସ୍ତକ ଗଙ୍ଗାଧରଙ୍କ ଦ୍ୱାରା ସଂଶୋଧିତ କରାଇ ନେବାକୁ ରାଧାନାଥଙ୍କର ଆଗ୍ରହ, ଗଙ୍ଗାଧରଙ୍କ ଜ୍ଞାନ ସମ୍ପର୍କରେ ରାଧାନାଥଙ୍କର ସ୍ୱୀକୃତିର ପରିଚୟସୂଚକ । ଏ ସମ୍ପର୍କରେ ଉଭୟଙ୍କ ମଧ୍ୟରେ ଅନ୍ତତଃ ୪/୫ ଖଣ୍ଡି ପତ୍ର ବିନିମୟ ହୋଇଥିବାର ଦେଖିବାକୁ ମିଳୁଛି । ଗଙ୍ଗାଧରଙ୍କ ବିନମ୍ରତାକୁ ଅସ୍ୱୀକାର କରି ରାଧାନାଥ ତାଙ୍କୁ ନିଜ ପୁସ୍ତକର ସମସ୍ତ ଦୋଷ ଦେଖାଇ ଦେବା ନିମନ୍ତେ ବାରମ୍ବାର ଅନୁରୋଧ କରିଥିଲେ ।★ ଗଙ୍ଗାଧରଙ୍କ ଜ୍ଞାନ ସମ୍ପର୍କରେ ରାଧାନାଥ କିଭଳି ଉଚ୍ଚମତ ପୋଷଣ କରୁଥିଲେ, ତାହା ଏଥିରୁ ଜଣାଯାଏ ।

କବି ଏବଂ ପଣ୍ଡିତ ଗଙ୍ଗାଧର ଯେ ରାଧାନାଥଙ୍କର ଶ୍ରଦ୍ଧା ଆକର୍ଷଣ କରିଥିଲେ, ତାହା ନୁହେଁ, ମଣିଷ ଗଙ୍ଗାଧର ମଧ୍ୟ ରାଧାନାଥଙ୍କ ଠାରୁ ଖାଲି ହାତରେ ଫେରି ନଥିଲେ । ଶ୍ରଦ୍ଧା ଏବଂ ସମ୍ମାନରେ ରାଧାନାଥ ତାଙ୍କର ଶୂନ୍ୟ ଅଞ୍ଜଳି ଭରି ଦେଇଥିଲେ । ରାଧାନାଥ ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱକୁ ଶ୍ରଦ୍ଧା ଜଣାଇ ଲେଖିଥିଲେ, "× × ଆପଣ ସୁକବି ଏବଂ ସୁଲେଖକ କେବଳ ଏହି କଥା ମନେକରି ମୁଁ ଯେ ଆପଣଙ୍କୁ ଶ୍ରଦ୍ଧା କରେ, ତାହା ନୁହେଁ; ମୁଁ ଜାଣେ ଆପଣ ପବିତ୍ର ହୃଦୟ ସାଧୁପୁରୁଷ । ଆପଣେ କେବଳ ମୋହର ଶ୍ରଦ୍ଧା ଆକର୍ଷଣ କରି ଅଛନ୍ତି ତାହା ନୁହେଁ, ସେହି ଶ୍ରଦ୍ଧା ସଙ୍ଗେ ଆନ୍ତରିକ ଭକ୍ତି ମଧ୍ୟ ଆକର୍ଷଣ କରିଅଛନ୍ତି ।" ଉଭୟଙ୍କ ମଧ୍ୟରେ ଥିବା ପ୍ରୀତିର ସମ୍ପର୍କଟି ଉପରୋକ୍ତ ପତ୍ରରୁ ଧରାପଡ଼ି ଯାଇଥାଏ । ରାଧାନାଥ ଗଙ୍ଗାଧରଙ୍କୁ ଅତି ଆପଣାର ମନେ କରୁଥିଲେ । ତେଣୁ ଉତ୍କଳ ସମ୍ମିଳନୀ ଉପଲକ୍ଷେ କବି ଯେତେବେଳେ କଟକ ଆସିଲେ, ରାଧାନାଥଙ୍କ ଆଗ୍ରହାତିଶଯ୍ୟରୁ ତାଙ୍କୁ ରାଧାନାଥଙ୍କ ଗୃହରେ ହିଁ ରହିବାକୁ ହୋଇଥିଲା । କଟକ ରହଣୀର କେଇଟି ଦିନ ସାହିତ୍ୟିକ ମତ ବିନିମୟରେ ବେଶ୍ ଭଲ ଭାବରେ କଟିଯାଇଥିଲା ।

ରାଧାନାଥଙ୍କ ବିୟୋଗରେ ଗଙ୍ଗାଧର ନିଜକୁ ଅତ୍ୟନ୍ତ ଅସହାୟମଣିଥିଲେ । ସାହିତ୍ୟ ରଚନା ନିମନ୍ତେ ସେ ଅଦ୍ୟାବଧି ଯେଉଁ ପ୍ରେରଣା ଲାଭ କରି ଆସୁଥିଲେ, ତାହା ଶୁଷ୍କ ହୋଇଗଲା । ତେଣୁ କବି ବିଚଳିତ ହୋଇ ପଡ଼ିଥିବା ସ୍ୱାଭାବିକ । ଏ ସମ୍ପର୍କରେ କବି ୧୯୧୦ ମସିହାରେ ଶ୍ରୀ ବ୍ରଜମୋହନ ପଣ୍ଡାଙ୍କ ନିକଟରେ ନିଜର ହୃଦୟ ଉନ୍ମୋଚନ କରିଥିଲେ ।✻ ରାଧାନାଥଙ୍କୁ କବି କେଉଁ ଦୃଷ୍ଟିରେ ଦେଖୁଥିଲେ,

---

★ "ଆପଣଙ୍କ ଠାରୁ ମୁଁ ପୁସ୍ତକ ସମ୍ବନ୍ଧରେ ମୂଲ୍ୟବାନ୍ ଉପଦେଶ ପ୍ରତ୍ୟାଶା କରେ । ବ୍ୟାକରଣ ଶାସ୍ତ୍ରରେ ଆପଣ ସବ୍ୟୁତ୍ପନ୍ନ । ମୁଁ ଯେଉଁ ପ୍ରଣାଳୀ ଅବଲମ୍ବନ କରି ପୁସ୍ତକ ଲେଖିଅଛି, ସେ ସମ୍ପର୍କରେ ଆପଣଙ୍କର ମତ ବିସ୍ତୃତ ଭାବରେ ଲେଖିଲେ ଉପକୃତ ହେବି । ମୋହୋର ନିତାନ୍ତ ପ୍ରାର୍ଥନା ଆପଣ ନିଃସଙ୍କୋଚରେ ସମସ୍ତ ଦୋଷ ଦେଖାଇବା ହେବେ—" [ କବିଲିପି : ପୃ. ୮୬ ]

✻ "ରାଧାନାଥଙ୍କର ସମାଧି ପ୍ରତିଷ୍ଠାର ତାବତ୍ ବିବରଣ ଓ ସ୍ତବ ପାଠକରି ମୋର ହୃଦୟ ଶୋକ ଓ ଆନନ୍ଦ ରସରେ ଯୁଗପତ୍ ପରିପ୍ଲାବିତ ହୋଇଗଲା । କବିବରଙ୍କ ବିୟୋଗରେ ମୋର ହୃଦୟ ଭଗ୍ନ ହୋଇଯାଇଅଛି । ଉତ୍ସାହ ଶିଖା ନିର୍ବାଣବତ୍ ହୋଇଯାଇଅଛି । ଆପଣ ତାଙ୍କ କଥା ଲେଖି ମୋର ସନ୍ତପ୍ତ ହୃଦୟରେ ଶାନ୍ତିବାରି ସେଚନ କରିଅଛନ୍ତି—" [ ଗଙ୍ଗାଧର ପତ୍ରାବଳୀ ପୃ. ୯।୧୦ ]

ତାଙ୍କ ପତ୍ରରୁ ତାହାର ସୂଚନା ମିଳିଥାଏ । ରାଧାନାଥ ଗଙ୍ଗାଧରଙ୍କୁ ନିଜର ଯୋଗ୍ୟ ଉତ୍ତରାଧିକାରୀ ମଣିଥିଲେ । ରାଧାନାଥୀ-ପରମ୍ପରା ଯେ କବିବରଙ୍କ ମୃତ୍ୟୁପରେ ଗଙ୍ଗାଧରଙ୍କ ଦ୍ୱାରା 'ବଜାୟ ରହିପାରିବ, ଏଥିରେ ଅନ୍ତତଃ ରାଧାନାଥଙ୍କର ସନ୍ଦେହ ନଥିଲା । ରାଧାନାଥଙ୍କ ସମସାମୟିକ କବିମାନଙ୍କ ମଧ୍ୟରେ ଥିଲେ, ମଧୁସୂଦନ, ନନ୍ଦକିଶୋର ପ୍ରଭୃତି । ମଧୁସୂଦନ ରାଧାନାଥଙ୍କର ପ୍ରିୟ ଶିଷ୍ୟ ତଥା ସହକର୍ମୀ ଥିଲେ ଏବଂ କାବ୍ୟ ରଚନାର ପ୍ରେରଣା ମଧ୍ୟ ମଧୁସୂଦନ ରାଧାନାଥଙ୍କ ଠାରୁ ପାଇଥିଲେ । ତେବେ କବିତା ସହିତ ତତ୍ତ୍ୱର ସମ୍ମିଶ୍ରଣରେ ମଧୁସୂଦନ ଯେଉଁ ସାହିତ୍ୟର ସୃଷ୍ଟି କରୁଥିଲେ, ତାହା ମୂଳତଃ ଅତିମାତ୍ରାରେ ଉପଦେଶାତ୍ମକ ହୋଇଯାଉଥିବାରୁ ସେଗୁଡ଼ିକର କାବ୍ୟ-ଧର୍ମ ପରିସ୍ଫୁଟ ହେବାରେ ବାଧା ପାଉଥିଲା । ନନ୍ଦକିଶୋର ରାଧାନାଥ-କାବ୍ୟ ସରଣୀର ବିଶ୍ୱସ୍ତ ପଦଯାତ୍ରୀ ଥିଲେ ।* ତାଙ୍କର ସର୍ଜନାଶକ୍ତି ଭିନ୍ନ ଦିଗରେ ପ୍ରବାହିତ ହେଉଥିବାରୁ ରାଧାନାଥ ତାଙ୍କ ଉପରେ ମଧ୍ୟ ବିଶେଷ ଭରସା କରିପାରି ନଥିଲେ । ଶେଷରେ ଗଙ୍ଗାଧରଙ୍କୁ ତେଣୁ ଅବଲମ୍ବନ କରିବା ବ୍ୟତୀତ ରାଧାନାଥଙ୍କର ଉପାୟ ନଥିଲା । ଗଙ୍ଗାଧର ଯେ, ଏଥି ନିମନ୍ତେ ଅଯୋଗ୍ୟ ଥିଲେ ଏ କଥା କୁହାଯାଇ ନାହିଁ । ବରଂ ନିଜ ଯୋଗ୍ୟତାର ସ୍ୱାକ୍ଷର ସେ ବହୁ ରୂପେ ଦେଇ ସାରିଥିଲେ । ତେଣୁ ରାଧାନାଥ ଶେଷ ଆଡ଼କୁ ବହୁ ଆଶାୟୀ-ନେତ୍ରରେ ଗଙ୍ଗାଧରଙ୍କ ଆଡ଼କୁ ଅନାଇ ରହିଥିଲେ । ଏ ବିଷୟ ବୋଧହୁଏ ଗଙ୍ଗାଧରଙ୍କୁ ଅଜଣା ନଥିଲା । ତେଣୁ 'ରାଧାନାଥ'ଙ୍କ ମୃତ୍ୟୁରେ ଗଙ୍ଗାଧରଙ୍କର ଯେଉଁ ଶୋକୋଚ୍ଛ୍ୱାସ ପ୍ରକାଶିତ ହୋଇଥିଲା, ସେଥିରେ ଅନ୍ୟାନ୍ୟ ବିଷୟ ସହ ଲିଖିତ ହୋଇଥିଲା, "କାହା ହସ୍ତେ ନ୍ୟସ୍ତ କରିଗଲ କାର୍ଯ୍ୟଭାର / କାହାର ବା ତୁମ୍ଭ ସମ ଅଛୁ ମନ-ଧନ / ଯାହାପ୍ରତି କରିଥିଲ ଅଙ୍ଗୁଳିର ଠାର / ଈଶ୍ୱର କି ତେବେ ତାଙ୍କୁ ତୁମ୍ଭ ପରିପଣ ?—" [ ସ୍ୱର୍ଗୀୟ କବିବର ରାଧାନାଥ ରାୟ — ଗଙ୍ଗାଧର ଗ୍ରନ୍ଥାବଳୀ ପୃ. ୨୭୨ / ୭୩ ] 'ଯାହାପ୍ରତି ରାଧାନାଥ ନିଜର ଉତ୍ତରାଧିକାରିତ୍ୱର ଅଙ୍ଗୁଳି ନିର୍ଦ୍ଦେଶ କରିଥିଲେ, ସେ ଅନ୍ୟ କେହି ନୁହନ୍ତି, ସ୍ୱୟଂ ଗଙ୍ଗାଧର ।' ପତ୍ରଦ୍ୱୟର ମଧ୍ୟରେ ଆନ୍ତରିକ ବିଶ୍ୱାସର ଯେଉଁ ସମ୍ପର୍କ ରହିଥିଲା, ଗଙ୍ଗାଧର କବିତାରୁ ତାହାର ସୂଚନା ମିଳିଥାଏ ।

ରାଧାନାଥ ଅପାତ୍ରରେ ନିଜର ବିଶ୍ୱାସ ନ୍ୟସ୍ତ କରିନଥିଲେ । ତାଙ୍କ ପ୍ରତି ଗଙ୍ଗାଧରଙ୍କର ଆମରଣ କୃତଜ୍ଞତାରୁ ଏହା ପ୍ରମାଣିତ ହୁଏ । ରାଧାନାଥଙ୍କ ନିମନ୍ତେ କିଛି କରିବାକୁ କୌଣସି ଉପାୟରେ କବିବରଙ୍କ ପ୍ରୟୋଜନରେ ବ୍ୟବହୃତ ହେବାକୁ ଗଙ୍ଗାଧରଙ୍କ ହୃଦୟ ଅହରହ ବ୍ୟାକୁଳ ଥିଲା । ମାତ୍ର 'ସ୍ୱାର୍ଥପର ସଂସାର'ର ଚକ୍ଷୁରେ ସମାଲୋଚନାର ଭ୍ରୁକୁଟି ଦେଖି ସେ ତହିଁରୁ ବିରତ ରହିଥିଲେ ।

---

* "ମୁଁ ଆପଣଙ୍କୁ ଜାତୀୟ କବି ଓ ଗୁରୁ ଏବଂ ନିଜକୁ ଜାତୀୟ ପାଠକ ଓ ଶିଷ୍ୟ ଭାବରେ ଦେଖେ । ×× ମୋର ବିଶ୍ୱାସ ଯେ କବିତା ରଚନା ବିଷୟରେ ମୁଁ ଆପଣଙ୍କ ନିକଟରେ କେତେକ ପରିମାଣରେ ଋଣୀ ।—"

[ ନନ୍ଦକିଶୋରଙ୍କର ପତ୍ର — ରାଧାନାଥ ଜୀବନୀ ପୃ. ୩୩୭ / ୩୮ ]

ରାଧାନାଥଙ୍କ ମୃତ୍ୟୁପରେ ମଧ୍ୟ ଗଙ୍ଗାଧରଙ୍କର ବିଶ୍ୱାସ ଟଳି ନଥିଲା । 'କବିତା କଲ୍ଲୋଳ'ର ଉତ୍ସର୍ଗ ପତ୍ରରୁ ଏହା ଜଣାଯାଇ ଥାଏ ।*

ରାଧାନାଥ ଏବଂ ଗଙ୍ଗାଧରଙ୍କର ପାରସ୍ପରିକ ସମ୍ପର୍କର ମୂଲ୍ୟାୟନରେ ଅପ୍ରିୟ ହେଲେ ମଧ୍ୟ ଗୋଟିଏ କଥା କୁହାଯାଇପାରେ । ଜୀବନର ବହୁ ସ୍ତର ଦେଇ ଆଗେଇ ଯାଉଁ ଯାଉଁ ରାଧାନାଥ ବହୁ ବିଚିତ୍ର-ଚରିତ୍ରର ନରନାରୀଙ୍କର ସାକ୍ଷାତ୍ ପାଇଥିଲେ । ଉଦାରତାର ଛଦ୍ମବେଶରେ ଆସି ଅନେକେ ତାଙ୍କର ପ୍ରଭୂତ କ୍ଷତି ସାଧନ ମଧ୍ୟ କରିଯାଇଥିଲେ । 'ମହାଯାତ୍ରା' ଅସମାପ୍ତ ରହିବାର ଏକମାତ୍ର କାରଣ ହେଉଛି, ତାଙ୍କର ଏକ ଅନୁଗୃହୀତ କର୍ମଚାରୀଙ୍କର ବିଶ୍ୱାସଘାତକତା । ଯଦି ଏହା ସତ୍ୟ ହୋଇଥାଏ, ତେବେ ମଣିଷକୁ ବିଶ୍ୱାସ କରିବାର କୌଣସି ପ୍ରୟୋଜନ ଅନ୍ତତଃ ରାଧାନାଥଙ୍କର ନଥିଲା ବୋଲି ଆମେ କହିପାରୁଁ ।

ଅନ୍ୟ ପକ୍ଷରେ ଗଙ୍ଗାଧର ସରଳ ଏବଂ ନିରୀହ । ଆଜନ୍ମ ପଲ୍ଲୀ ସହ ନିବିଡ଼ ସମ୍ପର୍କ ରଖି ଆସୁଥିବାରୁ ନାଗର-ସୁଲଭ ଚାଲ୍‌ବାଜୀ ଶିକ୍ଷା କରିବା ନିମନ୍ତେ ତାଙ୍କର ଇଚ୍ଛା ହୋଇନଥିଲା । ସେଥିନିମନ୍ତେ ସେ ଏକାଧିକବାର ବଂଚନାର ଶିକାର ହୋଇଥିଲେ ମଧ୍ୟ ନିଜକୁ ସଂଶୋଧନ କରିପାରି ନଥିଲେ । ତାଙ୍କର ଜୀବନ ଅଭିଜ୍ଞତା ବୈଚିତ୍ର୍ୟ ମଧ୍ୟ ନଥିଲା । ତେଣୁ ଯାହାକୁ ସେ ବିଶ୍ୱାସ କରୁଥିଲେ, ମନ ପ୍ରାଣ ଦେଇ ପୂର୍ଣ୍ଣମାତ୍ରାରେ ବିଶ୍ୱାସ କରିଯାଉଥିଲେ । ଅବିଶ୍ୱାସ ଥରେ କରିବାକୁ ଆରମ୍ଭକଲେ, ଆଉ ତାକୁ ବଦଳାଇ ପାରୁନଥିଲେ ।

ଗଙ୍ଗାଧର ରାଧାନାଥଙ୍କୁ ବିଶ୍ୱାସ କରୁଥିଲେ, ଭରସା କରୁଥିଲେ, ପୂର୍ଣ୍ଣ ରାଧାନାଥ-ଭକ୍ତ ଥିଲେ ଏହାହିଁ ତ ଆମେ ଏ ପର୍ଯ୍ୟନ୍ତ ଆଲୋଚନା କରି ଆସିଲେ । ରାଧାନାଥ ମଧ୍ୟ ଗଙ୍ଗାଧରଙ୍କୁ ଅବିଶ୍ୱାସ କରୁନଥିଲେ । ପ୍ରୟୋଜନ ଅପ୍ରୟୋଜନରେ ତାଙ୍କର ସହାୟତା କରୁଥିଲେ । ତଥାପି ଆମର ମନେହୁଏ, ରାଧାନାଥଙ୍କ ସ୍ୱଭାବରେ ତାହାହିଁ ନଥିଲା, ଯାହାକୁ କୁହାଯାଏ 'ପୂର୍ଣ୍ଣ ବିଶ୍ୱାସ' ରାଧାନାଥଙ୍କ ବ୍ୟବହାରରେ ତାହାର ଘୋର ଅଭାବ ଥିଲା, ଯାହାକୁ କୁହାଯାଏ 'ଋଜୁତା' । ଏ ବିଷୟରେ କିଛି ପ୍ରମାଣ ଆମର ହସ୍ତଗତ ହୋଇଛି । ଅବଶ୍ୟ ନିଜର ସାରଲ୍ୟ ହେତୁ 'ଗଙ୍ଗାଧର' ଏହା ଜାଣି ନଥିଲେ, କିମ୍ବା ଜାଣି ଥିଲେ ମଧ୍ୟ ଏ ବିଷୟରେ କେଉଁଠି କିଛି ମୁହଁ ଖୋଲି ନଥିଲେ । ତେଣୁ ତାଙ୍କର ମନୋଭାବ ସମ୍ପର୍କରେ ଆମେ ଅଜ୍ଞ ।

---

* ଆପଣ ମୋତେ ଯେଉଁ ଅମୂଲ୍ୟ ବାତ୍ସଲ୍ୟ ଧନ ଦେଇ ଯାଇଅଛନ୍ତି, ଆପଣଙ୍କ ଜୀବଦ୍ଦଶାରେ ମୁଁ ତହିଁର କିଛିମାତ୍ର କରିନପାରି ଋଣୀ ହୋଇ ରହିଅଛି । × × × ଭାବିଥିଲି, 'ଜୀବନ ବର୍ଷ'କୁ ଆପଣଙ୍କ ନାମରେ ଉତ୍ସର୍ଗ କରି ହୃଦୟର କୃତଜ୍ଞତା ମାତ୍ର ପ୍ରଦାନ କରି କୃତକୃତାର୍ଥ ହୋଇଥାନ୍ତି । × × × ଆଜିକାଲି ଅନେକଙ୍କର ଧାରଣା ଯେ, ଅଧିକାଂଶ ଲୋକଙ୍କର ଉତ୍ସର୍ଗ ସ୍ୱାର୍ଥମୂଳକ । ପରନ୍ତୁ ଆପଣ ସ୍ୱର୍ଗର ଦେବତା । ମୁଁ ସର୍ବସାଧାରଣଙ୍କ ଧାରଣାକୁ ସମର୍ଥିତ କରିବା ଅଭିପ୍ରାୟରେ ଏହି ମୂଲ୍ୟହୀନ 'କବିତା କଲ୍ଲୋଳ'ରେ ଭବଦୀୟ ସ୍ୱର୍ଗୀୟ ଆତ୍ମାର ସମର୍ପଣ କରୁଅଛି —" [ ଉତ୍ସର୍ଗ ପତ୍ର, କବିତା କଲ୍ଲୋଳ — ଗଙ୍ଗାଧର ଗ୍ରନ୍ଥାବଳୀ ]

[ ଏହି ଉତ୍ସର୍ଗ ପତ୍ରର ସମ୍ବୋଧନରେ ଗଙ୍ଗାଧର ରାଧାନାଥଙ୍କୁ "ପବିତ୍ର ହୃଦୟେଷୁ" ବୋଲି ସମ୍ବୋଧନ କରିଅଛନ୍ତି । ଗଙ୍ଗାଧରଙ୍କ ହୃଦୟରେ ରାଧାନାଥଙ୍କର ସ୍ଥାନ କେଉଁଠି ନିର୍ଦ୍ଦିଷ୍ଟ ହୋଇଥିଲା, ଏଥିରୁ ତାହା ଅନୁମାନ କରିବା କଷ୍ଟସାଧ୍ୟ ନୁହେଁ : ଲେଖକ ]

## ବ୍ରଜମୋହନ : ଗଙ୍ଗାଧର

ରାଧାନାଥଙ୍କ ମୃତ୍ୟୁରେ ପ୍ରେରଣା-ଦାୟିନୀ ଉତ୍ସଟି ସବୁଦିନ ପାଇଁ ଶୁଖିଯିବା ପରି ବୋଧ ହେବାରୁ ଗଙ୍ଗାଧର କିଭଳି ଭାଙ୍ଗି ପଡ଼ି ଥିଲେ, ତାହା ପୂର୍ବରୁ ଆଲୋଚିତ ହୋଇଛି । ଅକରୁଣ ମୃତ୍ୟୁର ନିର୍ମମ ଅଟ୍ଟହାସ୍ୟରେ ଗଙ୍ଗାଧର ପୂର୍ବରୁ ବହୁଥର ହୋଲି ପାଇଥିଲେ ମଧ୍ୟ, ଏ ମର୍ମନ୍ତୁଦ ଆଘାତ ସହ୍ୟ କରିବା ନିମନ୍ତେ ତାଙ୍କର ସଚେତ୍‌ଯେପରି ଆଉ ଶକ୍ତିର ଅବଶେଷ ନଥିଲା । ତାଙ୍କ ମନରେ ସୃଷ୍ଟି ହୋଇଥିଲା ଏକ ବିରାଟ ଶୂନ୍ୟତା । ଜୀବନ ପ୍ରତି, ସାହିତ୍ୟ ପ୍ରତି ଗଙ୍ଗାଧର ଯେଣୁ ବୀତସ୍ପୃହ ହୋଇ ପଡ଼ିଥିଲେ । ଏହି ଶୂନ୍ୟତା ପୂର୍ଣ୍ଣକରି ଏକ ଭଲସ୍ୱମୁଖୀ ପ୍ରତିଭାକୁ ଧ୍ୱଂସ ମୁଖରୁ ଫେରାଇ ଆଣି ପୁନର୍ବାର ସୃଷ୍ଟି କର୍ମରେ ନିଯୁକ୍ତ କରାଇବା ନିମନ୍ତେ ଯେତେବେଳେ ବ୍ରଜମୋହନ ବିଧିପ୍ରେରିତ ହୋଇ ଆସିଥିଲେ ।

ପ୍ରତିଭା କୌଣସି ଏକ ଅବଲମ୍ବନର ଅନ୍ୱେଷଣରେ ଯେତେବେଳେ ଆର୍ତ୍ତନାଦ କରୁଥିଲା ଠିକ୍ ସେତିକିବେଳେ ବ୍ରଜମୋହନ କବିଙ୍କ ଜୀବନ-ପରିଧିରେ ପ୍ରବେଶ କରିଥିଲେ । ବ୍ରଜମୋହନ ଆବାଲ୍ୟରୁ ସାହିତ୍ୟପ୍ରେମୀ ଥିଲେ । 'ଇନ୍ଦୁମତୀ' ଓ 'କୀଚକ ବଧ'ର କବି ଯେ ସାମାନ୍ୟ ଲେଖକ ମାତ୍ର ନୁହନ୍ତି, ଏହା ତାଙ୍କର ସାହିତ୍ୟ-ରସ-ପିପାସୁ ମନ ତାଙ୍କୁ ଚେତାଇ ଦେଇଥିଲା । ୧୯୦୩ ରେ 'କୀଚକ ବଧ'ର ପ୍ରକାଶ ପରେ ପରେ ଗଙ୍ଗାଧର ଏକ ଦୁର୍ଭେଦ୍ୟ-ନିସ୍ପୃହତାର ବର୍ମ ମଧ୍ୟରେ ଆତ୍ମଗୋପନ କରିଥିଲେ । 'ଜଙ୍ଗଲ-ଲକ୍ଷ୍ମୀ'ର ମୃଦୁ ସମାଲୋଚନା, ବାରମ୍ବାର ପାରିବାରିକ ଦୁର୍ଯୋଗର ଆଘାତ ବୋଧହୁଏ ତାଙ୍କର ମନୋବଳକୁ ଭାଙ୍ଗି ଦେଇଥିଲା । ଏକ ଗଭୀର-ଆଳସ୍ୟ କବି ଚିତ୍ତକୁ ଘେରି ରହିଥିଲା । ବ୍ରଜମୋହନ ଏହି ଆଳସ୍ୟର ବର୍ମକୁ ଭେଦକରି ଗଙ୍ଗାଧରଙ୍କୁ ପୁନର୍ବାର ଏକ ନୂତନ କର୍ମ-ଯଜ୍ଞର ନାୟକରୂପେ ପ୍ରତିଷ୍ଠା କରି ଦେଇଥିଲେ ।

ପ୍ରଥମ ଦର୍ଶନରୁ ହିଁ ବ୍ରଜମୋହନ ଗଙ୍ଗାଧରଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ ।☆ 'ଇନ୍ଦୁମତୀ' ଏବଂ 'କୀଚକବଧ'ର କବିଙ୍କୁ କେବଳ ଦୂରରୁ ଦେଖି ବ୍ରଜମୋହନଙ୍କର ମନ ତୃପ୍ତ ହୋଇନଥିଲା । ସେ ଚାହୁଁଥିଲେ, କବିଙ୍କର ଅତି ଅନ୍ତରଙ୍ଗ ହେବାକୁ । ଏ ସୁଯୋଗ ଆସିଲା ୧୯୦୯ ମସିହାରେ କଟକରେ ସେ ଛାତ୍ର ଥିଲାବେଳେ ।★

☆ "ଯେତେବେଳେ ଗଙ୍ଗାଧର ସମ୍ବଲପୁରରେ ରହୁଥାଅନ୍ତି । ତାଙ୍କୁ ଦେଖିବାକୁ ଅନେକ ସମୟରେ ସୁଯୋଗ ମିଳେ । ତରୁଣ ଜୀବନ, ହୃଦୟର କବିତା କବିଙ୍କର ପ୍ରତ୍ୟକ୍ଷ ଦର୍ଶନ ପ୍ରମତ୍ତ ହୃଦୟରେ ଭାବାବେଶ ଜାତକରେ ।" [ ଗଙ୍ଗାଧର ପତ୍ରାବଳୀ — ପୃ. ୯/୮ ]

★ "୧୯୦୯ ରେ ରାଧାନାଥଙ୍କ ଶ୍ରାଦ୍ଧ ଦିବସ ଦିନ ସଖୀ ଚଉରାରେ ତାଙ୍କ ସମାଧି ପ୍ରତିଷ୍ଠା ହୁଏ । × × × କବି ନନ୍ଦୁଙ୍କ ଅଭାବରେ ସମସ୍ତଙ୍କ ହୃଦୟ ଅଲୋଡ଼ିତ ହେଉଥାଏ । ମୂକ ସାକ୍ଷୀରୂପେ ମୋର ହୃଦୟ ମଧ୍ୟ ଭାବାବିଷ୍ଟ ହୋଇଥାଏ । ସନ୍ଧ୍ୟାରେ ବସାକୁ ଫେରି ହଷ୍ଟେଲରେ ଗଙ୍ଗାଧରଙ୍କ କଥା ଚନ୍ତାକଲି । ତାଙ୍କଠାକୁ ପତ୍ର ଲେଖିବାକୁ ମନହେଲା । × × କବି କ'ଣ ମନେ କରିବେ ? ସନ୍ଦେହ ଦୋଳାରେ ଆଠମାସ କଟିଗଲା ଶେଷରେ ହୃଦୟ କୌତୂହଳ ପରିହାର କରି ଡିସେମ୍ବର ମାସରେ ତାଙ୍କ ନିକଟକୁ ପ୍ରଥମ ପତ୍ର ଲେଖିଲି । ପତ୍ରର ଯେଉଁ ଉତ୍ତର ପାଇଲି, ସେଇଥିରେ ହିଁ ତାଙ୍କ ସଙ୍ଗେ ମୋର କୃଷ୍ଣଦାମଙ୍କ ସଙ୍ଗେ ସୁଦାମର ଅଭେଦ୍ୟ ଅଚ୍ଛେଦ୍ୟ ପ୍ରୀତି ସ୍ଥାପିତ ହେଲା । ତାଙ୍କୁ ପାଇ ମୁଁ ଧନ୍ୟ ହେଲି ।" [ ଗଙ୍ଗାଧର ପତ୍ରାବଳୀ—ପୃ. ୮/୧ ]

ଏହି ସମୟରେ ଗଙ୍ଗାଧର ଗୁରୁତର ମାନସିକ ଅବ୍ୟବସ୍ଥିତି ମଧ୍ୟରେ ଗତି କରୁଥାଆନ୍ତି । କୌଣସି କର୍ମରେ ସେମିତି ଆଗ୍ରହ ନାହିଁ । ଅତି ପ୍ରୀତିପ୍ରଦ ସାହିତ୍ୟ କର୍ମ ମଧ୍ୟ ତାଙ୍କୁ ପୂର୍ବଭଳି ଆନନ୍ଦ ଦେଇପାରୁ ନାହିଁ । ବ୍ରଜମୋହନଙ୍କର ପତ୍ରର ଉତ୍ତରରେ ଗଙ୍ଗାଧର ଯାହା ଲେଖିଥିଲେ ସେଥିରୁ ତାଙ୍କର ତତ୍କାଳୀନ ଅବସ୍ଥା ସମ୍ପର୍କରେ ଧାରଣା କରି ହୁଏ ।* ସାହିତ୍ୟପ୍ରାଣ ବ୍ରଜମୋହନ ଚାହୁଁଥିଲେ ସାହିତ୍ୟ ନିମନ୍ତେ କିଛି କରିବା ନିମନ୍ତେ । ଗଙ୍ଗାଧରଙ୍କ ସହ ସମ୍ପର୍କ ସ୍ଥାପନ, ତାଙ୍କର ନିରୁତ୍ସାହିତ ମନରେ ନୂତନ ପ୍ରେରଣା ସୃଷ୍ଟି କରି ତାଙ୍କୁ ପୁନର୍ବାର ସାହିତ୍ୟ କର୍ମରେ ବ୍ରତୀ କରାଇବା ଥିଲା ବ୍ରଜମୋହନଙ୍କ ସାହିତ୍ୟ ସ୍ୱପ୍ନର ଅନ୍ତର୍ଭୁକ୍ତ । ଗଙ୍ଗାଧର ମଧ୍ୟ ନିଜର ମାନସିକ ଭାରସାମ୍ୟ ହରାଇ ଅବ୍ୟବସ୍ଥିତ ଅବସ୍ଥାରେ ରହିଥିଲେ । ତାଙ୍କର ମନ ଚାହୁଁଥିଲା ଏକ ନୂତନ ଅବଲମ୍ବନ । ବ୍ରଜମୋହନଙ୍କ ଠାରେ ତାଙ୍କର ସେଇ ଆଶା ଫଳବତୀ ହୋଇଥିଲା । ତେଣୁ ଉଭୟେ ଉଭୟଙ୍କୁ ପାଇ ଧନ୍ୟ ହେଲେ । ବ୍ରଜମୋହନ ଗଙ୍ଗାଧରଙ୍କ ସହ ସମ୍ପର୍କ ସ୍ଥାପନରେ ଆଗ୍ରହୀ ହେବାର ଅନ୍ୟଏକ କାରଣ ମଧ୍ୟ ଥିଲା । ଶ୍ରୀ ଅସିତ କବି ଏ ସମ୍ପର୍କରେ ବ୍ରଜମୋହନଙ୍କ ସହ ହୋଇଥିବା ବ୍ୟକ୍ତିଗତ ଆଲୋଚନାର ବିବରଣୀ ତାଙ୍କର 'ଗଙ୍ଗାଧର ଜୀବନୀ' ଗ୍ରନ୍ଥରେ ପ୍ରଦାନ କରିଅଛନ୍ତି । ରାଧାନାଥଙ୍କ ସମାଧି ପୀଠରେ ତାହାଙ୍କର ସାହିତ୍ୟିକ-ଉତ୍ତରାଧିକାରିତ୍ୱ ସମ୍ପର୍କରେ ଯେଉଁ ଆଲୋଚନା ହୋଇଥିଲା, ସେଥିରେ ସମସ୍ତେ ଗଙ୍ଗାଧରଙ୍କ ବିଷୟହିଁ ବିଶେଷ କରି ଉଠାଇଥିଲେ । ଉତ୍ସାହିତ ଏବଂ ତୃପ୍ତ ବ୍ରଜମୋହନ ତେଣୁ ଏହି ବିଷୟରେ ଗଙ୍ଗାଧରଙ୍କୁ ପତ୍ର ଲେଖିଥିଲେ । ପରବର୍ତ୍ତୀକାଳରେ ଗଙ୍ଗାଧର ରାଧାନାଥଙ୍କ ସ୍ମୃତି ତର୍ପଣ କରିବା ନିମନ୍ତେ 'ସ୍ୱର୍ଗୀୟ କବିବର ରାଧାନାଥ ରାୟ' ନାମକ ଯେଉଁ କବିତା ଲେଖିଥିଲେ, ଏଥିରେ ବିନମ୍ର ଭାବରେ ସେ ରାଧାନାଥଙ୍କର ଉତ୍ତରାଧିକାରିତ୍ୱର ଦାୟିତ୍ୱକୁ ଏଡ଼ାଇ ଯାଇଥିଲେ ।

ଗଙ୍ଗାଧରଙ୍କ ସହ ବ୍ରଜମୋହନଙ୍କର ଯେଉଁ ସଖ୍ୟ ସ୍ଥାପିତ ହୋଇଥିଲା, ତାହା ଅମୃତ୍ୟୁ ସ୍ଥାୟୀ ରଖିବା ନିମନ୍ତେ ଗଙ୍ଗାଧରଙ୍କର ଆଗ୍ରହର ସୀମା ନଥିଲା । କ୍ରମେ ବ୍ରଜମୋହନ ଗଙ୍ଗାଧରଙ୍କର ପାରିବାରିକ ବନ୍ଧୁ ହେବାର ଗୌରବ ଲାଭ କରିଥିଲେ । ବୟସଃ କନିଷ୍ଠ ହେଲେ ମଧ୍ୟ ବିନୟୀ ଗଙ୍ଗାଧର ସର୍ବଦା ବ୍ରଜମୋହନଙ୍କୁ ସମ୍ମାନ କରି ଆସୁଥିଲେ । ତତ୍କାଳରେ ସମ୍ବଲପୁରରେ ଶିକ୍ଷିତ ଧନାଢ୍ୟ ବ୍ୟକ୍ତିର ଅଭାବ ନଥିଲା କିନ୍ତୁ ସେମାନଙ୍କ ମଧ୍ୟରେ ଯଥାର୍ଥ ସାହିତ୍ୟପ୍ରାଣ ବ୍ୟକ୍ତିର ଘୋର ଅଭାବ ରହିଥିଲା । ଗଙ୍ଗାଧରଙ୍କର ସାହିତ୍ୟ-ପକ୍ଷପାତୀ ମନ ତେଣୁ ତାଙ୍କୁ ହିଁ ଜୀବନର ଶେଷ ଆଶ୍ରୟ ରୂପେ ଦୃଢ଼ ଭାବରେ ଭିଡ଼ି ଧରିଥିଲା, ଯିଏ କି ତାଙ୍କୁ ସହାନୁଭୂତି ଦେଖାଇଥିଲେ, ତାଙ୍କର ସାହିତ୍ୟ-କର୍ମକୁ

---

* "ମୁଁ ନିଜର ଦୁରବସ୍ଥା, ମନଃପୀଡ଼ା ଓ ସ୍ୱାସ୍ଥ୍ୟର ପ୍ରତିକୂଳତା ଯୋଗୁଁ କିଛି ଲେଖିପାରିନାହିଁ । ×× ମୁଁ ଅନେକ ସମୟରେ କୌଣସି କୌଣସି ବିଷୟରେ କବିତା ଆରମ୍ଭ କରି ୪୦/୫୦ ପଂକ୍ତି ମାତ୍ର ଲେଖି, ଅସମ୍ପୂର୍ଣ୍ଣ କରିପକାଇଛୁ । ତହିଁରେ ଯତ୍ନ କଲେ ପୂର୍ଣ୍ଣ କରାଯାଇପାରେ । ଆପଣଙ୍କ ମୂଲ୍ୟବାନ ଉତ୍ସାହ ପାଇ ତହିଁରେ ଅଗ୍ରସର ହେବାକୁ ମନ କରୁଅଛୁ । ×× ଆପଣଙ୍କ ଦର୍ଶନ ପାଇଲେ ମୋର ଯତ୍‌ପରୋନାସ୍ତି ପ୍ରୀତି ଲାଭ ହେବ । ନୟନ ଚରିତାର୍ଥ ହେବ । ଜୀବନ ଧନ୍ୟ ହେବ—"

[ ଗଙ୍ଗାଧର ପତ୍ରାବଳୀ — ପୃ. ୧/୨ ]

ସମ୍ପାଦକର ଚକ୍ଷୁରେ ଦେଖିଥିଲେ ।* ପତ୍ରାବଳୀର ସର୍ବତ୍ର ଏହି ଦୃଢ଼ ବିଶ୍ୱାସର / ନିର୍ଭରଶୀଳତାର ବିବରଣୀ ପ୍ରଚୁର ପରିମାଣରେ ବିଦ୍ୟମାନ । ସଜ୍ଜନ ଗଙ୍ଗାଧରଙ୍କର ସରଳ ବିଶ୍ୱାସୀ ମନ ଥରେ ଯାହାକୁ ବିଶ୍ୱାସ କରୁଥିଲା, ଆଉ କୌଣସି ମତେ ସେଠାରେ ଅବିଶ୍ୱାସର ପ୍ରଶ୍ନ ଉଠୁନଥିଲା । ବ୍ରଜମୋହନ ଆନ୍ତରିକତାର ଉପସ୍ଥିତିରେ ଗଙ୍ଗାଧରଙ୍କର ମନର-ମଣିକୋଠାରେ ପ୍ରବେଶ ଅଧିକାର ଲାଭକରି ତେଣୁ ସେଠାରେ ଚିରସ୍ଥାୟୀ ହୋଇ ରହିଯାଇଥିଲେ ।

ଗଙ୍ଗାଧରଙ୍କ ସହ ସାରସ୍ୱତ ସମ୍ପର୍କରେ ବ୍ରଜମୋହନଙ୍କର ମଧ୍ୟ ସାହିତ୍ୟିକ ପ୍ରବୃତ୍ତି ଜାତ ହୋଇଥିଲା । କାମନା ପୂର୍ବରୁ ରହିଥିଲା । କେବଳ ଉପଯୁକ୍ତ ପ୍ରେରଣା ଅଭାବରୁ ତାହା ଉପଯୁକ୍ତ ଭାବରେ ଆତ୍ମପ୍ରକାଶ କରିପାରୁ ନଥିଲା । ଗଙ୍ଗାଧର ସହାନୁଭୂତିରେ / ପ୍ରେରଣାରେ ବ୍ରଜମୋହନଙ୍କ 'ପ୍ରବୃତ୍ତି-ବୀଜ' ଉପରେ ଚପା ଥିବା ପାଷାଣଟିକୁ ଘୁଞ୍ଚାଇ ଦେଇଥିଲେ । ଅତଏବ ସେଥିରୁ ସୁନ୍ଦର ଗୁଳ୍ମଟିଏ ମୁଣ୍ଡ ଟେକି ଗଙ୍ଗାଧରଙ୍କ ପରିଚର୍ଯ୍ୟାରେ ବଢ଼ି ଉଠିଥିଲା । $ ବ୍ରଜମୋହନଙ୍କର ସମ୍ପର୍କରେ ଗଙ୍ଗାଧର ଆଶାବାଦୀ ଥିଲେ । ତେଣୁ ସେ ସର୍ବଦା ତାଙ୍କୁ ସୃଷ୍ଟି କର୍ମରେ ପ୍ରବୃତ୍ତ ହେବା ନିମନ୍ତେ ଉତ୍ସାହ ପ୍ରଦାନ କରୁଥିଲେ ।☆ ବ୍ରଜମୋହନଙ୍କର କ୍ରମବର୍ଦ୍ଧିଷ୍ଣୁ କବିତା ଶକ୍ତି ଗଙ୍ଗାଧରଙ୍କ ପ୍ରାଣରେ ଅନାବିଳ ଆନନ୍ଦ ଜାତ କରିଥିଲା । ସ୍ୱହସ୍ତ ବର୍ଦ୍ଧିତ ଲତାରେ ନବପୁଷ୍ପୋଦ୍‌ଗମ କାହାର ହୃଦୟକୁ ଆନନ୍ଦମଗ୍ନ ନ କରିବ ?† ଶିକ୍ଷକର ନିଷ୍ଠା ସହିତ ବନ୍ଧୁତ୍ୱର ଅନୁରାଗ ମିଶାଇ ଗଙ୍ଗାଧର ବ୍ରଜମୋହନଙ୍କ ସାହିତ୍ୟ ପିପାସା ବଢ଼ାଇବାରେ ଲାଗିଥିଲେ । ସଂଶୋଧନ ପରିବର୍ତ୍ତନ, ଅନୁଯୋଗର ସହାୟତାରେ କବି ବ୍ରଜମୋହନଙ୍କର

---

* "ଦୈବଧନର ଅଧିକାରୀଙ୍କୁ ସଜ୍ଜନମାନେ ପୂଜା କରନ୍ତି । ସେହିପରି ଆପଣ ଯଦି ମୋତେ ସଜ୍ଜନ ମନେ କରନ୍ତି ଆପଣ ମୋର ପୂଜ୍ୟ ନ ହେବେ କାହିଁକି ? ଆପଣଙ୍କ ସହାୟ ପାଇ ମୁଁ ମୋର ଜୀବନ ଚରିତାର୍ଥ କରିବି ବୋଲି ଦୃଢ଼ ଆଶା ପୋଷଣ କଲି । × × × ସମ୍ବଲପୁରର ଅନେକ ବ୍ୟକ୍ତି ଉଚ୍ଚ ଉଚ୍ଚ ବିଦ୍ୟାଳୟରେ ଶିକ୍ଷାର୍ଜନ କରିଅଛନ୍ତି । ଆପଣଙ୍କ ହୃଦୟର ଭାବର ଶତାଂଶ ଯଦି ସେମାନଙ୍କର ପ୍ରତ୍ୟେକଙ୍କର ହୃଦୟରେ ଥାଆନ୍ତା, ତେବେ ସମ୍ବଲପୁର ଆଜି ନିନ୍ଦିତ ହେଉ ନଥାନ୍ତା । ଧନ୍ୟ ଆପଣ । ଆପଣଙ୍କ ସହାନୁଭୂତି ଲାଭକରି ମୁଁ ମଧ୍ୟ ଧନ୍ୟ । [ ଗଙ୍ଗାଧର ପତ୍ରାବଳୀ — ପୃ. ୫ / ୬ ]

$ "ଆପଣଙ୍କର ପତ୍ରପାଇ ଅନୁଗୃହୀତ ଓ କବିତା ପଢ଼ି ଆନନ୍ଦିତ ହେଲି । × × × ପ୍ରଥମୋଦ୍ୟମରେ ଆପଣଙ୍କର ଯେପରି କୃତିତ୍ୱ ଦେଖାଯାଉ ଅଛି, ସମୟରେ ଆପଣଙ୍କଠାରୁ ଅତ୍ୟୁତ୍କୃଷ୍ଟ କବିତା ମିଳିବ ବୋଲି କାହାର ଆଶା ନ ହେବ ?" [ ଗଙ୍ଗାଧର ପତ୍ରାବଳୀ — ପୃ. ୧୧ / ୧୨ ]

☆ "ଆପଣଙ୍କ ରଚିତ 'କପିଳାସ' ଉତ୍ତମ ହୋଇଅଛି । ତାହା ଉତ୍କଳ ଭାରତୀଙ୍କର ପୂଜାର ଉପଯୁକ୍ତ ସୁରମ୍ୟ ପୁଷ୍ପ ଗୋଟିଏ ବୋଲିବାକୁ ହେବ –" [ ଗଙ୍ଗାଧର ପତ୍ରାବଳୀ — ପୃ. ୧୬ ]

† 'ବୁଢ଼ା ରଜା' ଓ 'ସମଲାଇ' ପଦ୍ୟଦ୍ୱୟ ଆନନ୍ଦୋତ୍ଫୁଲ୍ଲ ଚଞ୍ଚଳ ଲୋଚନରେ ପାଠକଲି । କବିତା-ରସାସ୍ୱାଦନରେ ପ୍ରାଣ ମୁଗ୍‌ଧ ହୋଇଗଲା । ଆପଣ ଏତେ ଶୀଘ୍ର ଏପରି ମନୋହାରିଣୀ କବିତା ଲେଖି ପାରିଛନ୍ତି । [ ଗଙ୍ଗାଧର ପତ୍ରାବଳୀ — ପୃ. ୩୩ ]

ସାହିତ୍ୟିକ ରୂପ ଗଢ଼ିବାରେ ଲାଗିଥିଲେ ।* ବ୍ରଜମୋହନ ଗଙ୍ଗାଧରଙ୍କର ଆନ୍ତରିକତାକୁ ଅସ୍ୱୀକାର କରୁନଥିଲେ । ବରଂ କବିଙ୍କର ଉଦ୍ୟମରେ ଭବିଷ୍ୟତରେ ସେ ଯେ ଜଣେ 'ଭଲ ଲେଖକ' ହୋଇପାରିବେ, ଏଥିରେ ତାଙ୍କର ସନ୍ଦେହ ନଥିଲା । ପ୍ରିୟ ଶିଷ୍ୟର କୃତିତ୍ୱ ଗଙ୍ଗାଧରଙ୍କୁ କମ୍ ଆନନ୍ଦ ଦାନ କରିନଥିଲା । ପୁତ୍ର ଉପଯୁକ୍ତ ହେଲେ, ପିତା ଯେଉଁ ଭଳି ତାର ମତାମତ ନ ନେଇ କୌଣସି କାର୍ଯ୍ୟ କରନ୍ତିନାହିଁ, ସାହିତ୍ୟ ପ୍ରାଣ ଗଙ୍ଗାଧର ସେହିଭଳି ନିଜ ପୁସ୍ତକ ସମ୍ପର୍କରେ ସାହିତ୍ୟ-ଶିଷ୍ୟ ବ୍ରଜମୋହନଙ୍କ ମନ୍ତବ୍ୟକୁ ବହୁମୂଲ୍ୟ ଦେଉଥିଲେ । ଏପରିକି କବି ଜୀବନର ଚରମ କୃତିତ୍ୱ 'ତପସ୍ୱିନୀ'ର ସଂଶୋଧନ ନିମନ୍ତେ କବି ପ୍ରଥମେ ବ୍ରଜମୋହନଙ୍କ ମନ୍ତବ୍ୟ ଜିଜ୍ଞାସୁ ହୋଇଛନ୍ତି ।$ ରାଧାନାଥଙ୍କ ଉତ୍ସାହରେ ଯଦି 'ଗଙ୍ଗାଧର' କବିରୂପେ ଓଡ଼ିଆ ସାହିତ୍ୟାକାଶରେ ଆବିର୍ଭୂତ ହୋଇଥାଆନ୍ତି, ତେବେ ବ୍ରଜମୋହନଙ୍କୁ ଗଙ୍ଗାଧରଙ୍କର ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ 'ନବ-ଅବଦାନ' ବୋଲି କହିବା ମଧ୍ୟ ଅଯୁକ୍ତିପୂର୍ଣ୍ଣ ନୁହେଁ ବୋଲି ଆମର ମତ ।

ବ୍ରଜମୋହନଙ୍କ କବିରୂପ ଦେଖିବା ନିମନ୍ତେ ଗଙ୍ଗାଧର ଯେତେ ଆଶାୟୀ ଥିଲେ ଗଙ୍ଗାଧରଙ୍କୁ ସାହିତ୍ୟ କର୍ମରେ ନିତ୍ୟ-ପ୍ରବୃତ୍ତ କରାଇବା ନିମନ୍ତେ ବ୍ରଜମୋହନଙ୍କ ଠାରେ ମଧ୍ୟ କଦାପି ଉତ୍ସାହର ଅଭାବ ଲକ୍ଷ୍ୟ କରାଯାଇନାହିଁ । କାବ୍ୟ କବିତା ଗଙ୍ଗାଧରଙ୍କ ଠାରୁ ଆଦାୟ କରିବା ନିମନ୍ତେ ବ୍ରଜମୋହନଙ୍କୁ ମଧ୍ୟ କମ୍ ଆୟାସ କରିବାକୁ ହୋଇନାହିଁ । ତାଙ୍କର ସନିର୍ବନ୍ଧ ଅନୁରୋଧରେ ହିଁ କବି ଆଗେ ରଖି ଦେଇଥିବା ଲେଖାମାନ ପୁନର୍ବାର ହାତକୁ ଉଠାଇ ନେଇଥିଲେ ଏବଂ ପରେ ପରେ 'କବିତା କଲ୍ଲୋଳ', 'ଅଯୋଧ୍ୟା ଦୃଶ୍ୟ', 'ଉତ୍କଳ ଲକ୍ଷ୍ମୀ', 'ତପସ୍ୱିନୀ' ଓ 'ପ୍ରଣୟ ବଲ୍ଲରୀ' ଇତ୍ୟାଦିର ରଚନା ଏବଂ ପ୍ରକାଶନ ହୋଇଥିଲା । କାବ୍ୟଗୁଡ଼ିକ ପ୍ରକାଶନର ଦାୟିତ୍ୱ ବ୍ରଜମୋହନ ସ୍ୱେଚ୍ଛାକୃତ ଭାବରେ କରିଥିଲେ ଏବଂ ସମ୍ବଲପୁରର ଧନୀ ବ୍ୟକ୍ତିମାନଙ୍କୁ ପ୍ରଭାବିତ କରାଇ ସେଗୁଡ଼ିକ ପ୍ରକାଶ କରାଇବାର ବ୍ୟବସ୍ଥା କରୁଥିଲେ । ବ୍ରଜମୋହନ ଥିଲେ, ତେଣୁ ଓଡ଼ିଆ ସାହିତ୍ୟ 'ତପସ୍ୱିନୀ' ଏବଂ 'ପ୍ରଣୟ ବଲ୍ଲରୀ' ଭଳି ଦୁଇଖଣ୍ଡି ଉନ୍ନତ କାବ୍ୟ-ଗ୍ରନ୍ଥ ଲାଭ କରିପାରିଲା । ସେଇଭଳି 'ଯୌବନଗାଥା'ର କବି ମଧ୍ୟ ଗଙ୍ଗାଧରଙ୍କ ସୃଷ୍ଟି । ଅନ୍ୟୋନ୍ୟ ନିର୍ଭରଶୀଳତାର ଏହି ଦୃଷ୍ଟାନ୍ତ ସମଗ୍ର ଭାରତୀୟ ସାହିତ୍ୟରେ ମଧ୍ୟ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ ।

ବ୍ରଜମୋହନ ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲେ ଯେ, ଅର୍ଥାଭାବ ହିଁ ଗଙ୍ଗାଧରଙ୍କ ଜୀବନର ଯାବତୀୟ ଦୁଃଖ ଦୁର୍ଦ୍ଦଶାର କାରଣ । ତାହାର ଚିନ୍ତାରେ କବି ସାହିତ୍ୟ ସେବାରେ ମନଯୋଗୀ

---

* "ଭୁବନେଶ୍ୱର" ରଚନା ଦେଖିଲି । ପ୍ରଥମ ପଙ୍କ୍ତି ବାହାର କରିଦେଲେ ଭଲ ହେବ । × × ଭୁବନେଶ୍ୱରରେ ଆପଣ ଯାହା ଲେଖି ଅଛନ୍ତି, ତାହା ମନ୍ଦ ହୋଇନାହିଁ । ଯେଉଁ କେତେ ଟି ବାକ୍ୟ ଅନୁକରଣପର ହୋଇଥିଲା, ତାହା ବଦଳାଇ ଦେଇଅଛି । × × ଦିନ ଦିନ ଆପଣଙ୍କର ଲିଖନ ଶକ୍ତି ବର୍ଦ୍ଧିତ ହେଉ, ହୋଇ ଆସୁଅଛି । ଏତେବେଳକୁ ଆପଣ ପଠିତ ପୁସ୍ତକମାନଙ୍କର ଭାବ ଓ ଭାଷା ଉପରେ ନିର୍ଭର କରୁଅଛନ୍ତି । କ୍ରମେ କ୍ରମେ ତାହା ଦୂର ହୋଇ ନିଜର ହୃଦୟରୁ ସୁନ୍ଦର ସୁନ୍ଦର ଭାବ ଓ ଭାଷା ବହିର୍ଗତ ହେବ ।
[ ଗଙ୍ଗାଧର ପତ୍ରାବଳୀ — ପୃ. ୭୩ / ୭୪ ]

$ "ତପସ୍ୱିନୀସ୍ଥ ଭାଷାକୁ 'ଶ୍ୱେତପରର୍ଦ୍ଧିନ ଦୁର୍ଗା'ନ କରି 'ବକତରଙ୍ଗ ଦୁର୍ଗା' କଲେ ଭଲ ହେବ । ତାହା କରିବି ତ ?" [ ଗଙ୍ଗାଧର ପତ୍ରାବଳୀ — ପୃ. ୧୭୫ ]

ହୋଇପାରୁ ନାହାନ୍ତି । ସୌଭାଗ୍ୟ ବଶତଃ ବ୍ରଜମୋହନଙ୍କର ଧନର ଅଭାବ ନଥିଲା । ଗଙ୍ଗାଧରଙ୍କର ଅଭାବ ଦୂର କରିବା ନିମନ୍ତେ ସେ ସତତ ପ୍ରଯତ୍ନଶୀଳ ହୋଇଥିଲେ ମଧ୍ୟ ଆତ୍ମ-ସମ୍ମାନ ହାନି ହେବା ଆଶଙ୍କାରେ ଗଙ୍ଗାଧର ସମସ୍ତ ପ୍ରକାରର ସାହାଯ୍ୟକୁ ବିନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରି ଆସୁଥିଲେ । ଫଟୋ ଉଠାଇବା ନିମନ୍ତେ 'ବ୍ରଜମୋହନ'ଙ୍କ ଆଗ୍ରହକୁ କବି ନିଜ ବ୍ୟୟରେ ଚରିତାର୍ଥ କରିଥିଲେ । ଯାହାକିଛି ଅଳ୍ପ ବ୍ୟୟ ପୁସ୍ତକାଦି କ୍ରୟ କରିବାରେ ବ୍ୟୟ ହେଉଥିଲା, ତାହା ମଧ୍ୟ କ୍ୱଚିତ୍ ବ୍ରଜମୋହନଙ୍କ ଠାରୁ ଗୃହୀତ ହେଉଥିଲା । ଚତୁର ବ୍ରଜମୋହନ ନିଜର ଲାଇବ୍ରେରୀର ସମସ୍ତ ସମ୍ପତ୍ତିକୁ କବିଙ୍କ ପାଦତଳେ ନିବେଦନ କରିବାର ଏକ ପ୍ରସ୍ତାବକୁ ସୁଚତୁର ଗଙ୍ଗାଧର କୌଶଳର ସହ ଏଡ଼ାଇ ଯାଇଥିଲେ ।※ ତେଣୁ ବ୍ରଜମୋହନ ଅନ୍ୟ ଉପାୟରେ ଗଙ୍ଗାଧରଙ୍କୁ ସହାୟତା କରିବା ନିମନ୍ତେ ଚେଷ୍ଟା କରିଥିଲେ । ଲାଇବ୍ରେରୀ ସ୍କୁଲରେ କବିପୁତ୍ର ଭଗବାନ୍ ମେହେରଙ୍କୁ ଶିକ୍ଷକ ରୂପେ ନିଯୁକ୍ତ ଦେଇ ଗଙ୍ଗାଧରଙ୍କ ଆର୍ଥିକ ଅବସ୍ଥାର କିଞ୍ଚିତ୍ ଉନ୍ନତି ଘଟାଇବା ନିମନ୍ତେ ତାଙ୍କର ଇଚ୍ଛା ଥିଲା । ମାତ୍ର ଗଙ୍ଗାଧର ଏ ପ୍ରସ୍ତାବଟିକୁ ମଧ୍ୟ ବିନୟର ସହିତ ଏଡ଼ାଇ ଯାଇଥିଲେ । କବିପୁତ୍ର ସେତେବେଳକୁ ମାଟ୍ରିକ୍ ପାସ୍ କରିନଥିଲେ । ଶିକ୍ଷାଗତ ଯୋଗ୍ୟତା ନଥାଇ କେବଳ ବନ୍ଧୁତ୍ୱର ଖାତିରରେ ଲାଇବ୍ରେରୀ ସ୍କୁଲରେ ଯୋଗଦେଲେ, ଭଗବାନ୍ ନିଜେ ଛାତ୍ରମାନଙ୍କ ଦ୍ୱାରା ସମାଲୋଚିତ ହେବେ ଏବଂ ଏଥି ଅପମାନ ବ୍ରଜମୋହନଙ୍କର ହେବ, ଆଶଙ୍କା କରି କବି ବ୍ରଜମୋହନଙ୍କର ସନିର୍ବନ୍ଧ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ୧/୨

ବ୍ରଜମୋହନଙ୍କର ଆନ୍ତରିକତା ତାହାଙ୍କୁ ଗଙ୍ଗାଧରଙ୍କ ଖୁବ୍ ନିକଟକୁ ନେଇଯାଇଥିଲା । ନିଜ ପାରିବାରିକ ଜୀବନର ସମସ୍ତ ଅଭାବ / ଅସୁବିଧା କବି ବ୍ରଜମୋହନଙ୍କ ନିକଟରେ ପ୍ରକାଶ କରୁଥିଲେ । ଗଙ୍ଗାଧର ବ୍ରଜମୋହନଙ୍କୁ 'ଜୀବନର ଚତୁର୍ଥ ସମୟରେ ପାଇ' 'ବିଗତକାଳର ଅଭାବ

---

※ "× × × ମୋର ହୃଦୟରୁ ଦାରିଦ୍ର୍ୟ ଦୂର ହୋଇଅଛି । ଆପଣଙ୍କ ଘରଟି ମୋର ନିଜର ଘର ବୋଲି ଜ୍ଞାନ କରୁଅଛି । × × × ମୋର ଲାଇବ୍ରେରୀର ଧନ ମୋର ନିଜର ବା ମୋର ପରିବାରବର୍ଗଙ୍କ ଖର୍ଚ୍ଚରେ ବ୍ୟୟିତ ହେବନାହିଁ । × × × ସେ ଧନ କେବଳ ମୋର ସାହିତ୍ୟିକ ଖର୍ଚ୍ଚରେ ଲଗାଇବି । ମୁଁ ନିଜେ ଯାହା ଅର୍ଜନ କରିବି ; ତାହା ମୋର ଓ ପରିବାରଙ୍କ ଭରଣପୋଷଣରେ ଲଗାଇବି । ସାହିତ୍ୟିକ ବ୍ୟୟ ନିମନ୍ତେ ମୋର ଆଉ କିଛି ଅଭାବ ନାହିଁ ।" [ ଗଙ୍ଗାଧର ପତ୍ରାବଳୀ — ପୃ. ୩୨ ]

୧ । "ଆପଣଙ୍କ ସ୍କୁଲରେ ଇଂରାଜୀ ଶିକ୍ଷା ଦେବାର ଯୋଗ୍ୟ ନୁହେଁ ବୋଲି ଭଗବାନ୍‌କୁ ପଠାଇ ନପାରି ଦୁଃଖିତ ହେଉଅଛି । × × × ଆପଣଙ୍କ ସ୍କୁଲରେ ଜଣେ ସାର୍ଟିଫିକେଟ୍ ପ୍ରାପ୍ତ ବ୍ୟକ୍ତି ରହିଲେ, ବାଳକମାନେ ଉତ୍ସାହର ସହିତ ଭରତି ହେବେ—" [ ଗଙ୍ଗାଧର ପତ୍ରାବଳୀ — ପୃ. ୨୧୬ ]

୨ । "ଭଗବାନ୍ ଲାଇବ୍ରେରୀ ନ ଯିବାରୁ ଆପଣ ମୋ ପ୍ରତି ଅସନ୍ତୁଷ୍ଟ ହୋଇନାହାନ୍ତି ତ ? × × × ଭଗବାନ୍ ଏଣ୍ଟ୍ରାନ୍‌ସ ପାସ୍ କରିନଥିବାରୁ କର୍ତ୍ତୃପକ୍ଷଙ୍କ ଦ୍ୱାରା ଅପମାନ ପାଇବାର ବଡ଼ ଆଶଙ୍କା ହେବାରୁ ତାକୁ ପଠାଇବାରେ ଦ୍ୱିଧା ହେଲା । ଛାତ୍ରମାନେ ମଧ୍ୟ ସନ୍ଦେହ କରି ଅନାଗ୍ରହ କଲେ, ସ୍କୁଲର ଅବନତି ହେବ ବୋଲି ଭାବିଲି । ଆପଣଙ୍କ ସ୍ନେହ ଛାଡ଼ିବା ମୋ' ପକ୍ଷରେ ଉଚିତ ନୁହେଁ ତଥାପି ସ୍କୁଲର ଉନ୍ନତିରେ ବାଧା ହେବ ଭାବି ଯେପରି କରିଅଛି । ଯଦି ମୋର ଭ୍ରମ ଥାଏ, ଆପଣ ତାହା ସଂଶୋଧନ କରିପାରନ୍ତି ।"
[ ଗଙ୍ଗାଧର ପତ୍ରାବଳୀ — ପୃ. ୨୧୬ ]

ପୂରଣରେ ବ୍ୟସ୍ତ' ହୋଇପଡ଼ିଥିଲେ । ନିଜକୁ ବ୍ରଜମୋହନଙ୍କ ନିକଟରେ ସମ୍ପୂର୍ଣ୍ଣ ରୂପେ ଉନ୍ମୋଚିତ କରି ଗଙ୍ଗାଧର ତାଙ୍କୁ ଜଣାଇ ଦେଇଥିଲେ, "ମୋର ପିତାମାତାଙ୍କ ଅବସ୍ଥା ଅତି ଶୋଚନୀୟ ଥିଲା । ସେମାନଙ୍କର ଏକମାତ୍ର ପୁତ୍ର ମୁଁ ସେମାନଙ୍କର ଅନିଚ୍ଛା ସତ୍ତ୍ୱେ ବରପାଲି ଜମିଦାରଙ୍କ ତତ୍କାଳୀନ ମୁକ୍ତ୍ୟାରଙ୍କ ଆଗ୍ରହରେ ( ବଳାତ୍କାରରେ କହିଲେ ଅଯୁକ୍ତ ହେବ ନାହିଁ ) ପ୍ରଥମରେ ୫ ୨୯ ବେତନରେ କାର୍ଯ୍ୟ କଲି । ବାରମ୍ବାର କାର୍ଯ୍ୟ ତ୍ୟାଗରେ ପ୍ରୟାସୀ ହୋଇ ଜମିଦାରଙ୍କ ହାତରୁ ମୁକ୍ତ ହୋଇ ନପାରି ରହିଗଲି । ଘରଛାଡ଼ି ନପାରିବାରୁ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହେଲି । ସେହି କାରଣରୁ ପୁତ୍ରଟିକୁ ମଧ୍ୟ ମୂର୍ଖ କଲି । ଏତେବେଳକୁ ସଂସାର ପ୍ରତି ମୋର ଅନାସକ୍ତି ଜାତ ହୋଇଅଛି । ଶେଷ ସମୟରେ ଆପଣଙ୍କୁ ପାଇ କିଛି ଲେଖି ପାରିଲେ ସାର୍ଥଜୀବନ ହେବ ବୋଲି ଦୃଢ଼ମନା ହୋଇଅଛି ।" [ ଗଙ୍ଗାଧର ପତ୍ରାବଳୀ ପୃ. ୨୮ ] 'ବନ୍ଧୁ ନିକଟରେ ମନକଥା ସବୁ ପ୍ରକାଶ କଲେ, ବହୁ ପରିମାଣରେ ଦୁଃଖର ଲାଘବ ହୋଇଥାଏ' ବୋଲି ଗଙ୍ଗାଧରଙ୍କର ବିଶ୍ୱାସ ଥିଲା । ତେଣୁ ସେ ବାରମ୍ବାର ବ୍ରଜମୋହନଙ୍କ ନିକଟରେ ନିଜର / ନିଜ ପରିବାରର ସମସ୍ତ ସମ୍ବାଦ ପ୍ରକାଶ କରୁଥିଲେ । ବ୍ରଜମୋହନ ଗଙ୍ଗାଧରଙ୍କ ପ୍ରତି ଆକୃଷ୍ଟ ହେବାର କାରଣ ସ୍ୱରୂପ ତାଙ୍କୁ ଲେଖିଥିଲେ, "ମୁଁ ସମ୍ବଲପୁର ଜନନୀର ସନ୍ତାନ । ଆପଣ ତାର ବରପୁତ୍ର । ଏଣୁ ଆପଣଙ୍କ ପ୍ରତି ମୁଁ ସ୍ୱଭାବତଃ ଆକୃଷ୍ଟ ହୋଇଅଛି ।" [ ଗଙ୍ଗାଧର ପତ୍ରାବଳୀ ପୃ. ୩୫ ] ବାରମ୍ବାର ନିଜ ଦୁଃଖ ଦୁର୍ଦ୍ଦଶାର ସମ୍ବାଦ ବ୍ରଜମୋହନ ବାବୁଙ୍କଠାକୁ ଲେଖି ଗଙ୍ଗାଧର ତାଙ୍କୁ ବିଚଳିତ କରିବାକୁ ଚାହୁଁ ନଥିଲେ । ଏହାଦ୍ୱାରା ତାଙ୍କର ଅଧ୍ୟୟନରେ ଏକାଗ୍ରତା ନଷ୍ଟ ହେବ ବୋଲି ତାଙ୍କର ଆଶଙ୍କା ହେଉଥିଲା । ମାତ୍ର ଗଙ୍ଗାଧରଙ୍କ ଠାରୁ ପତ୍ର ପାଇବାର ଦୁଇଚାରିଦିନ ମାତ୍ର ବିଳମ୍ବ ହୋଇଯାଉଥିଲେ, ବ୍ରଜ ମୋହନ ଉଦ୍‌ବିଗ୍ନ ହୋଇପଡ଼ି ବାରମ୍ବାର ଏଥି ନିମନ୍ତେ କବିଙ୍କୁ ଅନୁଯୋଗ କରୁଥିଲେ । ପ୍ରିୟ-ଜନର ସମସ୍ତ କୃତିତ୍ୱକୁ ଗଙ୍ଗାଧର ନିଜର ବୋଲି ମନେକରି ଅଶେଷ ଆନନ୍ଦ ଲାଭ କରୁଥିଲେ । ଏହି ସମ୍ବାଦ ବ୍ରଜମୋହନଙ୍କୁ ଜଣାଇଦେଇ କବି ଲେଖିଥିଲେ, "ଆପଣଙ୍କ ସହିତ ପ୍ରଥମ ପରିଚୟ ( ପତ୍ର ଆଦାନ ପ୍ରଦାନ ) ଦିନରୁ ଏଠାର ପ୍ରଧାନ ପ୍ରଧାନ ଲୋକଙ୍କ ମୁଖରୁ ଆପଣଙ୍କ ପ୍ରଶଂସା ବ୍ୟତୀତ କେବେ ନିନ୍ଦା ଶୁଣି ନାହିଁ । ସମସ୍ତେ ଆପଣଙ୍କୁ 'ସମ୍ବଲପୁରର ଆଶା କିଶୋର ପାଦପ' ଜ୍ଞାନ କରୁଅଛନ୍ତି । କୋ ସମ୍ବଲପୁର କାହିଁକି, ଉତ୍କଳର କେହି ସୁଦ୍ଧା ଆପଣଙ୍କୁ ହୀନ ଦୃଷ୍ଟିରେ ଦେଖିବେ ନାହିଁ । × × × ସ୍ୱାସ୍ଥ୍ୟ ସମ୍ବାଦ ଶୀଘ୍ର ଦେବେ" [ ଗଙ୍ଗାଧର ପତ୍ରାବଳୀ ପୃ. ୫୦ ] ଗଙ୍ଗାଧର ବ୍ରଜମୋହନଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ଅଧ୍ୟୟନ ସମ୍ପର୍କରେ ଯେଉଁଭଳି ଉଦ୍‌ବିଗ୍ନ ଥିଲେ, ବ୍ରଜମୋହନ ମଧ୍ୟ ଗଙ୍ଗାଧରଙ୍କ ନିମନ୍ତେ ତତୋଧିକ ଚିନ୍ତିତ ଥିଲେ । କବିଙ୍କ ପାରିବାରିକ ଜୀବନର ବିଶୃଙ୍ଖଳା ବ୍ରଜମୋହନଙ୍କୁ କିଭଳି ଦୁଶ୍ଚିନ୍ତାଗ୍ରସ୍ତ କରୁଥିଲା, ତାହାର ପରିଚୟ ନିମ୍ନ ପତ୍ରରୁ ମିଳିଥାଏ । "ଆପଣଙ୍କ ବରପାଲିର ଘଟଣା ମୋତେ ଏକାବେଳକେ ଦୁଃଖାଭିଭୂତ କରିଅଛି । ମୋର ସତତ ବାଞ୍ଛା ଯେ ଶାନ୍ତିଦେବୀ ଆପଣଙ୍କ ଘର ସର୍ବଦା ଥାଉ ମୋର ତଥା ସମ୍ବଲପୁର ସଙ୍ଗେ ସଙ୍ଗେ ସମଗ୍ର ଉତ୍କଳର ହର୍ଷବର୍ଦ୍ଧନ କାରିଣୀ ହୁଅନ୍ତୁ ।" [ ଗଙ୍ଗାଧର ପତ୍ରାବଳୀ ପୃ. ୮୫ ] ଗଙ୍ଗାଧର ବ୍ରଜମୋହନଙ୍କୁ ନିଜର 'ସାରସ୍ୱତ ସେବାର ସହାୟ ଦାତା' ତଥା 'ସଂସାରର ଶ୍ରେଷ୍ଠ ମିତ୍ର ରୂପେ' ଗ୍ରହଣ କରି ନେଇଥିଲେ । ବ୍ରଜମୋହନଙ୍କ ମାନସିକ ଅଶାନ୍ତି କବିଙ୍କୁ କମ୍ ଚିନ୍ତାନ୍ୱିତ କରୁ ନଥିଲା । "କୋମଳ ପବିତ୍ର ହୃଦୟ ଅଶାନ୍ତି ଲଭିବାର ଉର୍ବର କ୍ଷେତ୍ର । ଆପଣ ମୋର ହୃଦୟର ପ୍ରଧାନ ଧନ ରୂପେ ଆବିର୍ଭୂତ ହୋଇ ଅଛନ୍ତି । ସେହି ଅମୂଲ୍ୟ ଧନର ଅପଚୟ ଆଶଙ୍କା ମୋର ଜୀବନକୁ କାନ୍ଦଶୀଳ କରିଦିଏ ।" [ ଗଙ୍ଗାଧର ପତ୍ରାବଳୀ ପୃ. ୧୦୦ ]

୧୯୧୪ ମସିହାରେ ବ୍ରଜ ମୋହନଙ୍କର ପୁତ୍ରବିୟୋଗ ହୋଇଥିଲା । ଏହା ବୋଧହୁଏ ବ୍ରଜମୋହନଙ୍କ ଜୀବନର ପ୍ରଥମ ଗୁରୁତର ଶୋକ । ତେଣୁ ଏଥିରେ ସେ ଭର୍ଙ୍ଗି ପଡ଼ିବା ସ୍ୱାଭାବିକ । ଭୁକ୍ତଭୋଗୀ ହୋଇଥିବାରୁ ଗଙ୍ଗାଧର ବ୍ରଜମୋହନଙ୍କ ମାନସିକ ଅବସ୍ଥା ସମ୍ପର୍କରେ ଉଦ୍‌ବିଗ୍ନ ହୋଇ ଉଠିଲେ । ଗଙ୍ଗାଧର ଅନୁଭବ କରିଥିଲେ ଯେ 'ସଂସାରରେ ଶାନ୍ତି ନାହିଁ ଅଥଚ ଅନେକ ଦୁଃଖ ଅଛି" । ପୁତ୍ରଶୋକ ତହିଁର ପ୍ରଧାନତମ ଅଟେ ।' ଆହୁରି ମଧ୍ୟ 'ହୃଦୟ ପାଷାଣ ଖୋଦିତ ଦୁଃଖରେଖାକୁ କାଳସ୍ରୋତ ମଳିନ କରେ, ମାତ୍ର ଲୁପ୍ତ କରିପାରେ ନାହିଁ । ପୁତ୍ରଶୋକ ଜନିତ ଦୁଃଖ ରେଖା ଲୋପହେବାର ବାଞ୍ଛନୀୟ ମଧ୍ୟ ନୁହେଁ ।' ପତ୍ରର ଆଦାନ ପ୍ରଦାନ ଦ୍ୱାରା ବ୍ରଜମୋହନଙ୍କ ମନକୁ ପରିବର୍ତ୍ତିତ କରିବା ନିମନ୍ତେ ଆଶାପ୍ରୀ ହୋଇ କବି ଲେଖିଥିଲେ, "ଆପଣଙ୍କୁ ସପ୍ରେମ ମୋର ଅନୁରୋଧ ଯେ ନିଜର ହୃଦୟ ଭାବ ଉଲ୍ଲେଖ କରି ମୋତାକୁ ଖଣ୍ଡିଏ ପତ୍ର ଲେଖିବା ହେବେ । ତହିଁର ଉତ୍ତର ସ୍ୱରୂପ ପତ୍ର ମୁଁ ପୁନଶ୍ଚ ଲେଖିବି—" ନିଜର ପାରିବାରିକ ଜୀବନର ନାନା ସମସ୍ୟା, ବ୍ୟକ୍ତିଗତ ଜୀବନର ଅଶାନ୍ତ ଜୀବନଚିତ୍ରକୁ ମ୍ରିୟମାଣ କରିଦେଇଥିଲା । ୧୯୧୫ ମସିହାରେ ଏହାର ଉଲ୍ଲେଖ କରି ସେ ବ୍ରଜମୋହନଙ୍କୁ ଏକଦୀର୍ଘ ପତ୍ର ଲେଖିଥିଲେ । ଅନ୍ୟାନ୍ୟ ବିଷୟରେ ଏଥିରେ ଉଲ୍ଲେଖ ଥିଲା, "ଆପଣ ମୋତେ ଦୃଢ଼ ସ୍ନେହରେ ବାନ୍ଧି ପକାଇ ରଖି ଅଛନ୍ତି । ମୋ ଜୀବନର ଶେଷ ପର୍ଯ୍ୟନ୍ତ ତାହା ଅକ୍ଷୁର୍ଣ୍ଣ ରଖିବାକୁ ଅଭିଳାଷୀ ଅଛନ୍ତି । ଯଦିଓ ସେହି ବନ୍ଧନ ମୋର ଜୀବନର ସୁଖକର ଏବଂ ଭାଗ୍ୟର ପରିଚାୟକ, ତାହା ବିଧାତାଙ୍କର ଇଚ୍ଛାର ଅନୁକୂଳ କି ନା କିଏ କହିପାରେ ? ଆପଣଙ୍କର ଦର୍ଶନ ପାଇପାରିଲେ, ଅନେକ କଥା କହନ୍ତି, ଅନେକ ପରାମର୍ଶ ହିଅନ୍ତି—" [ ଗଙ୍ଗାଧର ପତ୍ରାବଳୀ ପୃ. ୨୦୯ / ୨୧୦ ] ୧୯୧୬ ମସିହାରେ ବ୍ରଜମୋହନଙ୍କ ନିକଟରେ ନିଜକୁ ପୂର୍ଣ୍ଣ ରୂପେ ସମର୍ପଣ କରିଦେଇ କବି ଲେଖିଛନ୍ତି, "ମୁଁ ସମ୍ପୂର୍ଣ୍ଣ ରୂପେ ଆପଣଙ୍କର ଏ କଥା ଦୃଢ଼ ବିଶ୍ୱାସ କରିଥିବେ । ×× ମୋର ସମସ୍ତ ଦୁଃଖ ଆପଣଙ୍କ ଉପରେ ଲଦିଦେବାକୁ ନିଜେ କଷ୍ଟ ବୋଧ କରୁଅଛି ।" [ ଗଙ୍ଗାଧର ପତ୍ରାବଳୀ ପୃ. ୨୨୦/୨୧ ] ଗଙ୍ଗାଧର ବ୍ରଜମୋହନଙ୍କୁ ଦେବତା ଜ୍ଞାନ କରୁଥିଲେ । ବ୍ରଜମୋହନ ମଧ୍ୟ ଗଙ୍ଗାଧରଙ୍କୁ 'ସମ୍ବଲପୁରର ବରପୁତ୍ର' ମନେକରି ଭକ୍ତି / ଶ୍ରଦ୍ଧା କରି ଆସୁଥିଲେ । ତାଙ୍କର ବ୍ୟକ୍ତିଗତ / ପାରିବାରିକ ନିରାପତ୍ତା ନିମନ୍ତେ ବ୍ରଜମୋହନଙ୍କର ଚିନ୍ତାର ଶେଷ ନଥିଲା ।*

ଗଙ୍ଗାଧର ଏବଂ ବ୍ରଜମୋହନଙ୍କର ସମ୍ପର୍କ ୧୯୦୯ ମସିହାରୁ ଆରମ୍ଭ ହୋଇ କବିଙ୍କର ମୃତ୍ୟୁ ପର୍ଯ୍ୟନ୍ତ ବଜାୟ ରହିଥିଲା । ଅବଶ୍ୟ ପତ୍ରାବଳୀରେ ୧୯୨୦ ପରେ କବିଙ୍କ ସହ ବିନିମୟ କରାଯାଇ ଥିବା ଆଉ କୌଣସି ପତ୍ର ସନ୍ନିବିଷ୍ଟ ହୋଇନାହିଁ । ଜରାଗ୍ରସ୍ତ କବି ଏବଂ ସଂସାର ଜଞ୍ଜାଳଗ୍ରସ୍ତ ବ୍ରଜମୋହନ ପୂର୍ବଭଳି ଆଉ ଘନଘନ ପରସ୍ପରର ସମ୍ବାଦ ନେଇପାରୁ ନଥିଲେ । ତେବେ ମାନସିକ ସ୍ତରରେ ଉଭୟେ ଥିଲେ, ଉଭୟଙ୍କର ଅତି ଆପଣାର ।

---

* "ମୁଁ ଗୃହୁଁ ଥିବି କିପରି ଆପଣଙ୍କୁ ନିଜ ପାଖରେ ରଖି ନିଜକୁ କୃତାର୍ଥ ଜ୍ଞାନ କରନ୍ତି । ×× ମୋର ଇଚ୍ଛା, ଆପଣଙ୍କ ଏହି ସମୟରେ ମୁଁ ଯେପରି ନାନା ପ୍ରକାର ସାହାଯ୍ୟ କରିପାରନ୍ତି । ××

ଲୋକେ ତୀର୍ଥାଟନ କରନ୍ତି, ମାତ୍ର ମୁଁ ଆପଙ୍କୁ ତୀର୍ଥ ଜ୍ଞାନ କରେ । ସେହି ତୀର୍ଥରେ ମୋର ନିବାସ ସ୍ଥାପନ କରି କିପରି ନିଜକୁ ପବିତ୍ର ଓ ଚରିତାର୍ଥ କରେନ୍ତ, ଏହି ମାତ୍ର ଅନ୍ତର୍ଗତ ବାସନା—"

[ ଗଙ୍ଗାଧର ପତ୍ରାବଳୀ — ପୃ. ୨୨୧ ]

ବ୍ରଜମୋହନ ବଧି ପ୍ରେରିତ ଭାବେ ଗଙ୍ଗାଧରଙ୍କ ଜୀବନରେ ପ୍ରବେଶ କରିଥିଲେ । ଫଳରେ 'ଗଙ୍ଗାଧର-କାବ୍ୟ କୋଣାର୍କ' ପୂର୍ଣ୍ଣାଙ୍ଗ ହୋଇ ପାରିଥିଲା । ଏଥିରେ ବ୍ରଜମୋହନଙ୍କର ଭୂମିକା 'ଧର୍ମ ପଦ'ର । ତାଙ୍କର ଉତ୍ସାହବନା ମେଢ଼ୋର ପ୍ରତଭା-ମୁକୁଳ ଯେ ଅକାଳରେ ଝାଉଁଳି ପଡ଼ିଥାଆନ୍ତା, ରାଧାନାଥଙ୍କ ମୃତ୍ୟୁପରେ ଯେ କବି ଆଉ କେବେ ଲେଖନୀ ଧାରଣ କରିଥାଆନ୍ତେ, ଏହା ଅନୁମାନସିଦ୍ଧ ମାତ୍ର ନୁହେଁ । ଗଙ୍ଗାଧର-ବ୍ରଜମୋହନଙ୍କ ସମ୍ପର୍କ ମଣିଷ ଗଙ୍ଗାଧରଙ୍କର ଅନ୍ତରଙ୍ଗ ରୂପଟିକୁ ପାଠକମାନଙ୍କ ନିକଟରେ ପ୍ରକଟିତ କରିଥାଏ ।

ଉଦାର ହୃଦୟ, ଅଭିମାନୀ, ସରଳ, ଆତ୍ମମର୍ଯ୍ୟାଦା ବିଶିଷ୍ଟ, ସହାନୁଭୂତି ସମ୍ପନ୍ନ ଏକ ନୂତନ ଗଙ୍ଗାଧରଙ୍କୁ ଆମେ ଅନୁଭବ କରିପାରୁଛୁଁ, ଏହା କେବଳ ବ୍ରଜମୋହନଙ୍କ ଉଦ୍ୟମର ଫଳ ମାତ୍ର । କବି ଜୀନକୃଷ୍ଣ ଲେଖିଥିଲେ –

"କବିତା ବନିତା କବିତା ପିତା,
କହିବା ଲୋକ ତାର ଉପମାତା,
କଲେ ତାକୁ ଭୋଗ ରସିକ ନେତା,
କେତେହେଁ ଅବା ରହଇ ଯୋଗ୍ୟତା,
କୁମତି ଗୁଆଁର
କେବଳ ବଇମାତ୍ର ଭାଇ ତାର—"
[ ରସ କଲ୍ଲୋଳ ]

କବିତା ବନିତାର ପିତା କବି ହେଲେହେଁ କହିବା ଲୋକ ହେଉଛି ତାହାର ଉପମାତା ବା ଧାତ୍ରୀ । ଧାତ୍ରୀ ଯେଉଁଭଳି ଅପରର ସନ୍ତାନକୁ ସ୍ୱସନ୍ତାନ ନିର୍ବିଶେଷରେ ପାଳନ କରେ ସେଥିରୁ ତାହାର ଉଦାରତାର ପ୍ରଶଂସା କରଯିବା କଥା । ଗଙ୍ଗାଧରଙ୍କ ମାନସ-ସନ୍ତାନ ଗୁଡ଼ିକର ବ୍ରଜମୋହନ ହିଁ ଥିଲେ ଏକମାତ୍ର ଧାତ୍ରୀ ଏବଂ ଯଥାର୍ଥରେ ପର-ସନ୍ତାନଗତପ୍ରାଣା ଏକ ନିଃସ୍ୱାର୍ଥପର ଧାତ୍ରୀ । ରାଧାନାଥ ଗଙ୍ଗାଧରଙ୍କ ହୃଦୟରେ କବିତା-ବୀଜରୁ ବୃକ୍ଷ ଉତ୍ପନ୍ନ କରିଥିଲେ । ସେଇ ବୃକ୍ଷଟିକୁ ଉପଯୁକ୍ତ ରକ୍ଷଣା ବେକ୍ଷଣର ସୁଯୋଗଦେଇ ପୁଷ୍ପଗୁଚ୍ଛ-ସମନ୍ୱିତ କରିଥିଲେ ବ୍ରଜମୋହନ ।

ଗଙ୍ଗାଧରଙ୍କ ଦ୍ୱାରା ଆଉ ତିନୋଟି କାର୍ଯ୍ୟ ସମ୍ପାଦନ କରାଇ ନେବା ଦ୍ୱାରା ବ୍ରଜମୋହନ ଏକ ସାରସ୍ୱତ କର୍ତ୍ତବ୍ୟ ସମ୍ପାଦନ କରିଥିଲେ ବୋଲି କୁହାଯାଇପାରେ । ପ୍ରଥମ ହେଉଛି, ବ୍ରଜମୋହନଙ୍କ ବାରମ୍ବାର ଅନୁରୋଧରେ ଗଙ୍ଗାଧର ପ୍ରଥମଥର ପାଇଁ ଫଟୋ ଉଠାଇଥିଲେ । ଦ୍ୱିତୀୟ ହେଉଛି, ଗଙ୍ଗାଧରଙ୍କର ଯେଉଁ ଅସମାପ୍ତ ଆତ୍ମ ଜୀବନୀ ଏବେ ଆମେ ଦେଖିବାକୁ ପାଉଛୁ, ତାହା ମଧ୍ୟ ବ୍ରଜମୋହନଙ୍କ ଅମାୟିକ ଉଦ୍ୟମର ଫଳ । 'ପତ୍ରାବଳୀ'ରେ ସେ ଏ ସମ୍ପର୍କରେ ସ୍ପଷ୍ଟ ଉଲ୍ଲେଖ କରିଅଛି ।★ ତୃତୀୟ କଥା ହେଉଛି, ରାଧାନାଥଙ୍କ ସହ ଗଙ୍ଗାଧରଙ୍କର ଯେଉଁ ପାରିବାରିକ ସମ୍ପର୍କ ରହିଥିଲା, ସେଥିରେ ରାଧାନାଥ ଗଙ୍ଗାଧରଙ୍କ ସମ୍ପର୍କରେ ନିଜର ଉଚ୍ଚ ମତ ଅକୁଣ୍ଠଚିତ୍ତରେ ଘୋଷଣା

---

★ "ମୋର ଦୁଃଖ ଦାରିଦ୍ର୍ୟମୟ ଜୀବନୀ ମଧ୍ୟ ଲେଖିବି । ପ୍ରକାଶ ହେଉଁଥିବ—"
[ ଗଙ୍ଗାଧର ପତ୍ରାବଳୀ — ପୃ. ୧୬୩ ]

କରିଯାଇଥିଲେ । ସେ ସବୁର ଏକ ସଙ୍କଳନ ଯେ କବି-ଗୌରବ ବୃଦ୍ଧିରେ ସହାୟକ ହେବ, ଏହା ବ୍ରଜମୋହନଙ୍କର ଦୃଢ଼ ବିଶ୍ୱାସ ହୋଇଥିବ । ମାତ୍ର ଗଙ୍ଗାଧରଙ୍କର ଭୟ ମଧ୍ୟ ଥିଲା ସେଇଥିପାଇଁ । ବହୁ ଅନୁରୋଧରେ କବି 'ପତ୍ରାବଳୀ'ର ପ୍ରକାଶଯୋଗ୍ୟ ଅଂଶ ଲେଖିଥିଲେ ମଧ୍ୟ 'ପ୍ରକାଶ କରିବାକୁ ବଡ଼ ସଙ୍କୋଚ ବୋଧ' କରିଅଛନ୍ତି ।* ଅବଶ୍ୟ ଏହି ପତ୍ରାବଳୀର କିଛି ଅଂଶ 'କବିଲିପି'ରେ ସଙ୍କଳିତ ହୋଇଛି, ଏବଂ ଗଙ୍ଗାଧରଙ୍କୁ ବୁଝିବା ନିମନ୍ତେ ଏ ଗୁଡ଼ିକର ଭୂମିକା କିଛି କମ୍ ନୁହେଁ ।

### ନନ୍ଦକିଶୋର : ଗଙ୍ଗାଧର

କବିଜୀବନରେ ଯେଉଁ କେତେକ ଜ୍ଞାନୀ-ଗୁଣୀଙ୍କର ସ୍ମୃତିର ସ୍ଥାୟୀ ପଦଚିହ୍ନ ଅଙ୍କିତ, ସେମାନଙ୍କ ମଧ୍ୟରେ ନନ୍ଦକିଶୋର ଅନ୍ୟତମ । ଜଣେ ନିରଳସ ଶିକ୍ଷାବ୍ରତୀ ହିସାବରେ ତତ୍କାଳରେ ନନ୍ଦକିଶୋରଙ୍କର ସମଗ୍ର ଓଡ଼ିଶାରେ ଯେତିକି ଖ୍ୟାତି ଥିଲା, ତତପେକ୍ଷା ଅଧିକ ସେ କବିର କବିତ୍ୱ ନିମନ୍ତେ ପ୍ରସିଦ୍ଧ ହୋଇପାରି ଥିଲେ । ନନ୍ଦକିଶୋର 'ରାଧାନାଥ'ଙ୍କୁ ଗୁରୁରୂପେ ବରଣ କରି ନେଇଥିଲେ ହେଁ କାବ୍ୟ-ରଚନାରେ ମୌଳିକତା ପ୍ରଦର୍ଶନ କରିଅଛନ୍ତି । 'ଶର୍ମିଷ୍ଠା' ଏବଂ 'କୃଷ୍ଣକୁମାରୀ' କାବ୍ୟ ଦୁଇଟିରେ ରାଧାନାଥୀ-ପାଠକ ପଦେ ପଦେ ରାଧାନାଥଙ୍କୁ ଦେଖିବାକୁ ପାଇଥାଆନ୍ତି । ନନ୍ଦକିଶୋର ଏକଥା ସ୍ୱୟଂ ସ୍ୱୀକାର ମଧ୍ୟ କରିଛନ୍ତି । ରାଧାନାଥଙ୍କର ପ୍ରତିଭାକୁ ମାନିନେଇ ନନ୍ଦକିଶୋର ତାଙ୍କ ପାଖକୁ ଲେଖିଥିଲେ, "ମୁଁ ଆପଣଙ୍କୁ ଜାତୀୟ କବି ଓ ଗୁରୁ ଏବଂ ନିଜକୁ ଉପାୟ ପାଠକ ଓ ଶିଷ୍ୟ ଭାବରେ ଦେଖେ" ( ରାଧାନାଥ ଜୀବନୀ—ପୃ. ୩୩୭ ) ନନ୍ଦକିଶୋରଙ୍କର କୃତିତ୍ୱ କେବଳ ରାଧାନାଥଙ୍କର ସୁଯୋଗ୍ୟ ଶିଷ୍ୟ ହିସାବରେ ନୁହେଁ । ତାହାର ଅନ୍ୟ ଗୋଟିଏ ଦିଗ ରହିଛି । ପଲ୍ଲୀ-ମାଳିନୀ ଉତ୍କଳର ପଲ୍ଲୀଜୀବନର ସୁଖ ଦୁଃଖର ଚିତ୍ର ଏ ପର୍ଯ୍ୟନ୍ତ ସାହିତ୍ୟ-ପତ୍ର ଭୁକ୍ତ ନହୋଇ ଅବହେଳିତ ଭାବରେ ପଡ଼ି ରହିଥିଲା । ସାହିତ୍ୟ-କ୍ଷେତ୍ରରେ ଏ ବିରାଟ ଶୂନ୍ୟତାକୁ ପୂର୍ଣ୍ଣ କରିବାକୁ ଆଗେଇ ଆସିଥିଲେ ନନ୍ଦକିଶୋର । 'ପଲ୍ଲୀଚିତ୍ର', 'ନିର୍ଝରିଣୀ' ପ୍ରଭୃତି କାବ୍ୟ ରଚନା କରି ସେ ଉତ୍କଳୀୟ ପଲ୍ଲୀର ଏକ ନୂତନ ଚିତ୍ର ଓଡ଼ିଆ ପାଠକ-ମାନଙ୍କ ନିକଟରେ ଉପସ୍ଥାପିତ କଲେ । ଫଳରେ ସାହିତ୍ୟ-ଦରବାରରେ ନନ୍ଦକିଶୋରଙ୍କର ପ୍ରତିଭା ସ୍ୱୀକୃତ ଲାଭ କଲା ।

ନନ୍ଦକିଶୋରଙ୍କର ଗଙ୍ଗାଧରଙ୍କ ସହ ପରିଚୟ ପତ୍ର ମାଧ୍ୟମରେ । ୧୮୯୩ ମସିହାରେ 'ଇନ୍ଦୁମତୀ' ପ୍ରକାଶିତ ହେବାପରେ 'ଗଙ୍ଗାଧର' ତତ୍କାଳୀନ ଗୁଣୀଜନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ନନ୍ଦକିଶୋରଙ୍କର କାବ୍ୟ-ରସ ପିପାସୁ ମନ ଗଙ୍ଗାଧରଙ୍କର ଯଥାର୍ଥ ପ୍ରତିଭା-ବନ୍ତ ସ୍ୱରୂପଟିକୁ ତାଙ୍କ ନିକଟରେ ଉନ୍ମୋଚିତ କରି ଦେଇଥିଲା । ନନ୍ଦକିଶୋର ତେଣୁ ଗଙ୍ଗାଧରଙ୍କ ବିଷୟରେ ସମ୍ବାଦ ସଂଗ୍ରହ କରିବାକୁ ଲାଗିଲେ ଏବଂ ଉତ୍ସୁକ ହୃଦୟରେ ପ୍ରତିଭାର ନବ-ପ୍ରସୂତ ଦର୍ଶନାକାଙ୍କ୍ଷୀ ହୋଇ ଅପେକ୍ଷା କରିବାକୁ ଲାଗିଲେ । ମାତ୍ର କାହିଁ ? ଆଉ ତ କିଛି ନୂତନ ରଚନା ଆମ୍ଭ ପ୍ରକାଶ କରୁନାହିଁ । ତେବେ ଏତେବଡ଼ ପ୍ରତିଭା କଣ ଅକାଳରେ ମଉଳି ଯିବ ? 'ଦାରିଦ୍ର୍ୟ-କୋଷ'ରେ ଏତେବଡ଼ 'ଗୁଣରାଶି' ନଷ୍ଟ ହୋଇଯିବ !

---

* ଗଙ୍ଗାଧର ପତ୍ରାବଳୀ — ପୃ. ୧୭୩ ।

ଗଙ୍ଗାଧର ଏତେବେଳକୁ ଚରମ ଦୁର୍ଯୋଗର ସମ୍ମୁଖୀନ ହୋଇଛନ୍ତି; ଉଭୟ କବି ଜୀବନରେ ଏବଂ ବ୍ୟକ୍ତି ଜୀବନରେ । 'ଉତ୍କଳ ଲକ୍ଷ୍ମୀ 'ସମ୍ବଲପୁର ହିତୈଷିଣୀ' ଦ୍ୱାରା ମୃଦୁ ସମାଲୋଚିତ ହେବା ଫଳରେ ଅଭିମାନୀ କବି ମନ ନିଜକୁ ସାରସ୍ୱତ-ସେବାରୁ ଦୂରେଇ ନେବାକୁ ଖୋଜିଛି । ଇତି ମଧ୍ୟରେ ପୁଣି ଦୁର୍ଯୋଗ । କବି ପତ୍ନୀ-ହରା ହୋଇଛନ୍ତି । ତେଣୁ ଦୀର୍ଘ ଆଠ / ନଅ ବର୍ଷ କାଳ 'କବି ଗଙ୍ଗାଧର'ଙ୍କ ଯୋଗ୍ୟ କୌଣସି ରଚନା ଆମ୍ଭ ପ୍ରକାଶ କରିପାରି ନାହିଁ ।

କବିଙ୍କର ଦୀର୍ଘ ନୀରବତା ନନ୍ଦକିଶୋରଙ୍କୁ ଶଙ୍କାକୁଳ କରିପକାଇଛି । ସେ ଆଜି ନୀରବତା ଅବଲମ୍ବନ ନକରି 'ପ୍ରଜାବନ୍ଧୁ' ପତ୍ରିକାରେ ଏକ ଦୀର୍ଘ କବି ପ୍ରଶସ୍ତି ପ୍ରକାଶ କରିଛନ୍ତି । 'ଇନ୍ଦୁମତୀ'ର ପ୍ରାକ୍‌ପୀଠିକା ରୂପେ ଏହି ପ୍ରଶସ୍ତିଟି ସଂଯୋଜିତ । ☆

---

☆ ଆହେ ଭ୍ରାତଃ, ତୁମ୍ଭଙ୍କୁ ମୁଁ କେବେ ଦେଖିନାହିଁ
ସେଥିକି କଥା ମନେ ମୋର ପଡ଼ଇ କପାହିଁ ?
ଅନ୍ଧ କି ନ ଚନ୍ଧ ମୋତେ ତୁମ୍ଭେ ଜାଣେ ନାହିଁ,
ତୁମ୍ଭଙ୍କୁ ମଣେ କିନ୍ତୁ ମୁହିଁ ନିଜ ଭାଇ ।
ଲୋଡ଼େ ନାହିଁ ଦେଖିବାକୁ ମୁଁ ତୁମ୍ଭ ମୂରତ,
ଦେଖି କାଳେ ତୁଟିଯିବ ମାୟା ଭବ ପ୍ରତ ।
ପଢ଼ିଅଛୁ, 'ଇନ୍ଦୁମତୀ' କାବ୍ୟ କେତେଥର,
ସେହିଠାରେ ପରିଚୟ ତୁମ୍ଭର ମୋହର ।

× × × ×

ଖଣ୍ଡେ କାବ୍ୟ ଲେଖିଦେଇ ରହିଲ ନିଶ୍ଚିନ୍ତ,
ଝୀଣିକର ନାଶି କର୍ମେ ହେଲା କି ଉଚିତ ?

× × × ×

ଜନ୍ମିଥାନ୍ତ ଯେବେ ସଭ୍ୟ ଉନ୍ନତ ଦେଶରେ,
ବାଜୁଥା'ନ୍ତା ନାମ ତବ ଜଗ ଜଗତରେ ।

× × × ×

ଦରିଦ୍ରତା ନୁହେଁ କବି ପ୍ରତିଭା ନାଶକ,
ଉଗ୍ର ଶିଳା ଭେଳ ଗାଣ୍ଡି ସୁନା ପରୀକ୍ଷକ ।

× × × ×

ଭିକ୍ଷୁକ ସଙ୍ଗତେ ନୃପ ମୁକୁଟ ମଣ୍ଡିତ,
କାଳବଳେ ହେବୁଁ ହବେ ଭସ୍ମ ଅନ୍ତର୍ହିତ ।
କିନ୍ତୁ ତୁମେ ଦାନ କଲ ରହିବ ଜୀବିତ,
ଯେତେ ଦିନ ଥିବ ଭବେ ଓଡ଼ିଆ ସାହିତ୍ୟ ।
ଯେତେ ଛପାଇଲେ ନ ଲୁଚଇ ଅଗ୍ନିସତ୍ତା,
ଲୁଚିଲେ କି ଚର୍ମ କବି ବଳଦେବ ରଥ ?

[ 'ଇନ୍ଦୁମତୀ'ଙ୍କ କାବ୍ୟ ପ୍ରଣେତା ଶ୍ରୀ ଗଙ୍ଗାଧର ମେହେରଙ୍କ ପ୍ରତି ]

ଗଙ୍ଗାଧରଙ୍କୁ ନନ୍ଦକିଶୋର କେଉଁ ଦୃଷ୍ଟିରେ ଦେଖୁଥିଲେ, ଉପରୋକ୍ତ ଉକ୍ତିରୁ ତାହାର ବିସ୍ତୃତ ପରିଚୟ ମିଳିଥାଏ । 'ସମାଜର ଅତ୍ୟାଚାର ବିରୁଦ୍ଧରେ ପଦାଘାତ' କରିବା ନିମନ୍ତେ ତଥା 'ବିଷାଦ'ର କଠୋର ଶୃଙ୍ଖଳ ଫିଙ୍ଗିଦେବା ନିମନ୍ତେ ଗଙ୍ଗାଧରଙ୍କୁ ଯେଉଁ ଦୃପ୍ତ ଭାଷାରେ ଉଦ୍‌ବୋଧନ ଦିଆଯାଇଛି, ତାହା ଯଥାର୍ଥରେ ନନ୍ଦକିଶୋରଙ୍କର ସମ୍ବେଦନଶୀଳତାର ପରିଚାୟକ । କବିଙ୍କ ଜୀବନରେ ଯେତେବେଳେ ରାଧାନାଥଙ୍କ ଛଡ଼ା ଅନ୍ୟଯେଉଁ ବ୍ୟକ୍ତିଙ୍କର ଆବିର୍ଭାବ ଘଟିଥିବା ଆମେ ଦେଖିବାକୁ ପାଉଛୁଁ, ସେ ହେଉଛନ୍ତି କବି ନନ୍ଦକିଶୋର ।

ଏହାପରେ ଉଭୟ କବିଙ୍କର ସାକ୍ଷାତ୍ ହୁଏ ୧୯୧୧ ମସିହାରେ । ଏହି ସମୟରେ ନନ୍ଦକିଶୋର ସମ୍ବଲପୁର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ରୂପେ ଅବସ୍ଥାପିତ ହୁଅନ୍ତି । ନନ୍ଦକିଶୋର'ଙ୍କ ସମ୍ପର୍କରେ 'ପତ୍ରାବଳୀ'ରେ ପ୍ରଥମ ଉଲ୍ଲେଖ ଦେଖିବାକୁ ମିଳୁଛି । ତା ୨୮।୭।୧୧ ଲିଖିତ ପତ୍ରରେ । 'ତିନଦୃଶ୍ୟ' (ଅଯୋଧ୍ୟା-ଦୃଶ୍ୟ'ର ପ୍ରାଚୀନ ନାମ) ତାହାଙ୍କୁ ଦେଖିବା ନିମନ୍ତେ କବି ଦେଇଥିବାର ବ୍ରଜମୋହନଙ୍କୁ ଜଣାଇଛନ୍ତି । ତା ୩।୮।୧୧ ଲିଖିତରେ ପୁନର୍ବାର କବି ଜଣାଇଛନ୍ତି ଯେ, 'ତିନଦୃଶ୍ୟ' ସମ୍ପର୍କରେ ନନ୍ଦକିଶୋରଙ୍କର ଧାରଣା ଖୁବ୍ ଉଚ୍ଚ ଏବଂ ଏହାର ନାମ ବଦଳାଇ ଅଯୋଧ୍ୟା ଦୃଶ୍ୟ' ରଖିବା ଉଚିତ ହେବ ବୋଲି ମଧ୍ୟ ତାଙ୍କର ମତ । ଗଙ୍ଗାଧର ତାଙ୍କର ଏହି ପ୍ରସ୍ତାବଟିକୁ ଗ୍ରହଣ କରିଥିବାର ମଧ୍ୟ ସୂଚାଇଛନ୍ତି।xxx ଏହାପରେ 'ଗଙ୍ଗାଧର'ଙ୍କ ସହ କବିଙ୍କର ଅନ୍ତରଙ୍ଗତା ବୃଦ୍ଧି ପାଇଛି ଏବଂ ଉଭୟେ ଅବସର ସମୟରେ ଏକତ୍ର ଭ୍ରମଣ ଏବଂ ସାହିତ୍ୟ ସମ୍ପର୍କୀୟ ଆଲୋଚନାରେ କାଳ କଟାଇଛନ୍ତି । (ତା ୧୯ । ୮ । ୧୧ ଲିଖିତ ପତ୍ର ଗଙ୍ଗାଧର ପତ୍ରାବଳୀ ) ଏହି ସମୟରେ ନନ୍ଦକିଶୋର ଗଙ୍ଗାଧରଙ୍କର ସାମୂହିକ ସାହିତ୍ୟିକ-କୃତି ଉପରେ ମନ୍ତବ୍ୟ ଦେଇ ତାଙ୍କୁ ଗୋଟିଏ ଦୀର୍ଘ ପତ୍ର ଲେଖିଥିଲେ । ପତ୍ରଟି ଗଦ୍ୟରେ ଗଙ୍ଗାଧର ସାହିତ୍ୟର ଏକ ନିରପେକ୍ଷ ମୂଲ୍ୟାୟନ କହିଲେ ଅତ୍ୟୁକ୍ତି ହେବ ନାହିଁ ।★

---

★ "କବି ଗଙ୍ଗାଧର ଏକା ସମ୍ବଲପୁରର ନାହିଁକି ଉତ୍କଳର ରତ୍ନ ସ୍ୱରୂପ । କିନ୍ତୁ ଉତ୍କଳରେ ରତ୍ନର ଆଦର ହେଲା ନାହିଁ, ଏହା କବିଙ୍କର ତଥା ଉତ୍କଳର ଦୁର୍ଭାଗ୍ୟ ।

ଗଙ୍ଗାଜଳ ଯେପରି ନିମ୍ନସ୍ଥାନକୁ ପବିତ୍ର କରିଦିଏ, ସେହିପରି ଶକ୍ତିଶାଳୀ କବି ଗଙ୍ଗାଧର ଯେ କୌଣସି ବିଷୟରେ ହସ୍ତକ୍ଷେପ କରିଅଛନ୍ତି, ତାହାକୁ ସୁନ୍ଦର କରିପାରିଅଛନ୍ତି । XX

ତାଙ୍କର ରଚନା ଯେପରି ପ୍ରାଞ୍ଜଳ, ସେହିପରି ଅଳଙ୍କୃତ । ଅଧୁନିକ ଭାବ ଓ ସଂସ୍କୃତ ସାହିତ୍ୟ-ସୁଲଭ ଭଙ୍ଗୀର କବିର ମଣିକାଞ୍ଚନ ସଂଯୋଗ ହୋଇଅଛି, ପ୍ରତ୍ୟେକ ପାଠକ ତାହା ହୃଦୟଙ୍ଗମ କରିପାରିବେ । ପ୍ରକୃତ କଥା କହିବାକୁ ଗଲେ, ଗଙ୍ଗାଧରଙ୍କ ଶକ୍ତି କେବଳ ସ୍ଥାନ ବର୍ଣ୍ଣନାଠାରୁ କାହାଣୀର ଘଟଣାର ବର୍ଣ୍ଣନାରେ ନିସର୍ଗ-ସୌନ୍ଦର୍ଯ୍ୟ ବର୍ଣ୍ଣନାରୁ ମାନସ ସୌନ୍ଦର୍ଯ୍ୟ ଚିତ୍ରଣରେ ଅଧିକତର ପରିସ୍ଫୁଟ ହୁଏ । X X X ଉତ୍କଳ ସାହିତ୍ୟରେ ଆଦର୍ଶ ଚରିତ୍ର ଚିତ୍ରଣ ନାହିଁ କହିଲେ ଚଳେ । କବିବର ରାଧାନାଥଙ୍କ ରତ୍ନାବଳୀର ଭଣ୍ଡାର ଗ୍ରନ୍ଥାବଳୀରେ ଯେଉଁ ଅଭାବ ରହିଯାଇଅଛି, ତାହାର ପ୍ରପୂର୍ତ୍ତି କିପରି ହେବ ? X X X ଚିଲିକା, ମହାଯାତ୍ରାରେ ଯେପରି ପ୍ରକୃତ ଚିତ୍ର ପରାକାଷ୍ଠା ପ୍ରଦର୍ଶିତ ହୋଇଅଛି । ସେହିପରି ମାନବ-ଚରିତ୍ର ଚିତ୍ରଣରେ ଉଚ୍ଚ ଆଦର୍ଶ କିଏ ପୂରଣ କରିବ ? କବିଗଙ୍ଗାଧର ଏ ଶକ୍ତିର ସ୍ପଷ୍ଟ ଉନ୍ମେଷ 'କୀଚକ ବଧ'ରେ ପ୍ରଦର୍ଶନ କରିଅଛନ୍ତି । ତାହା ପରିସ୍ଫୁଟ ହେବ କି ?

ଶ୍ରୀ ନନ୍ଦକିଶୋର ବଳ

[ ଗଙ୍ଗାଧର ପତ୍ରାବଳୀ ପୃ. ୭୭/୭୮ ]

xxx 'ଅଯୋଧ୍ୟା ଦୃଶ୍ୟ' ସମ୍ପର୍କରେ ନନ୍ଦକିଶୋର [illegible] ମନ୍ତବ୍ୟ [illegible] । [illegible]

ଉପରୋକ୍ତ ଉଦ୍ଧୃତିରୁ ତିନୋଟି ବିଷୟ ସ୍ପଷ୍ଟ ହୋଇଥାଏ ।

(୧) ଗଙ୍ଗାଧର ହେଉଛନ୍ତି ସୌନ୍ଦର୍ଯ୍ୟର ସ୍ୱର୍ଣ୍ଣ-ମଣି ଖଣ୍ଡେ ।

(୨) ତାହାଙ୍କ ରଚନା ପ୍ରାଚୀନତା ଓ ଆଧୁନିକତାର ଏକ ସେତୁ ସ୍ୱରୂପ । ପ୍ରକୃତି ବର୍ଣ୍ଣନା ତଥା ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ସେ ପୁଣି ଅନନ୍ତରମଣୀୟ ।

(୩) ରାଧାନାଥଙ୍କ ସାହିତ୍ୟରେ ଆଦର୍ଶ ଚରିତ୍ର-ଚିତ୍ରଣର ଯେଉଁ ଯୋଗ ଅଭାବ ରହିଯାଇଛି, ତାହା ଗଙ୍ଗାଧରଙ୍କ ଦ୍ୱାରା ପରିପୂର୍ଣ୍ଣ ହୋଇପାରେ ।

ଏଥିରୁ ଆମେ 'ନନ୍ଦ କିଶୋର' ଗଙ୍ଗାଧରଙ୍କ ସମ୍ପର୍କରେ କି ଧରଣର ମନୋଭାବ ପୋଷଣ କରୁଥିଲେ, ତାହାର ସ୍ପଷ୍ଟ ପରିଚୟ ପାଇଥାଉଁ । ଏହାପରେ ୧୯୧୬ ମସିହାରେ ଗଙ୍ଗାଧରଙ୍କ ସହିତ ବଳଙ୍କର ଗୋଟିଏ ଦିନ ପାଇଁ ସାକ୍ଷାତ୍ ହୋଇଥିବାର 'ପତ୍ରାବଳୀ'ରୁ ଦେଖିବାକୁ ମିଳୁଛି । ତା ୨୬।[illegible]।୧୬ ରିଖରେ କବି ଲେଖିଛନ୍ତି । 'ବଳଙ୍କ ବିଷୟ ଯାହା ପୂର୍ବେ ଆପଣ ଲେଖିଥିଲେ, ମୁଁ ତାହା ଏଠାରେ ଏକ ପ୍ରକାର ଅନୁଭବ କରୁଛି ।' [ ଗଙ୍ଗାଧର ପତ୍ରାବଳୀ ପୃ. ୧୧୦ ] କେଉଁ ବିଷୟରେ ବ୍ରଜମୋହନ ଗଙ୍ଗାଧରଙ୍କୁ ଲେଖିଥିଲେ ଏବଂ ତାଙ୍କୁ ପୁଣି ଗୋପନ ରଖିବାକୁ ଅନୁରୋଧ ଜଣାଇଥିଲେ, ତାହା ଏଠାରେ ସ୍ପଷ୍ଟ ରୂପେ ଜଣାପଡ଼ୁ ନ ଥିଲେ ହେଁ, ବିଷୟଟି ନିତାନ୍ତ ବ୍ୟକ୍ତିଗତ ବୋଲି ଆମର ଧାରଣା ।

ସେ ଯାହାହେଉ, ତତ୍କାଳୀନ ଓଡ଼ିଆ ସାହିତ୍ୟର ଦୁଇ-ଦିକ୍ପାଳଙ୍କ ବନ୍ଧୁତା ସାହିତ୍ୟ ନିମନ୍ତେ ଯେ ଶୁଭଙ୍କର ହୋଇଥିଲା, ଏହା ଆମେ ସ୍ୱୀକାର କରିବାକୁ ବାଧ୍ୟ । ବଳଭଦ୍ର କରିଥିଲେ ଜଣେ ଯଥାର୍ଥ ଅକୃତ୍ରିମ-ହୃଦୟ ସାହିତ୍ୟ ପ୍ରାଣବନ୍ଧୁ ଯେକି ତାଙ୍କ ନିକଟରେ ଏକ ମୂଲ୍ୟବାନ୍ ରତ୍ନ ତୁଲ୍ୟ ଥିଲେ । ଅତି ସାବଧାନତାର ସହିତ ଶ୍ରୀ ବଳ ଏହି ରତ୍ନଟିର ରକ୍ଷଣାବେକ୍ଷଣ କରୁଥିଲେ । ଉତ୍ସାହ ଆଉ ପ୍ରେରଣା ଯୋଗାଉଥିଲେ । ଭାବୁକ ପ୍ରାଣର ନିତ୍ୟସଙ୍ଗୀ ବିଷାଦ ଦୂର କରିବା ନିମନ୍ତେ ଉଦ୍ୟମ କରୁଥିଲେ । ଫଳରେ ଏହି ସମୟରେ ଦୀର୍ଘ ଆଠବର୍ଷର ନିସ୍ତବ୍ଧତା ପୁଣି ଭାଙ୍ଗି ଯାଇଥିଲା । କବିଙ୍କ ଜୀବନରେ ଏଭଳି ଅବସ୍ଥା ପୂର୍ବରୁ ମଧ୍ୟ ଥରେ ଆସି ଥିଲା । ମାତ୍ର ସେ ସମୟରେ କବି ପୂର୍ଣ୍ଣ ନୀରବ ନଥିଲେ । କାବ୍ୟ ନ ହେଲେ ମଧ୍ୟ କ୍ଷୁଦ୍ର କ୍ଷୁଦ୍ର କବିତା ଏବଂ କିଛି କିଛି ଗଦ୍ୟ ସେହି ସମୟ ମଧ୍ୟରେ ସେ ରଚନା କରିଥିଲେ । ମାତ୍ର ୧୯୦୩ ଠାରୁ ୧୯୧୧ ପର୍ଯ୍ୟନ୍ତ 'ମେହେର' ପ୍ରତିଭାର ଅନ୍ଧକାର-ଯୁଗ । ଏହି ସମୟରେ ଶ୍ଳୋକ କବିତାଟିଏ ମଧ୍ୟ କବି ଲେଖନୀରୁ ନିଃସୃତ ହୋଇନାହିଁ । ବ୍ରଜମୋହନ ପଣ୍ଡା ଅବଶ୍ୟ ଏହି ଅନ୍ଧକାର ଦୂର କରିବା ନିମନ୍ତେ ସମବେଦନା ଆଉ ଉତ୍ସାହର ମଶାଲ୍ ହାତରେ ଧରି ପୂର୍ବରୁ କବିଙ୍କ ପାଖରେ ପହଞ୍ଚି ଯାଇଥିଲେ । ତଥାପି ଏ ଦିଗରେ ନନ୍ଦ କିଶୋରଙ୍କର ଯେ କିଛି ଅବଦାନ ନାହିଁ ତାହା କହିହେବ ନାହିଁ । କାରଣ ଗୁରୁ ବ୍ରଜମୋହନ ସାରସ୍ୱତ-ପଥର ନବୀନ-ପଥିକ ମାତ୍ର । କିନ୍ତୁ କବି ନନ୍ଦକିଶୋର ଏ ପଥର ଦୀର୍ଘଦିନର ଯାତ୍ରୀ । ତେଣୁ 'କାବ୍ୟ' ବ୍ୟାପାରରେ ବ୍ରଜମୋହନଙ୍କ ଅପେକ୍ଷା ନନ୍ଦକିଶୋରଙ୍କର ମନ୍ତବ୍ୟ ଯେ ଅଧିକ ମୂଲ୍ୟବାନ୍ ଏଥିରେ ସନ୍ଦେହ ନାହିଁ । ଶ୍ରୀ ବଳଙ୍କ ପ୍ରେରଣାରେ ଗଙ୍ଗାଧର ପୁନର୍ବାର ଅନେକ ଦିନପରେ ସାହିତ୍ୟର ରାଜଦାଣ୍ଡରେ ଆସି ପାଦ ଦେଲେ । ଏହାପରେ ଆରମ୍ଭ ହେଲା ତାଙ୍କର ଜୟ ଯାତ୍ରା । ନନ୍ଦକିଶୋରଙ୍କ ସମ୍ବଲପୁର ରହଣୀ ସମୟରେ ରଚିତ ହୋଇଥିଲା, 'ଅଯୋଧ୍ୟା ଦୃଶ୍ୟ', 'ପ୍ରଣୟାଙ୍କୁର' 'ଇନ୍ଦୁମତୀ'ର ଅନେକ ଅଂଶ

ତଥା 'କବିତା କଲ୍ଲୋଳ' ଆତ୍ମପ୍ରକାଶ କରିଥିଲା । ଏକ ~~ଅଣ୍ଟିଷ୍ଟି~~ ପ୍ରଶସ୍ତିର ପୁନରୁକ୍ତି ଭାବରେ ତେଣୁ ଶ୍ରୀ ବଳଙ୍କର ଉଦ୍ୟମକୁ ଏକ ଯଥାର୍ଥ ସାହିତ୍ୟ ପ୍ରାଣ ବ୍ୟକ୍ତିର ସାରସ୍ୱତ ଉଦ୍ୟମ ରୂପେ ଗ୍ରହଣ କରିନେଲେ ସତ୍ୟର ଅପଳାପ ହେବନାହିଁ ।

ଅନ୍ୟ ପକ୍ଷରେ ଗଙ୍ଗାଧର ଲକ୍ଷ କରିଥିଲେ, ଏକ ଯଥାର୍ଥ ସାହିତ୍ୟ-ଉତ୍ସର୍ଗୀକୃତ-ପ୍ରାଣ ବ୍ୟକ୍ତିର ସମବେଦନା, ଦୁଃଖ / ତାପବ୍ୟଥିତ ଚିତ୍ତରେ ଶାନ୍ତିର ପ୍ରଲେପ ବୋଳି ଦେବାରେ ଯାହାଙ୍କର ତୁଳନା ନଥିଲା । ମେହେର ସାହିତ୍ୟ ସୌଧ ନିର୍ମାଣରେ ନନ୍ଦକିଶୋରଙ୍କର ଭୂମିକାକୁ ଅସ୍ୱୀକାର କରାଯାଇ ପାରିବ କି ?

## ଫକୀର ମୋହନ : ଗଙ୍ଗାଧର

ଡଃ ଦେବୀ ପ୍ରସନ୍ନ ପଟ୍ଟନାୟକ 'କବିଲିପି'ରେ ଲେଖିଛନ୍ତି । "ଲେଖକଙ୍କ ସ୍ୱଳ୍ପତା ହେତୁ ହେଉ କିମ୍ବା ନବ-ଯୁଗ ସାହିତ୍ୟିକମାନଙ୍କ ମଧ୍ୟରେ ସୌଭ୍ରାତୃତ୍ୱ ହେତୁ ହେଉ, ସମସାମୟିକ ଲେଖକମାନଙ୍କ ମଧ୍ୟରେ ସହଯୋଗିତା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ—" ତତ୍କାଳରେ ଉତ୍କଳର ସାହିତ୍ୟିକ-ଗୋଷ୍ଠୀ ନିଜକୁ ଗୋଟିଏ ପରିବାରର ମନେ କରୁଥିଲେ । ଏହାର କାରଣ ମଧ୍ୟ ଥିଲା । ହାତଗଣତି ପତ୍ର-ପତ୍ରିକାରେ ସୀମିତ ଲେଖକଙ୍କର ରଚନାମାନ ପ୍ରକାଶିତ ହେଉଥିଲା । ନବୀନ ଲେଖକଟିଏ ଆତ୍ମପ୍ରକାଶ କଲେ, ତାହା ବିଷୟରେ ସମସ୍ତଙ୍କର କଳ୍ପନା ସୋଚାର ହୋଇ ଉଠୁଥିଲା । ଯଦି ତାହାଠାରେ ପ୍ରତିଭାର ସାମାନ୍ୟତମ ଲକ୍ଷଣ ମାତ୍ର ଦେଖିବାକୁ ମିଳୁଥିଲା, ତେବେ ତ ଅଉ କଥା ନଥିଲା । ପ୍ରାଚୀନମାନେ ତାହାକୁ ଅନ୍ତର ଖୋଲି ସାହିତ୍ୟର ତୋରଣଦ୍ୱାରରେ ଦଣ୍ଡାୟମାନ ହୋଇ ଆସରମଧ୍ୟକୁ ପ୍ରବେଶ କରିବା ନିମନ୍ତେ ସାଦର-ସ୍ୱାଗତ ଜଣାଉ ଥିଲେ । ଗଙ୍ଗାଧରଙ୍କ ଜୀବନରେ ବାରମ୍ବାର ଏହି ସୌଭାଗ୍ୟ ଅଯାଚିତ ଭାବରେ ଜୁଟିଥିଲା । ରାଧାନାଥ, ନନ୍ଦକିଶୋରଙ୍କ ଭଳି ଫକୀରମୋହନଙ୍କ ପୃଷ୍ଠପୋଷକତା ଲାଭକରି କବି ଧନ୍ୟ ହୋଇଥିଲେ । ଫକୀରମୋହନ 'ମେହେର'ଙ୍କ ସମ୍ପର୍କରେ 'ଉତ୍କଳ ଭ୍ରମଣ'ରେ ପ୍ରଶଂସା ସୂଚକ ମନ୍ତବ୍ୟ କରିଥିଲେ ।* "ଉତ୍କଳ ଭ୍ରମଣ"ର ପ୍ରଥମ ସଂସ୍କରଣ ୧୮୯୨ ମସିହାରେ ପ୍ରକାଶିତ ହୁଏ । ଏତେବେଳକୁ ଗଙ୍ଗାଧରଙ୍କର 'ରସରତ୍ନାକର' ଏବଂ ସମ୍ଭବତଃ 'ଅହଲ୍ୟାସ୍ତବ'ର(୧୮୯୨ର ଶେଷ ଭାଗରେ ରଚିତ ) ରଚନା ସମାପ୍ତ ହୋଇସାରି ଥିଲେହେଁ, କୌଣସିଟି ପ୍ରକାଶିତ ନୁହେଁ । 'ଇନ୍ଦୁମତୀ'ର ରଚନା ୧୮୯୩ ରେ ହୋଇଛି ଏବଂ ଏହା ପ୍ରକାଶିତ ହୋଇଛି ୧୮୯୪ ମସିହା ଫେବୃୟାରୀ / ଏପ୍ରିଲ୍ ମାସର 'ଉତ୍କଳ ପ୍ରଭା'ରେ । ତେବେ କେଉଁ ଢେର୍ ଢେର୍ କବିତା ଫକୀରମୋହନ ପଢ଼ି ଏଭଳି ମନ୍ତବ୍ୟ କରିଗଲେ ? ~~ଅନୁମାନ କରାଯାଉଛି ଯେ, ଗଙ୍ଗାଧରଙ୍କ ସମ୍ପର୍କରେ ଏଭଳି ମନ୍ତବ୍ୟ ଫକୀରମୋହନ ପରେ କୌଣସି ସମୟରେ କରିଥିବେ ଏବଂ ତାହା 'ଉତ୍କଳ ଭ୍ରମଣ'ର ପରବର୍ତ୍ତୀ କୌଣସି ସଂସ୍କରଣରେ ଯୋଗ ହୋଇଥିବ~~ । ଫକୀରମୋହନ ୧୯୧୮ ମସିହା ପର୍ଯ୍ୟନ୍ତ ଜୀବିତ ଥିଲେ ଏବଂ ସେହି ସମୟ ମଧ୍ୟରେ ଗଙ୍ଗାଧରଙ୍କର ତାବନ୍ତୀୟ କାବ୍ୟ କବିତା ପ୍ରକାଶିତ ହୋଇ ସାରିଥିଲା । ଫକୀରମୋହନ ମେହେର

---

* "ବରପାଲି ଦେଶେ ଅଛି ଗଙ୍ଗାଧର ମେହେର, ତାହାର କବିତା ପଢ଼ି ଲାଗି ଢେର୍ ଢେର୍ । କବିତାଗୁଡ଼ିକ ପଢ଼ି ମନ ମାନିଯାଏ, ଅଲ୍ପେ କେଁ ଲେଖିବ କିଛି ବାଟ ଗୁହି ଆଏ । [ ଉତ୍କଳ ଭ୍ରମଣ ]

ସାହିତ୍ୟ ସୃଷ୍ଟି-ସୌନ୍ଦର୍ଯ୍ୟ-ମୁଗ୍ଧ ରସ-ପିପାସା ପରିତୃପ୍ତ ଜଣେ ବିଦଗ୍ଧ ପାଠକଥିଲେ, ଏହା ନିଃସନ୍ଦେହରେ କୁହାଯାଇପାରେ । 'ଉତ୍କଳ ଲକ୍ଷ୍ମୀ'ର ପ୍ରକାଶନ ୧୮୯୪ ମସିହାରେ ହୋଇଥିଲା ଏବଂ ଫକୀରମୋହନ ପ୍ରତିଭାମୁଗ୍ଧ ଗଙ୍ଗାଧର ସେଥିରୁ ଖଣ୍ଡିଏ ଖଣ୍ଡିଏ ବ୍ୟାସକବିଙ୍କ ମତାମତ ଜାଣିବା କାମନାରେ ତାହାଙ୍କ ନିକଟକୁ ପ୍ରେରଣ କରିଥିଲେ । ଫକୀରମୋହନ 'ଉତ୍କଳ ଲକ୍ଷ୍ମୀ' ପାଠକରି ସେଥିରେ ସ୍ୱକୃତ 'ଉତ୍କଳ ଭ୍ରମଣଂ'ର ଅନୁସରଣ ଦେଖି ପରମ ପରିତୃପ୍ତ ହୋଇଥିବେ । ଗଙ୍ଗାଧରଙ୍କୁ 'ଉତ୍କଳ ଲକ୍ଷ୍ମୀ'ର ଉଚ୍ଚକାବ୍ୟ ମୂଲ୍ୟର ସମ୍ପର୍କରେ ସେ ଯେଉଁ ପତ୍ର ଲେଖିଥିଲେ ତାହା ନିମ୍ନରେ ଉଦ୍ଧାର କରାଗଲା ।☆

ପରେ ଏହି ପତ୍ରୀୟ ଆଳାପ ସାକ୍ଷାତ୍ ପରିଚୟରେ ପରିଣତ ହୋଇଥିଲେ ହେଁ ତାହା ବନ୍ଧୁତ୍ୱର ପର୍ଯ୍ୟାୟ ଭୁକ୍ତ ହୋଇ ରହିଥିଲା । ଏହି ସୀମା ଅତିକ୍ରମକରି ଉଭୟଙ୍କ କବି ଅନ୍ତରଙ୍ଗତାର ସୀମା ଛୁଇଁ କରିନାହାନ୍ତି । ତଥାପି ପରସ୍ପରର ସାହିତ୍ୟ କର୍ମପ୍ରତି ଉଭୟଙ୍କର ଶ୍ରଦ୍ଧାଥିଲା । ସମ୍ବଲପୁର ଆସିଲେ ଫକୀରମୋହନ ଗଙ୍ଗାଧରଙ୍କ ସହ ଅବଶ୍ୟ ମିଳିତ ହୋଇ ସାହିତ୍ୟ ସମ୍ପର୍କୀୟ ଆଲୋଚନାରେ ନିମଗ୍ନ ହେଉଥିଲେ । 'ଉତ୍କଳ ସମ୍ମିଳନୀ'ରେ ଯୋଗଦେବାକୁ ଆସି କବି ଟୋଲର ବାଲେଶ୍ୱରରେ ଫକୀରମୋହନଙ୍କର ସାଦର ଆତିଥ୍ୟ ସ୍ୱୀକାର କରିଥିଲେ ଏବଂ ଏହି ଘଟଣି ଉଭୟଙ୍କ ପକ୍ଷରେ ପ୍ରୀତିପଦ ହୋଇଥିଲା ।

୧୯୧୨ ମସିହାରେ ମଧୁସୂଦନଙ୍କର ମୃତ୍ୟୁ ହେଲା । ରାଧାନାଥଙ୍କୁ ବିଦାୟଦେଇ ବଂଥିବା ଚିନ୍ତ କବି ଏହି ନୂତନ ଶୋକରେ ମୂହ୍ୟମାନ ହୋଇ ପଡ଼ିଥିଲେ । ବ୍ରଜମୋହନଙ୍କପାଖକୁ ଲେଖିଥିବା ପତ୍ରରୁ ଏହା ଜଣା ଯାଇଥାଏ ।* ଏହି ପତ୍ରରେ ଫକୀରମୋହନଙ୍କ ବାର୍ଦ୍ଧକ୍ୟ କବିଙ୍କର ଚିନ୍ତାର କାରଣ ହୋଇଥିବାର ଦେଖାଯାଉଛି । ଆଲୋଚ୍ୟ କାଳରେ ଫକୀରମୋହନଙ୍କୁ ପ୍ରାୟ ସତୁରି ବର୍ଷ ବୟସ ହୋଇଥିଲା । କବିଙ୍କର ଆଶଙ୍କା ମାତ୍ର ପାଞ୍ଚବର୍ଷପରେ ସତ୍ୟରେ ପରିଣତ ହୋଇଥିଲା ଏବଂ ସେହି ସମୟରେ କବି "ଫକୀରମୋହନଙ୍କ ମୃତ୍ୟୁଶଯ୍ୟା ନିକଟରେ ଉତ୍କଳ ମାତାର ରୋଦନ" ନାମକ କବିତା ଲେଖି 'ସ୍ୱର୍ଗତ' ଆତ୍ମା ପ୍ରତି ନିଜର ଶ୍ରଦ୍ଧା ନିବେଦନ କରିଥିଲେ । ଏହି କବିତାଟି ଏକ ମୂହ୍ୟମାନ-ଶୋକ ଦଗ୍ଧ ଚିତ୍ତର ଅଶ୍ରୁଳ ଭାବୋଚ୍ଛ୍ୱାସ ।" ତା ନାମ ଲେଖ ମୋର ସର୍ବ ଅଙ୍ଗରେ / ଅକ୍ଷର ଖୋଳ ଉର ବିବିଧରଙ୍ଗରେ × × ×ତା ନାମାବଳୀ ଦିବ୍ୟ ରଙ୍ଗେ ବସନେ / ଲେଖି ଘୋଡ଼ାଇ ଦିଅ ମୋ ଅପସନେ / ସେ ବାସେ ପୋଛ ମୋର ନୟନବାରି / ତହିଁ ବା ହେବ ଶୋକ ଭାର ନିବାରି ରେ, / ତା' ତନୁ ଭସ୍ମ ଆଣି ବୋଳ ମୋ ଅଙ୍ଗେ / ତା' ପ୍ରତିରୂପ ଦିଅ ମୋର ଉତ୍ସଙ୍ଗେ —" ପ୍ରଭୃତି ଭାବଧାରା ବୈଷ୍ଣବ ସାହିତ୍ୟର ହୋଇଥିଲେ ମଧ୍ୟ, ଏହାର ମଧ୍ୟରେ ଗଙ୍ଗାଧରଙ୍କର ଶୋକାକୁଳ-ପ୍ରବନ୍ଧ ମୂର୍ତ୍ତିଟି ଅତି ସ୍ପଷ୍ଟ ଭାବରେ ପ୍ରକଟିତ । ଫକୀରମୋହନଙ୍କ ତନୁଭସ୍ମ ଅଙ୍ଗରେ ବୋଳି ହେବା ନିମନ୍ତେ ପୁତ୍ର-ବଧୂର ଜନନୀ ଅପେକ୍ଷା ସତେଯେପରି ଗଙ୍ଗାଧରଙ୍କର ଆଗ୍ରହ ଅଧିକ !

---

☆ "× × ×ପୁସ୍ତକ ଖଣ୍ଡିକ ଆମୂଳଚୂଳ ପାଠ କରିଅଛୁ । ଏହାର ଭାଷା ନିତାନ୍ତ ବିଶୁଦ୍ଧ, ପ୍ରାଞ୍ଜଳ ଓ ହୃଦୟ ଗ୍ରାହିଣୀ ହୋଇଅଛି ।

"ସମଲଇ କରଲିଗି ହୃଦଦ୍ୱାର ଛୁଡ଼ି ପଡ଼ିଗଲା ତଳେ—"

ଏହିପରି ପ୍ରସ୍ତୋଗଗୁଡ଼ିକ ବାରମ୍ବାର ପାଠ କଲୁ ।" [ ମେହେର କବି—ପୃ. ୧୬ ଶ୍ରୀ ରାଘବ ମିଶ୍ର ]

* "ଏତେବେଳକୁ ଉତ୍କଳର ସାହିତ୍ୟ ନେତୃତ୍ୱ ଖଣ୍ଡନ ହେଲା । ଫକୀରମୋହନ ଅତଶସ୍ତ ବୃଦ୍ଧ । ବାକି ସମସ୍ତେ ନୂତନ ଓ ଯଥେଚ୍ଛା ପଥଗାମୀ । ସାହିତ୍ୟର ଦଶା କ ହେବ ? [ ଗଙ୍ଗାଧର ପତ୍ରାବଳୀ—ପୃ. ୧୧୪ ]

ସେନାପତିଙ୍କ ସଖ୍ୟ କବିଜୀବନର ଏକ ଅମୂଲ୍ୟ ସମ୍ପଦ ନହେଲେ ହେଁ, ଏହାକୁ ନିତାନ୍ତ ମୂଲ୍ୟହୀନ ମଧ୍ୟ କହିହେବ ନାହିଁ । ବିଶେଷକରି ଏକ ଅତି ପ୍ରୟୋଜନୀୟ ମୁହୂର୍ତ୍ତରେ ଫକୀରମୋହନ ନିଜର ସହାୟତାର ହସ୍ତ ଗଙ୍ଗାଧରଙ୍କ ଆଡ଼କୁ ବଢ଼ାଇ ଦେଇଥିଲେ । 'ଉତ୍କଳ ଲକ୍ଷ୍ମୀ'ର ବିରୂପ ସମାଲୋଚନା ଯେତେବେଳେ କବି ମନକୁ ନିତାନ୍ତ ଭାରାକ୍ରାନ୍ତ କରିଛି, ପ୍ରୟୋଜନର ସେହି ମୁହୂର୍ତ୍ତରେ ବ୍ୟାସ କବିଙ୍କର ସେହି କାବ୍ୟ ସମ୍ପର୍କୀୟ ଉଚିତ ମନ୍ତବ୍ୟ ଯେ, କବିମନରୁ ଦୁଃଶ୍ଚିନ୍ତାର ଗୁରୁଭାରକୁ ଅନେକାଂଶ ଲଘୁ କରି ଦେଇଥିବ, ~~ଏହା କ'ଣ କେବଳ ଅନୁମାନର କଥା ?~~ ଏଥିରେ ସନ୍ଦେହ ନାହିଁ ।

୬ । ଏହାଛଡ଼ା ଗଙ୍ଗାଧର ଓଡ଼ିଶାର ତତ୍କାଳୀନ ସମସ୍ତ ଜ୍ଞାନୀ / ଗୁଣୀ କବି / ଲେଖକମାନଙ୍କ ସହିତ ସୁସମ୍ପର୍କ ରଖିଥିଲେ । ଏମାନଙ୍କ ମଧ୍ୟରେ ଥିଲେ, ~~ମଧୁସୂଦନ ରାଓ~~, ଲାଲ ରାମନାରାୟଣ ରାୟ, ରାମନାରାୟଣ ମିଶ୍ର, ~~କୃଷ୍ଣପ୍ରସାଦ ଚୌଧୁରୀ~~, ଚିନ୍ତାମଣି ମହାନ୍ତି, ଚନ୍ଦ୍ରମୋହନ ମହାରଣା, ଦୟାନିଧି ମିଶ୍ର, ବାମଣ୍ଡା ରାଜା ~~ସଚ୍ଚିଦାନନ୍ଦ ତ୍ରିଭୁବନ~~ ପ୍ରଭୃତି । ~~ନୀଳମଣି ବିଦ୍ୟାରତ୍ନ ପୁଣି ଗଙ୍ଗାଧରଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ~~ । ବିଦ୍ୟାରତ୍ନଙ୍କ ପ୍ରରୋଚନାରେ 'ଅର୍ଘ୍ୟଥାଳୀ'ରେ ସନ୍ନିବିଷ୍ଟ ହୋଇଥିବା 'ପଞ୍ଚାୟତ' କବିତାଟି କବି ରଚନା କରିଥିଲେ । 'ଅର୍ଘ୍ୟଥାଳୀ'ର ଭୂମିକାରେ କବି ଏକଥା ସ୍ୱୀକାର କରିଅଛନ୍ତି ।★ ~~ବିଦ୍ୟାରତ୍ନଙ୍କ ପ୍ରଶଂସାରେ କବି 'ଅର୍ଘ୍ୟଥାଳୀ'ରେ 'ବିଦ୍ୟାରତ୍ନଙ୍କ ହିତୈଷିଣୀ' ନାମକ କବିତା ମଧ୍ୟ ଲେଖିଛନ୍ତି, ସେଥିରୁ କବିଙ୍କ ମଧ୍ୟରେ ଥିବା ଅନ୍ତରଙ୍ଗତାର ସୁନ୍ଦର ସହଜରେ ଧରାପଡ଼ି ଯାଇଥାଏ~~ । ସମ୍ବଲପୁରର 'ରାମନାରାୟଣ ମିଶ୍ର' ମଧ୍ୟ କବି ରଚନାର ଜଣେ ପ୍ରଧାନ ପୃଷ୍ଠପୋଷକ ଥିଲେ । 'ପତ୍ରାବଳୀ'ରେ ଏହାଙ୍କ ସମ୍ପର୍କରେ ବହୁବାର ଉଲ୍ଲେଖ ହୋଇଥିବାର ଦେଖିବାକୁ ମିଳୁଛି । 'ତପସ୍ୱିନୀ' ଏହାଙ୍କ ନାମରେ ଉତ୍ସର୍ଗ କରାଯାଇଛି । ସେଥିରୁ 'ରାମନାରାୟଣ ମିଶ୍ର'ଙ୍କ ସମ୍ପର୍କରେ କବିଙ୍କର ଧାରଣା କି ଭଳି ଥିଲା, ତାହା ସ୍ପଷ୍ଟ ଭାବରେ ବୁଝାଯାଇଥାଏ । ସମଗ୍ର 'କୃଷକ ସଙ୍ଗୀତ' ଗ୍ରନ୍ଥଟି "ବୋଡ଼ାସମ୍ବର ଧରିତ୍ରୀଶ୍ୱର ଦୟାବାହାଦୁର ଶ୍ରୀମାନ୍ ଲାଲ ରାଜେନ୍ଦ୍ର ସିଂହ ବରିହା ମହୋଦୟଙ୍କର ଆଦେଶ ଓ ଉପଦେଶାନୁସାରେ ଲିଖିତ ହୋଇଥିବାର ଦେଖିବାକୁ ମିଳୁଛି ।

ଏହିଭଳି ଅନେକଙ୍କର ଉଲ୍ଲେଖ ଆମେ ଗଙ୍ଗାଧର ସାହିତ୍ୟର ଅନୁଶୀଳନରେ ଦେଖିବାକୁ ପାଉ । ଏମାନଙ୍କ ମଧ୍ୟରୁ ଅନେକେ ଥିଲେ କବିଙ୍କର ସାରସ୍ୱତ-ସାଥି । ବାଳକାଳ ବନ୍ଧୁ, ସୁଖ-ଦୁଃଖର । ଗଙ୍ଗାଧର ସାହିତ୍ୟର ବୃଦ୍ଧିରେ ଏମାନଙ୍କର ଅବଦାନ ମଧ୍ୟ କିଛି କମ୍ ନୁହେଁ । ଏମାନେ ପ୍ରୟୋଜନ ବୋଧରେ ଗଙ୍ଗାଧରଙ୍କ ନିକଟରୁ କିଛି କିଛି ସୃଷ୍ଟି ଆଦାୟ କରିନେଇ ଥିବାର ମଧ୍ୟ ଦେଖିବାକୁ ମିଳୁଛି ।

ଏହି ସାରସ୍ୱତ ସମ୍ପର୍କ ଗଙ୍ଗାଧର-ଜୀବନରେ ଯେ ଯଥାର୍ଥ ଶ୍ରୀବୃଦ୍ଧି ହୋଇଥିଲା, ଏହା କହିବା ବାହୁଲ୍ୟ ମାତ୍ର । ଗଙ୍ଗାଧରଙ୍କ ପ୍ରତିଭା ଯେତେବେଳେ କୌଣସି ନା କୌଣସି କାରଣରୁ ପଥଭ୍ରଷ୍ଟ ହୋଇ

୫ । ଅନନ୍ତ-ନୀରବତା ମଧ୍ୟରେ ସମାଧି ନେବାକୁ ଯାଇଛି, ସେତେବେଳେ କେହି ନା କେହି ବନ୍ଧୁ ତାଙ୍କ ନିକଟରେ ଠିଆ ହୋଇଛନ୍ତି । ଗଙ୍ଗାଧର ଆଜ ଯାହା, ସେଥିରେ ତାଙ୍କର ସାରସ୍ୱତ ବନ୍ଧୁମାନଙ୍କର ଅବଦାନ ଯେ ଯଥେଷ୍ଟ, ଏଥିରେ ସନ୍ଦେହ ନାହିଁ ।

ଅବଶ୍ୟ ଏହା ସତ୍ୟ ଯେ, ପ୍ରତିଭା କାହାରି ପୃଷ୍ଠପୋଷକତାର ଅପେକ୍ଷା ରଖେନାହିଁ । ସ୍ୱଚ୍ଛନ୍ଦ-ପ୍ରବାହିଣୀ ଗିରି-ନଦୀ ଭଳି ସେ ନିଜ ଆବେଗରେ କୂଳପ୍ଲାବନକରି ବହିଯାଏ । କାହାରି ନିନ୍ଦା /

---

★ "ମୋର ଚିରହିତୈଷୀ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନ ମହାଶୟ ୫/୬ ବର୍ଷ ପୂର୍ବେ ଗ୍ରାମପଞ୍ଚାୟତ ସମ୍ବନ୍ଧୀୟ ଗୋଟିଏ ବୃହତ୍ ପଦ୍ୟ ଲେଖିବା ନିମନ୍ତେ ଉପଦେଶ ଦେଇଥିଲେ ।" [ ଭୂମିକା—ଅର୍ଘ୍ୟଥାଳୀ ]

ପ୍ରଶଂସା ଯେ ତା'ର ଗତିକୁ ରୁଦ୍ଧ କରିଦେବ, ଏହା ସମ୍ଭବ ନୁହେଁ । 'କେଦାର ଗୌରୀ' ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ରାଧାନାଥଙ୍କ ବିରୁଦ୍ଧରେ ସମାଲୋଚନାର / କୁତ୍ସାରଟନାର ଝଡ଼ ବହିଯାଇଥିଲା । ମାତ୍ର 'କେଦାରଗୌରୀ' ଠାରୁ 'ମହାଯାତ୍ରା'ର ପଥ ଅନେକ-ସମୟ ମଧ୍ୟ କମ୍ ନୁହେଁ । ରାଧାନାଥ ତାହାର ମଧ୍ୟରେ ନିନ୍ଦାକୁ ଚନ୍ଦନତୁଲ୍ୟ ମନେକରି ବାଟକାଟି ଚାଲିଥିଲେ ଏବଂ କହିଥିଲେ ମଧ୍ୟ "ମୋହୋର ଚର୍ମରେ ଗଣ୍ଡାର ଚର୍ମର କଠିନତା ବର୍ତ୍ତମାନ ।" ଗଙ୍ଗାଧରଙ୍କ ଜୀବନରେ ଯେତେ ଦୁଃଖ, ବ୍ୟକ୍ତିଗତ ଜୀବନରେ ରାଧାନାଥ ମଧ୍ୟ ତାହାଠାରୁ କମ୍ ଦୁଃଖପାଇ ନାହାନ୍ତି । ତେବେ ? ଅସଲକଥା ହେଉଛି, ଥରେ ସାହିତ୍ୟ ପ୍ରତି ଆସକ୍ତ ହୋଇଗଲେ ଶତ ନିନ୍ଦା / ପ୍ରଶଂସାର ସାଧ୍ୟ ନାହିଁ, ସେ ସେଠାରୁ ସ୍ରଷ୍ଟାକୁ ବିଚ୍ଛିନ୍ନ କରିଦେବ । ଏହାକୁ ହିଁ ଆମେ ଅନ୍ୟାର୍ଥ Involvement ବୋଲି କହିଛୁଁ । କବି ରାଧାନାଥ ନିନ୍ଦା / ପ୍ରଶଂସାକୁ ସମଭାବେ ଗ୍ରହଣକରି ନିଜ କାମକରି ଚାଲିଥିଲେ ବେଳେ, ମଝିରେ ରାଧାନାଥ ବେଳେ-ବେଳେ ବୀତସ୍ପୃହ ହୋଇ କହି ପକାଇଛନ୍ତି, "ଲେଶମାତ୍ର ଆର୍ଥିକ ଲାଭ ନାହିଁ ଅଥଚ ଈର୍ଷା ଜନିତ ମାନସିକ ଅଶାନ୍ତି ସମୟ ସମୟରେ ମନକ୍ଷୁବ୍ଧ କରେ । ଏହିପରି ସାହିତ୍ୟ ଚର୍ଚ୍ଚାଠାରୁ ଦୂରେ ଥିବା ଭଲ—" ମାତ୍ର ସେ କେବଳ କ୍ୱଚିତ୍ ସମୟରେ ଏବଂ ସହ୍ୟ କ୍ଷେତ୍ରର ସୀମା ଅତିକ୍ରମ କଲେ ବୋଲି ଲାଗେ ।

ଗଙ୍ଗାଧରଙ୍କଠାରୁ ଏଧରଣର ଆଚରଣ ଆଶା କରିବା ବୃଥା । କାରଣ ଉନ୍ନତ ଶିକ୍ଷା ରାଧାନାଥଙ୍କୁ ଯେଉଁ ଧୈର୍ଯ୍ୟ ଏବଂ ସହନଶୀଳତା ଶିକ୍ଷା ଦେଇଥିଲା, ଗଙ୍ଗାଧର ସେ ସୁଯୋଗ ପାଇନଥିଲେ । ତେଣୁ ସାମାନ୍ୟ ଦୁଃଖରେ ଏକ ଧରଣର ଅସ୍ଥିରତା ତାଙ୍କୁ ବାରମ୍ବାର ଗ୍ରାସ କରୁଥିଲା । ଏ ଅସ୍ଥିରତା ଯୁଗପ୍ରଭାବ ନୁହେଁ । ନିତାନ୍ତ ପାରିବାରିକ ଏବଂ ଅନେକ କ୍ଷେତ୍ରରେ ମାନସିକ ମଧ୍ୟ । ଗଙ୍ଗାଧର ନିତାନ୍ତ କୋମଳ ହୃଦୟଥିଲେ । ଆଉ ତାଙ୍କର ମତରେ "କୋମଳ ପବିତ୍ର ହୃଦୟ ଅଶାନ୍ତି ଲତିକାର ଉର୍ବର-କ୍ଷେତ୍ର ଏବଂ ତାଙ୍କର 'ହୃଦୟ ଦୁଃଖ ବୀଜର ଉର୍ବର କ୍ଷେତ୍ର' । ନଗଣ୍ୟ ଦୁଃଖ ସୂକ୍ଷ୍ମ ଛିଦ୍ରରେ ସତେଜ ହୋଇଉଠେ ।" କେବଳ ଏହି କାରଣରୁ ସେ ବାରମ୍ବାର ଅସ୍ଥିର ମାନସିକତାର ଶିକାର ହୋଇଥିବାର ଅନୁମାନ କରାଯାଇପାରେ । ଚିନ୍ତ-ଚଞ୍ଚଳତାର ସେଇ ହୃଦୟସ୍ପର୍ଶୀ ମୁହୂର୍ତ୍ତରେ ଅନ୍ୟର ସମବେଦନା କପରି ଟନିକ୍ ଭଳି କାମକରେ, ତାହା ଭୁକ୍ତଭୋଗୀ ମାତ୍ର ଜାଣନ୍ତି । ତେଣୁ ତାଙ୍କ ଜୀବନରେ ରାଧାନାଥଙ୍କର ଆବିର୍ଭାବ ଯେ ଓଡ଼ିଆ ସାହିତ୍ୟ ନିମନ୍ତେ ନିତାନ୍ତ ଶୁଭଙ୍କର ହୋଇଥିଲା, ଏହା ସତ୍ୟ ।

ରାଧାନାଥଙ୍କ ମୃତ୍ୟୁପରେ ତାହାଙ୍କର ଶୂନ୍ୟସ୍ଥାନ ପୂରଣକଲେ ସମ୍ବେଦନଶୀଳ ବ୍ରଜମୋହନ । ବ୍ରଜମୋହନ ଗଙ୍ଗାଧରଙ୍କର ପୁତ୍ରତୁଲ୍ୟ ଥିବାରୁ ଅନେକ ସମୟରେ ସ୍ନେହର ଦାବୀରେ ତାଙ୍କ ନିକଟରେ ଅଳି କରୁଥିଲେ, ଯାହା ବୟୋଜ୍ୟେଷ୍ଠ ରାଧାନାଥଙ୍କ ପକ୍ଷରେ ସମ୍ଭବ ନଥିଲା । ଦ୍ୱିତୀୟ କଥା, ବ୍ରଜମୋହନଙ୍କ ଠାରୁ କବି ଆର୍ଥିକ ସାହାଯ୍ୟର ଭରସା ପାଇଥିଲେ, ଯାହା ତାଙ୍କର ଅସ୍ଥିର ମାନସିକତାକୁ ସ୍ଥିର କରିବା ନିମନ୍ତେ ଅନେକ ପରିମାଣରେ ଦାୟୀ । ଅବଶ୍ୟ କବି ଏହି ଉଦାର ପ୍ରତିଶ୍ରୁତିର ସୁଯୋଗ କ୍ୱଚିତ ଗ୍ରହଣ କରିଥିବାର ଦେଖିବାକୁ ମିଳୁଛି । ତଥାପି ଭରସା ଟୋକାଏ ସ୍ୱତନ୍ତ୍ର କଥା । ଜୀବନରେ ତାହାର ପ୍ରଭାବକୁ ଅସ୍ୱୀକାର କରିହେବ ନାହିଁ । ମୂଳତଃ ବ୍ରଜମୋହନଙ୍କ ସସ୍ନେହ ଦାବୀ ନିକଟରେ ପରାଜୟ ସ୍ୱୀକାର କରି କବି ତାଙ୍କ ଜୀବନର ଶ୍ରେଷ୍ଠ କୃତି ଗୁଡ଼ିକୁ ରଚନା କରିଯାଇଛନ୍ତି ।

ଏହି ସମୟକୁ କବିଜୀବନର ଚରମ ସୌଭାଗ୍ୟର କାଳ ବୋଲି କହିବାକୁ ହେବ । କାରଣ କବି ନନ୍ଦକିଶୋର ମଧ୍ୟ କଟକରୁ ପରିବେଷ୍ଟିତ ହୋଇ ସମ୍ବଲପୁରରେ ଆସି ଉପସ୍ଥିତ ହୋଇଥିଲେ ।

ତେଣୁ ବ୍ରଜମୋହନ ଦୂରରେ ଥାଇ ଯେତିକ କରିପାରୁ ନଥିଲେ, ତାହା ଅତି ନିକଟରେ ଥାଇ ନନ୍ଦକିଶୋର କରାଇ ନେଉଥିଲେ । ରାଧାନାଥଙ୍କ ଅସମାପ୍ତ କାର୍ଯ୍ୟର ଦାୟିତ୍ୱ ଏତେବେଳେ ଏହି ଦୁଇଜଣଙ୍କ ଉପରେ ନ୍ୟସ୍ତ ଥିଲା । ଏମାନେ ସେ ଦାୟିତ୍ୱକୁ ବେଶ୍ ଭଲ ଭାବରେ ତୁଲାଇ ପାରିଥିଲେ, ଏହା ସ୍ୱୀକାର କରିବାକୁ ହେବ ।

ସମସାମୟିକ ପତ୍ର-ପତ୍ରିକାର ସମ୍ପାଦକ ମାନେ ମଧ୍ୟ ସେତେବେଳର ସାହିତ୍ୟ ପ୍ରସାରରେ ଏକ ବିଶେଷ ଭୂମିକା ଗ୍ରହଣ କରିଥିଲେ । ପତ୍ର-ପତ୍ରିକାକୁ ପ୍ରସ୍ତୁତର ଏକ ବଳିଷ୍ଠ ଏବଂ ଶକ୍ତିଶାଳୀ ମାଧ୍ୟମ ରୂପେ ଗ୍ରହଣ କରାଯାଇପାରେ । ଏକ ବଳିଷ୍ଠ ସାହିତ୍ୟିକ ପରମ୍ପରା ସୃଷ୍ଟିରେ ଏହାର ଭୂମିକା ଅତୁଳନୀୟ । ଗଙ୍ଗାଧରଙ୍କର ସୌଭାଗ୍ୟ ଯେ, ତାଙ୍କର ପ୍ରତିଭାର ବିକାଶର ପରମୁହୂର୍ତ୍ତରୁ ସେ ଆତ୍ମବିକାଶର ଏହି ମାଧ୍ୟମଟିକୁ ଗ୍ରହଣ କରନେବାର ସୁଯୋଗ ଲାଭ କରିଥିଲେ । ଅବଶ୍ୟ ତାଙ୍କର ଅଧିକାଂଶ ରଚନା 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିବାର ଦେଖିବାକୁ ମିଳୁଛି । ତଥାପି 'ଉତ୍କଳ ପ୍ରଭା', 'ହିତୈଷିଣୀ', 'ମୁକୁର' ଏବଂ 'ଗ୍ରୀବଖଣ୍ଡ' ପ୍ରଭୃତି ସେତେବେଳର ରଚନାବଳୀ ପ୍ରକାଶରେ କେବେ ହେଳା କରି ନଥିଲେ । 'ହିତୈଷିଣୀ'ର ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ତ ଗଙ୍ଗାଧରଙ୍କ ଅନ୍ତରଙ୍ଗ ବନ୍ଧୁ ପର୍ଯ୍ୟାୟରେ ଥିଲେ । ସେତେବେଳର ସାହିତ୍ୟ ପରି ପ୍ରସାରରେ ଏ ସମସ୍ତ ପତ୍ରିକାର ଅବଦାନକୁ ତେଣୁ ସ୍ୱୀକାର କରିବାକୁ ହେବ ।

ସ୍ୱଭାବ ବିନମ୍ର, ଉଦାର ଏବଂ ସରଳ ଚିତ୍ତ ସେତେବେଳର ପରିଚିତ ମହଲରେ ଅତ୍ୟନ୍ତ ଆଦୃତ ହେଉଥିଲେ । ସରଳତା ସହିତ ଦୃଢ଼ତାର ଯେଉଁ ଅପୂର୍ବ ସମନ୍ୱୟ ତାଙ୍କର ଚରିତ୍ରଟିକୁ ରସାଣିତ କରିଥିଲା, ତାହା ସମସ୍ତଙ୍କର ପ୍ରଶଂସନୀୟ ଥିଲା । ତେଣୁ ପରିଚିତ-ମହଲରେ କବିଙ୍କ ନିମନ୍ତେ କୌଣସି ଦିନ ବିତର୍କର ଝଡ଼ ଉଠିଥିବାର ଆମେ ଦେଖିବାକୁ ପାଇ ନାହୁଁ । ସାହିତ୍ୟ କ୍ଷେତ୍ରରେ ଗଙ୍ଗାଧର ରାଧାନାଥଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ଶୂନ୍ୟତାକୁ ପୂରଣ କରିବା ନିମନ୍ତେ ଉଦ୍ୟମୀ ହୋଇଥିଲେ । ତାଙ୍କର ମାନସିକତା ମଧ୍ୟ ଏଥିନିମନ୍ତେ ପୂର୍ଣ୍ଣ ଉପଯୋଗୀ ଥିଲା । ରାଧାନାଥଙ୍କର କଳ୍ପନାଶକ୍ତି 'ଅଶ୍ରାବ୍ୟ, ଅପାଠ୍ୟ, ଜଘନ୍ୟ, ନୀଚ ଓ କଦର୍ଯ୍ୟ ଆଖ୍ୟାୟିକା ମାନଙ୍କର ଜନ୍ମଦାତ୍ରୀ' ( ଉ: ପ୍ର: ୩୦।୧୦।୧୮୯୧) ରୂପେ ସମାଲୋଚିତ ହୋଇଥିଲା । ରାଧାନାଥୀ-କାବ୍ୟରେ ଆଦର୍ଶ ପ୍ରଣୟର ଚିତ୍ରର ଘୋର ଅଭାବ ଏଇ ସମାଲୋଚନା ସୃଷ୍ଟିର କାରଣ । ପ୍ରାଚ୍ୟ ମାନସିକତା ନେଇ ଗଙ୍ଗାଧର ଆଦର୍ଶ ପ୍ରେମର ଚିତ୍ର ଅଙ୍କନ କରି ରାଧାନାଥ-ସାହିତ୍ୟର ଅଭାବ ପୂର୍ଣ୍ଣ କରିବା ନିମନ୍ତେ ଉଦ୍ଗ୍ରୀବ ହୋଇଥିଲେ । ରାମାୟଣ, ମହାଭାରତରେ ଏହିଭଳି ଆଖ୍ୟାୟିକାର ଅଭାବ ମଧ୍ୟ ନ ଥିଲା । ତେଣୁ ସୃଷ୍ଟି ହେଲା, ଇନ୍ଦୁମତୀ, କୀଚକବଧ, ପ୍ରଣୟବଲ୍ଲରୀ ଓ ତପସ୍ୱିନୀ । ଏହାର ବିଷୟବସ୍ତୁ ବିରୁଦ୍ଧରେ ରାଧାନାଥ-ସାହିତ୍ୟ ବିରକ୍ତି ମନ କିଛି କହିବା ନିମନ୍ତେ ସୁଯୋଗ ମଧ୍ୟ ପାଇଲା ନାହିଁ । ବରଂ ଅନେକେ ଆଗେଇ ଆସି ଗଙ୍ଗାଧରଙ୍କୁ ଶ୍ରଦ୍ଧାମିଶ୍ରିତ ଉତ୍ସାହ ଦେବାକୁ ଲାଗିଲେ । ଗଙ୍ଗାଧରଙ୍କ-ପ୍ରତିଭା ଅନୁକୂଳ ସୁଯୋଗର ସଦ୍ବ୍ୟବହାର କରି ଉପଯୁକ୍ତ ମାର୍ଗରେ ପ୍ରବାହିତ ଗଲା ।

ତେଣୁ ଆଜ ଆମେ ଗଙ୍ଗାଧରଙ୍କୁ ଯେଉଁ ରୂପରେ ଦେଖୁଛୁ, ସେଥି ନିମନ୍ତେ ତାଙ୍କର ପରିଚିତ ବନ୍ଧୁ ମହଲର ଯେ ଅବଦାନ ଅନେକ, ଏହା ବିତର୍କର ବସ୍ତୁ ନୁହେଁ । ସୁ-ସାରସ୍ୱତ ସମ୍ପର୍କ ଗଙ୍ଗାଧରଙ୍କୁ ଉପଯୁକ୍ତ ମାର୍ଗରେ ପରିଚାଳିତ କରିପାରିଥିଲା ।

———

"*I add that no optimism is worth its salt, that does not go all the way with pessimism and arrives at a point beyond it—*" [ *Bosanquet : Social and International Ideas P. 43* ]

ଜୀବନର ଅନୁଭବ ଜୀବନଠାରୁ ବିଚ୍ଛିନ୍ନ ନୁହେଁ । ପରିବେଶ ଏହି ଅନୁଭବର ଜନକ । ବ୍ୟକ୍ତି ଜୀବନର ଗଠନରେ ଅନୁଭବର ବିଶେଷ ଭୂମିକାକୁ ଅସ୍ୱୀକାର କରିହେବ ନାହିଁ । କାରଣ ଏହି ଅନୁଭବ ହିଁ ଜୀବନ-ପ୍ରତି ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ସୃଷ୍ଟି କରିଥାଏ । ଏହାହିଁ ତା'ର ଦର୍ଶନ-ଜୀବନ ପ୍ରତି ମନୋଭାବ ।

କବି-ପୁରୁଷର ଅନୁସନ୍ଧିତ୍ସା ସାଧାରଣ ପୁରୁଷଠାରୁ ଅଧିକ ବ୍ୟାପକ, ଅଧିକ ତୀକ୍ଷ୍ଣ । ଏହି ଅନୁସନ୍ଧିତ୍ସା ତାହାର ଅନ୍ତର୍ଦୃଷ୍ଟିରୁ ପ୍ରସୂତ । ତାହାର ଜୀବନ ପର୍ଯ୍ୟବେକ୍ଷଣୀ-ଶକ୍ତି ତେଣୁ ସାଧାରଣ ବ୍ୟକ୍ତିଠାରୁ ଅଧିକ ଶାଣିତ । କାବ୍ୟରେ କବି ସତ୍ତା ଏବଂ ବ୍ୟକ୍ତି ସତ୍ତାର ସ୍ୱାତନ୍ତ୍ର୍ୟ ନଥାଏ । ବ୍ୟକ୍ତିସତ୍ତାର ଅନୁଭବ ତେଣୁ କବିସତ୍ତାର ଅନୁଭବରେ ରୂପାନ୍ତରିତ ହୋଇ ଏକ ବିଶିଷ୍ଟ ଦୃଷ୍ଟିଭଙ୍ଗୀର ସୃଷ୍ଟି କରିଥାଏ ।

ଗଙ୍ଗାଧରଙ୍କ ଜୀବନ ସୁଖୀ ନଥିଲା । ଆବାଲ୍ୟରୁ ଦାରିଦ୍ର୍ୟର ବିଭୀଷିକା ତାଙ୍କ ଜୀବନର ସମସ୍ତ ସରସତାକୁ ଗ୍ରାସ କରିଥିଲା । ଏହି ଅବସ୍ଥା କବିଙ୍କ ଜୀବନ କାଳ ମଧ୍ୟରେ ଦୂର ହୋଇନଥିଲା । ପାରିବାରିକ ଜୀବନରେ ବହୁ ଶୋକାକୁଳ ଘଟଣାର ଆବର୍ତ୍ତ କବି ଜୀବନକୁ ବିସୂତ ଅସ୍ଥିର କରୁଥିଲା । ଅକାଳରେ ପତ୍ନୀ ଏବଂ ପୁତ୍ରର ମୃତ୍ୟୁ ଏହିଭଳି ଘଟଣାମାନଙ୍କ ମଧ୍ୟରୁ ଦୁଇଟି । ଦୁଃଖର କଷଟି ପଥରରେ ବାରମ୍ବାର କବିଙ୍କ ସହ୍ୟଶକ୍ତିର ପରୀକ୍ଷା ଚାଲିଥିଲା ।

ଦୁଃଖର ରାଜଦାଣ୍ଡରେ ନିଃସଙ୍ଗ ଯାତ୍ରାରେ ଅଭ୍ୟସ୍ତ କବି ଦୁଃଖକୁ ସହ୍ୟ କରିବାକୁ ଶିଖିଥିଲେ । ସହ୍ୟ କରିବାକୁ ଯେ ମାନବ ବାଧ୍ୟ ଏହି ବିଶ୍ୱାସ କବିଙ୍କର ହୋଇଗଲାପରେ, ସେ ପ୍ରାଚ୍ୟ-ପରମ୍ପରା ଅନୁରାଗୀ ହୋଇ ପଡ଼ିବା ସ୍ୱାଭାବିକ ।

ଏହି ପରମ୍ପରାର ବିଶ୍ୱାସରେ ଜୀବନ ହେଉଛି ସ୍ରଷ୍ଟାଙ୍କର ଅମୂଲ୍ୟ ଦାନ । ଯଥାପ୍ରାପ୍ତ ଏହାକୁ ଗ୍ରହଣ କରାଯାଇ, ଘଟଣାକୁ ମଧ୍ୟ ତାହାର ଅବଶ୍ୟମ୍ଭାବୀ ପରିଣତିର ସମ୍ମାନ ଦେବାକୁ ହେବ । ପ୍ରତିବାଦ ନିରର୍ଥକ । ଏହାହିଁ ଗଙ୍ଗାଧରଙ୍କର ଅଦୃଷ୍ଟବାଦ । ଚିରଦାରିଦ୍ର୍ୟ କବି ଚିତ୍ତରେ ଯେଉଁ ଅସହାୟ ଈଶ୍ୱର ବିଶ୍ୱାସ ସୃଷ୍ଟି କରିଥିଲା, ସେଥିରୁ ଏହି ଅଦୃଷ୍ଟବାଦର ସୃଷ୍ଟି ।

ସୁଖ / ଦୁଃଖ ପୂର୍ଣ୍ଣରୂପେ ଦୈବାଧୀନ । ଦୁଃଖରେ ଅନୁଦ୍‌ବିଗ୍ନ ତଥା ସୁଖରେ ବିଗତସ୍ପୃହ ମାନସ ହିଁ ଈଶ୍ୱରଙ୍କର କରୁଣା ଲାଭ କରିଥାଏ । ମରଣ ଏଠାରେ ତେଣୁ ଶ୍ୟାମାଭୂଲ୍ୟ ଉତ୍କଣ୍ଠା ନୁହେଁ,

ବରଂ ଶ୍ୟାମ କୁଞ୍ଜ ଶୃଙ୍ଖଳର । ମୃତ୍ୟୁ ଏଠାରେ ନୂତନ ଜୀବନର ଅଗ୍ରଦୂତ । ତେଣୁ ଦୁଃଖର ସ୍ୱରୂପ କଣ ? ଏ ଜୀବନର ସମ୍ଭବ ଆନନ୍ଦରୁ, ଆନନ୍ଦରେ ଏହାର ବିକାଶ ଏବଂ ଆନନ୍ଦ ମଧ୍ୟରେ ଏହାର ବିଲୁପ୍ତି । ପରିପୂର୍ଣ୍ଣ ଆନନ୍ଦର ଏହି ସ୍ୱୟଂ ସଂପୂର୍ଣ୍ଣତା ମଧ୍ୟରେ ଦୁଃଖର ସ୍ଥାନ ପୁଣି କେଉଁଠି ?

ଗଙ୍ଗାଧର ଏଇ ମତବାଦରେ ବିଶ୍ୱାସୀ । ଦେବୀ / ଦେବତାଙ୍କର ଜନ୍ମଭୂମିରେ ଜନ୍ମ ହୋଇ ଦୁଃଖରେ ମୁହ୍ୟମାନ ହେବା ଯେ ଅମାନବୋଚିତ ଏହି ଧାରଣା କବିଙ୍କର ହୋଇଥିଲା । ଅମୃତ ଲୋକରେ ମୃତ୍ୟୁର ଆବାହନ ଅସହ୍ୟ । ଜୀବନର ପ୍ରୀତିଭୋଜରେ ବହୁ ସୁସ୍ୱାଦୁ-ଅନୁଭୂତିରୁ ସେ ବଞ୍ଚିତ । ହେଲେ ଦୁଃଖ କାହିଁକି ? ସମସ୍ତେ କ'ଣ ସବୁ ପାଇଥାଆନ୍ତି ? ବରଂ ସାଧାରଣଙ୍କ ଜୀବନ ତ ତାଙ୍କର ଜୀବନ । ଯାହା ସର୍ବସାଧାରଣଙ୍କ ପକ୍ଷରେ ଜୁଟିବ, ତାହାହିଁ ଭୋଗ କରିବାକୁ ସେ ବିଧିନିର୍ଦ୍ଦିଷ୍ଟ । ନିଜ ପାଇଁ ସ୍ୱତନ୍ତ୍ର ଉପାଦେୟତାର କାମନା କରିବେ କେଉଁ ଯୋଗ୍ୟତାରେ ? ☆

ଗଙ୍ଗାଧରଙ୍କ କାବ୍ୟ ସାଧାରଣ ଓ ଅସାଧାରଣ ଅନୁଭବର ମଧୁର ସମନ୍ୱୟ । କବି ହେଉଛନ୍ତି ମାନବ ଜାତିର ସ୍ପର୍ଶମଣି । ଏହାରି ସାହାଯ୍ୟରେ ସେ ସାଧାରଣକୁ ଅସାଧାରଣରେ ରୂପାନ୍ତରିତ କରିଥାଏ । ଗଙ୍ଗାଧରଙ୍କର ସେହି ଶକ୍ତି ଥିଲା । ବାସ୍ତବତାର ଯଥାର୍ଥ ଆନନ୍ଦ ଖୋଜି ପାଇବାରେ ଅସମର୍ଥ ହୋଇ ସେ ଅନ୍ୟତ୍ର ସେହି ଆନନ୍ଦର ସନ୍ଧାନ କରିଥିଲେ । କବିସୃଷ୍ଟି କାବ୍ୟ-ଲୋକ ହେଉଛି, ସେହି ଚିରନ୍ତନ-ଆନନ୍ଦର ନିତ୍ୟ ସ୍ଫୁରଣ ଭୂମି ।

ସରଳ ମାନସିକତା ନେଇ ସେ ଏଭଳି କେତେକ ଚରିତ୍ର ନିଜ ନିମନ୍ତେ ବାଛି ନେଇଥିଲେ, ଯେଉଁମାନଙ୍କ ଜୀବନରେ ପ୍ରାପ୍ତିର ଆନନ୍ଦ ଅପେକ୍ଷା ଅପ୍ରାପ୍ତିର ନୈରାଶ୍ୟ ଅଧିକ । ଜୀବନର ମଧୁପିଆଲା, ତିଳ ତିଳ କରି ଉପଭୋଗ କରୁଥିବା ସମୟରେ ନିୟତିର ନିର୍ମମ ବଜ୍ରପ୍ରହାରରେ ଅଜଙ୍କ ହାତରୁ ପାତ୍ର ଖସି ପଡ଼ୁଛି । ତଥାପି ଅଜ ହାରିଯାଇଛନ୍ତି କି ? ଉଚ୍ଛଳ ଆନନ୍ଦକୁ ପରିପୂର୍ଣ୍ଣ ବୈରାଗ୍ୟରେ ରୂପାନ୍ତରିତ କରି ତାଙ୍କୁ ବଞ୍ଚି ରହିବାକୁ ପଡ଼ୁଛି । ଗଙ୍ଗାଧର ବ୍ୟକ୍ତିଗତ ଜୀବନରେ ମଧ୍ୟ ଏହି ସାଲିସ୍ ମନୋଭାବ ପୋଷଣ କରିଛନ୍ତି । ପ୍ରଥମା ପତ୍ନୀଙ୍କର ବିୟୋଗରେ କ୍ଷତାକ୍ତ ହୃଦୟ ହୋଇଥିଲେ ମଧ୍ୟ ଏହି ଘଟଣାକୁ ବିଧି ନିର୍ଦ୍ଦେଶ ରୂପେ ଗ୍ରହଣ କରି ପୁନର୍ବାର ସଂସାରୀ ହୋଇଛନ୍ତି । ଦୁଷ୍ମନ୍ତ-ପରିତ୍ୟକ୍ତା ଶକୁନ୍ତଳା ମଧ୍ୟ ଜୀବନରେ ପରାଜୟ ସ୍ୱୀକାର କରିନେଇ ନାହାନ୍ତି । ଅପେକ୍ଷା କରି ରହିଛନ୍ତି, ସେଇ ସୁଦିନର ଯେଉଁ ଦିନ କି ସେ ଅନୁତପ୍ତ ଦୁଷ୍ମନ୍ତଙ୍କୁ ଭେଟିବେ ! ତାଙ୍କର ପ୍ରତୀକ୍ଷା ନିରର୍ଥକ ହୋଇ ନାହିଁ । ସେହିଭଳି ବ୍ୟର୍ଥ ହୋଇ ନାହାନ୍ତି ରାମ-ବଧୂ ସୀତା । ଦୀର୍ଘ ଦିନର ତପକ୍ଳିଷ୍ଟା ସୀତା ଯେଉଁ ମୁହୂର୍ତ୍ତରେ ରାମଚନ୍ଦ୍ରଙ୍କର ପତ୍ନୀ-ଅନୁରାଗର ପରିଚୟ ପାଇଛନ୍ତି, ସେଇ ମୁହୂର୍ତ୍ତରେ ସେ ନିଜକୁ

---

☆ ବଡ଼ ବିଚିତ୍ର କଥା ଗଙ୍ଗାଧରଙ୍କ ଜୀବନରେ ପ୍ରକୃତରେ ଥରେ ଏହା ଅନୁଭୂତ ହୋଇଥିଲା । କବିଜୀବନୀକାର 'ଶ୍ରୀ ରାଘବ ମିଶ୍ର' ନିମ୍ନ ମତେ ଘଟଣାଟି ଲିପିବଦ୍ଧ କରି ଅଛନ୍ତି, "ଥରେ ତାଙ୍କ ପଡ଼ାର କୌଣସି ବନ୍ଧୁଙ୍କ ନିମନ୍ତ୍ରଣରେ ଭୋଜିକୁ ଯାଇଥିଲେ । ଦେଖିଲେ ତାଙ୍କର ଦୁଇଗୋଟି ତଟ୍ଟଣୀରେ ଅଧିକା କିଛି ଦ୍ରବ୍ୟ ଅଛି, ଯାହା ଅନ୍ୟମାନଙ୍କୁ ଦିଆଯାଇ ନାହିଁ ! ଏଥିରେ ସେ ଅତିବ ଲଜ୍ଜିତ ହୋଇ ସେ ଦୁଇଟି ପାତ୍ର ତତ୍କାଳ ଉଠାଇ ନେବାକୁ ସଙ୍କେତ ଦେଇଥିଲେ ଓ ପରେ ବନ୍ଧୁଙ୍କର ଏହି ସଙ୍କୀର୍ଣ୍ଣ ସ୍ନେହ ପାଇଁ ଦୁଇପଦ ଟାଣ କଥା ଶୁଣାଇ ଦେଇଥିଲେ ।"
[ ଉଦ୍ଧୃତ : ଗଙ୍ଗାଧର ବିଶେଷାଙ୍କ : ପୃ. ୩୧ ]

ବିଗତ ଦୁଃଖ ମନେକରିଛନ୍ତି । ଗଙ୍ଗାଧରଙ୍କର କାବ୍ୟ ହେଉଛି, ତାଙ୍କ ନିଜର ଜୀବନ-ବେଦ । ତନ୍ମଧ୍ୟରୁ କବି ସୃଷ୍ଟି ନିମନ୍ତେ ସେହି ସବୁ ଚରିତ୍ରମାନଙ୍କୁ ନିର୍ବାଚନ କରିଛନ୍ତି, ଯେଉଁମାନେ ତାଙ୍କ ନିଜ ଅନୁଭବର ପ୍ରତିଛବି ରୂପେ ପ୍ରତୀୟମାନ ହୋଇଛନ୍ତି । ଦୁଃଖ ଆଉ ସୁଖ, ଆଲୋକ ଆଉ ଅନ୍ଧକାର, ଏହାକୁ ହିଁ ନେଇତ ମାନବଜୀବନ । ଦୁଃଖକୁ ସେଠାରେ ବଡ଼ କରି ଦେଖିଲେ, ତାହା ଜୀବନର ପରିପୂର୍ଣ୍ଣ ଚିତ୍ର ହେବ କେଉଁଭଳି ? ସେଇଭଳି କାହା ଜୀବନରେ ସୁଖ ବା ନିରବଚ୍ଛିନ୍ନ ? ଅଯୋଧ୍ୟାର ରାଜରାଣୀ ବିଳାସର ସୁଖଶଯ୍ୟାରୁ ଯଦି ନିର୍ଦ୍ଦୟ ଭାବରେ ଆଶ୍ରମର ନିର୍ଜନତାରେ ନିର୍ବାସିତା ହୁଅନ୍ତି, ଦମୟନ୍ତୀର ପଟ୍ଟମହିଷୀଙ୍କୁ ଯଦି ଜୀବନର ପ୍ରୟୋଜନରେ ଅନ୍ୟର ଦାସୀ ବୃତ୍ତି କରିବାକୁ ହୁଏ, ତେବେ ସାଧାରଣ ଲୋକେ ବିଧି-ନିର୍ଦ୍ଦେଶର ପ୍ରତିବାଦ କରିବା କ'ଣ ଉଚିତ ?

ଗଙ୍ଗାଧର ପରିଚ୍ଛନ୍ନ ନୀତି-ନିରତ ହୃଦୟର ଅଧିକାରୀ । ବ୍ୟକ୍ତିଗତ ଜୀବନରେ ସେ ଅନୀତିକୁ କେବେ ପ୍ରଶ୍ରୟ ଦେଇନଥିଲେ । ମିଥ୍ୟା ଭାଷଣକୁ ସେ ବିଷଧର ସର୍ପଭଳି ଭୟ କରୁଥିଲେ । ଏଥିନିମନ୍ତେ ସେ ବହୁ ଅସୁବିଧାର ସମ୍ମୁଖୀନ ହୋଇଥିଲେ ହେଁ ନିଜର ମତ ବଦଳାଇ ନଥିଲେ । ନୀତିର ଏହି ଆବାହନ ତାଙ୍କ ପ୍ରତ୍ୟେକ କାବ୍ୟରେ ଦେଖିବାକୁ ମିଳୁଛି । ଅନୀତି ପରିପୂର୍ଣ୍ଣ-କଣ୍ଟକ ଅସହାୟ ଭାବରେ ମୃତ୍ୟୁବରଣ କରିଛି । ସ୍ୱେଚ୍ଛା ବିହାରିଣୀ ଶକୁନ୍ତଳା ଦୀର୍ଘବର୍ଷର ବିରହ ଯନ୍ତ୍ରଣା, ଅପମାନ ଭୋଗିନୀ ହୋଇଛନ୍ତି । ନୀତି-ଉପାସିକା ସୀତାଦେବୀ ସ୍ୱାମୀ-ସୋହାଗିନୀ ହୋଇଛନ୍ତି । ନୀତି ବହୁ ଦୁର୍ଦ୍ଦଶାର ଜନନୀ ହୋଇପାରେ, ମାତ୍ର ପରିଣାମ ସୁଖ ଦାୟିନୀ । ନୀତିର ଉପାସନା ନିମନ୍ତେ ଏକ ନିର୍ମଳ ହୃଦୟର ପ୍ରୟୋଜନ । ବୁଦ୍ଧି ଓ ଜ୍ଞାନ ହୃଦୟକୁ ଜଟିଳତରେ ସିନା । ସରଳ କରିପାରେ ନାହିଁ । କବି ସ୍ୱୟଂ ଏକ ନିଷ୍କଳୁଷ ହୃଦୟର ଅଧିକାରୀ ଥିଲେ । ସଂସାରରେ ପ୍ରତ୍ୟେକଙ୍କଠାରୁ ସେ ତାହାହିଁ ପ୍ରତ୍ୟାଶା କରୁଥିଲେ ।★

ଆଦର୍ଶ-ବିହୀନ ଜୀବନ ଏବଂ ଚାଳକ-ବିହୀନ ନୌକା ମଧ୍ୟରେ କବି ବିଶେଷ ପାର୍ଥକ୍ୟ ଦେଖି ନଥିଲେ । ଆଦର୍ଶ-ବ୍ୟତିରିକ୍ତ ଜୀବନ ତେଣୁ ଜୀବନ ପଦବାଚ୍ୟ ନୁହେଁ । ଜୀବନକୁ ସ୍ମରଣୀୟ, ରମଣୀୟ ଏବଂ ବରେଣ୍ୟ କରିବା ନିମନ୍ତେ ଏହା ଆଗରେ ଏକ ନିର୍ଦ୍ଦିଷ୍ଟ ଆଦର୍ଶର ଚିତ୍ର ଝୁଲାଇ ରଖାଯିବା ଆବଶ୍ୟକ । ଅଯୋଧ୍ୟା-ରାଜା ରାମଚନ୍ଦ୍ର ପ୍ରଜା ପାଳନର ଆଦର୍ଶ ନିକଟରେ ନିଜ ବ୍ୟକ୍ତିଗତ ସ୍ୱାଚ୍ଛନ୍ଦ୍ୟକୁ ବଳି ଦେଇଛନ୍ତି । ହୃଦୟ ଫାଟି ଯାଇଛି । ଜୀବନର ସରସତା ଉଭେଇ ଯାଇଛି । ତଥାପି ପ୍ରଜାର କାମନା ରାଜାର ଧେୟ । ନହେଲେ ରାଜା 'ପରମାରାଧ୍ୟ' ହେବେ କାହିଁକି ? ତାଙ୍କ ଚରିତ୍ରର କେଉଁ ଦିଗଟି ଅନ୍ୟମାନଙ୍କୁ ଅନୁପ୍ରାଣିତ କରିବ ? ଏଠାରେ ବାସ୍ତବ ଏବଂ ଆଦର୍ଶ ମଧ୍ୟରେ ଏକ ସଂଘର୍ଷର କଳ୍ପନା କରାଯାଇ ଆଦର୍ଶର ବିଜୟ ସୂଚିତ ହୋଇଛି । ଗଙ୍ଗେଶ୍ୱର-ଦେବଙ୍କ ଭଳି ରାମଚନ୍ଦ୍ର ପ୍ରଶ୍ନ କରିନାହାନ୍ତି, "ସମ୍ପ୍ରତେ ପୁଛିଲେ ବନେ ନୃପ ମୋତେ 'କହିବୁଟି କେମାନଣି / ଲାବଣ୍ୟ-ପ୍ରତିମା ଛାଡ଼ିଣ କରିବା ଅନ୍ୟପକ୍ଷେ ତା'କ ମଣି ?" ବରଂ ରାମଚନ୍ଦ୍ର ଚିନ୍ତା କରିଛନ୍ତି । "ମାୟାକାର ପରି / ଦଣ୍ଡଗୋଟି ଧରି / ସମଦୃଷ୍ଟି ସମଭାବେ, ରାଜତ୍ୱ ରକ୍ଷାରେ / ବଳସି ରଜ୍ଜୁରେ ନିଜ ଜୀବନ ନ ଭାବେ—"

---

★ ଜଣେ ଲେଖକଙ୍କର ପାଣ୍ଡୁଲିପି ସଂଶୋଧନ କରିଦେଇ କବି ତାଙ୍କୁ କହିଥିଲେ, "ରଚନା ହୃଦୟର ଦର୍ପଣ । ହୃଦୟର ଛବି ରଚନାରେ ପ୍ରତିଫଳିତ ହୁଏ । ଆପଣ ରଚନା ସୁନ୍ଦର ସରସ କରିବାକୁ ଚାହାନ୍ତି ତ ଆଗେ ନିଜ ହୃଦୟକୁ ନିର୍ମଳ ନିର୍ଦ୍ଦୋଷ କରନ୍ତୁ—" [ ଡଗର : ଗଙ୍ଗାଧର ବିଶେଷାଙ୍କ—ପୃ. ୩୧ ].

ଗଙ୍ଗେଶ୍ୱରଦେବ ବାସ୍ତବ, ରାମଚନ୍ଦ୍ରଦେବ ଆଦର୍ଶ । ଗଙ୍ଗେଶ୍ୱର ସ୍ପୃହଣୀୟ ଜୀବନର ନିତାନ୍ତ ପ୍ରୟୋଜନୀୟ ଭୋଗ ଲାଳସାର ପରିତୃପ୍ତି । ଏଥିନିମନ୍ତେ ସେ ନୀତି / ଅନୀତି ଆଦର୍ଶ / ଅନାଦର୍ଶ ଗଣିନାହାନ୍ତି । ରାମଚନ୍ଦ୍ର ପୁଣି ନିଜର ପ୍ରୟୋଜନକୁ ବିସ୍ମୃତ ହୋଇ 'ନିଜ ଜୀବନକୁ ନ ଭାବି' ସମଦୃଷ୍ଟି / ମମତ୍ୱବର ଆବାହନ କରିଛନ୍ତି । ଗଙ୍ଗେଶ୍ୱର ସାଧାରଣ । ରାମଚନ୍ଦ୍ର ଅସାଧାରଣ । ଗଙ୍ଗେଶ୍ୱର ନୀତିହୀନ । ରାମଚନ୍ଦ୍ର ନୀତିବାନ୍ । ଏହି ଦୁଇ ଶକ୍ତିର ସଂଘର୍ଷରେ ଦ୍ୱିତୀୟଟିର ସର୍ବଦା ଜୟ ଜୟକାର । ଜୀବନ ବାସ୍ତବତାର, ମାତ୍ର କାବ୍ୟ ଆଦର୍ଶର । ଜୀବନରେ ଆଦର୍ଶ ଅଭିନନ୍ଦନୀୟ । ମାତ୍ର କାବ୍ୟରେ ବାସ୍ତବର ସେତିକି ସ୍ଥାନ ଯେତିକି ଆଦର୍ଶର ସହାୟକ । ବାସ୍ତବତାକୁ କବି ଅସ୍ୱୀକାର କରିନାହାନ୍ତି ମାତ୍ର ଆଦର୍ଶକୁ ବହୁ-ସମ୍ମାନର ସହ ନିମନ୍ତ୍ରଣ କରି ଆଣିଛନ୍ତି । ଏକ ଉଚ୍ଚ ଆଦର୍ଶ ମଧ୍ୟରୁ ଜୀବନର ସୃଷ୍ଟି ଏବଂ ଆଦର୍ଶ ମଧ୍ୟରେ ତାହାର ପ୍ରଶାନ୍ତି । କୀଚକ ଜୀବନରେ ସୈରିନ୍ଧ୍ରୀର ପ୍ରୟୋଜନ ରୂଢ଼-ବାସ୍ତବତାର । ଶକୁନ୍ତଳା ଜୀବନରେ ଦୁଷ୍ମନ୍ତର ପ୍ରୟୋଜନ ମଧ୍ୟ ତାହାହିଁ । ଏଗୁଡ଼ିକ ଜୀବନର ଅନ୍ଧକାର ପକ୍ଷ-ନଗ୍ନ ସତ୍ୟ ହେଲେ ହେଁ ଏହାର ବାସ୍ତବତାକୁ ଅସ୍ୱୀକାର କରି ହେବନାହିଁ । କିନ୍ତୁ ଏହା ନୀତିହୀନ-ବ୍ୟତିକ୍ରମ । ଆଲୋକ-ଗର୍ଭରେ ଅନ୍ଧକାରର ବିଲୁପ୍ତି । ନୀତିହୀନତାର ଉପାସକ କୀଚକ ତେଣୁ ଭୀମ ହସ୍ତରେ ବିମର୍ଦ୍ଦିତ । ଶକୁନ୍ତଳା ତେଣୁ ଦୁର୍ବାସା ଶାପଗ୍ରସ୍ତା । ମୋହ-ତାହା ରୂପଜ ହୋଇପାରେ, ନୈସର୍ଗିକ ହୋଇପାରେ, ଯାହାହେଉ ନା କାହିଁକି, ଏହା ନିତାନ୍ତ ନୀତିହୀନ । ତେଣୁ ତାହାର ପରିସମାପ୍ତି କରୁଣତାରେ । ଶକୁନ୍ତଳା-ଦୁଷ୍ମନ୍ତ ଜୀବନର ଏହି ମୋହ ତାଙ୍କ ଜୀବନୀକୁ ସାମୟିକ Tragedyର ସ୍ପର୍ଶରେ ବିଷାଦମୟ କରିଦେଇଛି । ରାମଚନ୍ଦ୍ର ଜୀବନକୁ ପୁଣି କରିଛି କରୁଣ ରସସିକ୍ତ । ତେଣୁ ଏକ 'ନୀତିପୂର୍ଣ୍ଣ' 'ଆଦର୍ଶ'ର ଉପସ୍ଥାପନ ହିଁ ମେହେରଙ୍କ କାବ୍ୟ-ଦର୍ଶନର ମୂଳକଥା ।

ଜୀବନ ବୃକ୍ଷରେ ସନ୍ତୋଷ-ମଳୟ ଫୁଲ ଫୁଟାଏ ନାନା ଜାତି-ବିଚିତ୍ର ତାରତମ୍ୟ, ଉପଭୋଗ୍ୟ ତା'ର ସୁରଭି, ପରିପୂର୍ଣ୍ଣତାର ରସ । ଏଗୁଡିକ ସୁଖ / ଶାନ୍ତି / ଆନନ୍ଦ ଏମିତି ଅନେକ । ତୃଷ୍ଣା କରକାବାତ୍ୟା ଶୀକର-ବାୟୁ ସନ୍ତୋଷ-ମଳୟର ପ୍ରଧାନ ଶତ୍ରୁ । ତୃଷ୍ଣାର ପୂର୍ଣ୍ଣତା ନାହିଁ । ଜୀବନ-ପରିଧି ତାହାର ସ୍ପର୍ଶରେ ବିଚିତ୍ର ରୂପ ଦୁଃଖର ଅନୁଭୂତିରେ ନିରସ ହୋଇଯାଏ । କି ବାଭତ୍ସ ତାର ରୂପ, କି କଟୁ ତାର ଗନ୍ଧ ! ଏଗୁଡ଼ିକ ଅତୃପ୍ତି / ଅଶାନ୍ତି ଏମିତି ବହୁରୂପୀ । ଏକମାତ୍ର ପରିପୂର୍ଣ୍ଣତାର-ସନ୍ତୋଷର ପ୍ରଭାବରେ ଜୀବନ ଏହା ପ୍ରଭାବରୁ ନିଜକୁ ଦୂରେଇ ରଖିପାରେ । କବି ଜୀବନ ସନ୍ତୋଷର ନିତ୍ୟଲୀଳା କ୍ଷେତ୍ର ଥିଲା । ସ୍ପୃହିବା ଏବଂ ପାଇବା ମଧ୍ୟରେ ଏକ ମଧୁର ସମନ୍ୱୟ କରି ପାରିଥିବାରୁ କବି ନିଜ ଦୁଃଖ / ଦାରିଦ୍ର୍ୟମୟ ଜୀବନକୁ ମଧ୍ୟ ସହଣୀୟ କରିପାରିଥିଲେ । ଅର୍ଥରେ / ମାନ / ସମ୍ମାନ ଲାଭରେ / କର୍ମ ବ୍ୟାପାରରେ ଏହି ସନ୍ତୋଷ ହିଁ ତାଙ୍କୁ ସଫଳ ଭାବରେ ବଞ୍ଚିବାକୁ ପ୍ରେରଣା ଯୋଗାଉଥିଲା । ଏହି ସନ୍ତୋଷର ବଶବର୍ତ୍ତିନୀ ହୋଇ ସୀତା ନିଜର କଷ୍ଟଦାୟୀ ବନବାସ ଜୀବନକୁ ସହ୍ୟ କରିପାରିଥିଲେ । ଏହାର ଦାସ ପରିକଳ୍ପିତା ହୋଇ ପୁଣି ସୈରିନ୍ଧ୍ରୀ / ଶକୁନ୍ତଳା / ରାମଚନ୍ଦ୍ର / ପଞ୍ଚପାଣ୍ଡବ ସମସ୍ତେ ଜୀବନକୁ ଭଲପାଇଛନ୍ତି, ଜୀବନ୍ତ ମରଣର ବିଭୀଷିକା ଦର୍ଶନ ନକରି ଏହାର ରମ୍ୟ-ମଧୁର ମୂର୍ତ୍ତି କଳ୍ପନାରେ ସୁଖୀ ହୋଇଥିଲେ । ଲୋଭ ତୃଷ୍ଣାର ଏକରୂପ । ଏହାର ଆପାତ-ରମ୍ୟ କବଳରୁ ଆତ୍ମ-ରକ୍ଷା କରିନପାରିଲେ, ବିନାଶ ଅବଶ୍ୟମ୍ଭାବୀ । କବିଙ୍କ ମତରେ, "ଲୋଭର ଜନକ ଧନ / ଧନକୁ ଯେ ସ୍ଥିର ମଣନ୍ତି ସେ କରିଥାନ୍ତି । ନିର୍ମଳ ବିଦ୍ୟାର, ଧନଜ ଉନ୍ନତି / ବିଶ୍ୱେ ନୁହେଁ ଚିରସ୍ଥାୟୀ, ସ୍ଥାୟୀ ସେ ଉନ୍ନତି / ଯାହା ଧର୍ମ ଅନୁଯାୟୀ —"

ଗଙ୍ଗାଧର ଜୀବନର ସତ୍ୟ / ଶିବ / ସୁନ୍ଦର ରୂପର ପ୍ରବକ୍ତା । ସତ୍ୟ ଜୀବନକୁ ମହିମାମୟ ସୌନ୍ଦର୍ଯ୍ୟରେ ମଣ୍ଡିତ କରେ । ଶିବ ଦିଏ ତାକୁ ମଙ୍ଗଳର ଇଂଗିତ । ଆଉ ସୁନ୍ଦର ଅପର ଚକ୍ଷୁରେ ତାକୁ ଲୋଭମୀୟ କରି ତୋଳେ । କେବଳ ପ୍ରାଚ୍ୟ ଆଦର୍ଶ ହିଁ ଜୀବନକୁ ଏହି ଚିରନ୍ତନ ରୂପ-ଶ୍ରୀ ପ୍ରଦାନ କରିପାରେ । ତେଣୁ ଏଠାରେ ବିଶ୍ୱ ମଧୁମୟ । ଜୀବନ ଅମୃତ ସାଗରର ବିନ୍ଦୁ ବିଶେଷ । ବିଶ୍ୱର ଏହି ମାଧୁର୍ଯ୍ୟମୟ ବିଭବ ତଥା ଜୀବନର ଏହି ଅମୃତ-ମୟ ସମ୍ପଦ ହିଁ ମେହେରଙ୍କ କାବ୍ୟ-କଳାର ରମ୍ୟତରଙ୍ଗ ୧/୨

ଜୀବନଭଳି ତାଙ୍କର ପ୍ରକୃତି । ଏପ୍ରକୃତି ରୁକ୍ଷ ନୁହେଁ । ନୀରସ ନୁହେଁ । ନୁହେଁ ମଧ୍ୟ ପ୍ରାଣଶୂନ୍ୟ । ଏଠି ପ୍ରକୃତି ମଧ୍ୟରେ କବିପ୍ରୁତିଷ ଦେଖିଛି, ନିଜର ସମ୍ବେଦନ ଶୀଳ ବନ୍ଧୁକୁ ସୁଖଦୁଃଖର ସହାୟକ ବାର୍ତ୍ତନିକକୁ ତଥା ବିପଦର ସାଥି ବିକ୍ରୂଦର୍ଶକକୁ । ପ୍ରକୃତି ପୁଣି ସେହି ଚିନ୍ମୟ-ଐଶ୍ୱରିକ ସତ୍ତ୍ୱର ରୂପାନ୍ତର ମାତ୍ର । ଏଠି ମଧ୍ୟ ସେହି ଆଦର୍ଶର କଥା । ଏ ପ୍ରକୃତି ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରେ ।★ ଶାନ୍ତ ସମୟରେ ରମ୍ୟ ରୂପଶ୍ରୀରେ ମଣ୍ଡିତା ହୁଏ ।☆ ଜନମାର ଆଦରରେ ଶୋକ / ତାପ / ବ୍ୟଥିତ ଚିତ୍ତକୁ ଶାନ୍ତିର ପ୍ରଲେପରେ ଯନ୍ତ୍ରଣା ମୁକ୍ତ କରେ ।* ତେଣୁ ଏଠାରେ ପ୍ରକୃତି ଏବଂ ମାନବର

---

୧. ମୁଁ ତ ଅମୃତ ସାଗର ବିନ୍ଦୁ, ନଭେ ଉଠିଥିଲି ତେଜି ସିନ୍ଧୁ ।
ଖସି ମିଶିଛୁ ଅମୃତ ଧାରେ. ଗଡ଼ି କରୁଛୁ ସେ ଅକୂପାରେ ।
ପଥେ ଲାଗିଗଲେ ପାପ ତାପରେ, ଧୋଇ ଶିଶିର ଖସିବି ତାପରେ ।
ଅମୃତ ମୟ ଅମୃତ ରସ୍ୟ ପହିତ ମିଶିବି ସାଗରେ ।
[ ଅମୃତ ମୟ : ଗଙ୍ଗାଧର ଗ୍ରନ୍ଥାବଳୀ ପୃ. ୨୨୦ ]

୨. ବିଶ୍ୱଦେଖ ମଧୁମୟରେ ଜୀବନ ବିଶ୍ୱ ଦେଖ ମଧୁମୟ,
ମଧୁର ଝରଣ କରିବ ହରଣ ତୋ ପାପ ମରଣ ଭୟରେ ଜୀବନ ॥
[ ମଧୁମୟ : ଗଙ୍ଗାଧର ଗ୍ରନ୍ଥାବଳୀ ପୃ. ୨୨୧ ]

★ "କରିବାକୁ ନସ୍ୟତର ସହିତ ସମର, ତୃଣରାଜ ଖଡ୍‌ଗ କରେ ଗର୍ଜିଲି ପ୍ରଖର ।
ବାୟୁବିତା ତୂଣୀରକୁ ଝାଡ଼ ବାରମ୍ବାର, ପତ୍ର-କଣ୍ଟ ପତ୍ର କଳି କ ଟବା ବାହାର—"
[ ତପସ୍ୱିନୀ — ପୃ. ୨ ]

☆ "ପାଦପେ ଫୁଟିଲା ପଲ୍ଲବ / ଶୋଭି ପୁଷ୍ପ ସ୍ତବକେ,
ଧାଡ଼ ଧାଡ଼ ଶ୍ୱେତ ପତାକା / ତହିଁ ହୋଇଲେ ବକେ,
ମଧୁରେ ଗାଇଲେ କୋକିଳ କୁଳ / ମଙ୍ଗଳଗୀତ,
ଅଳି ସ୍ୱନେ ଜୟ-ଶଙ୍ଖର / ଧ୍ୱନି ହୋଇଲା ବ୍ୟଞ୍ଜିତ । [ ତପସ୍ୱିନୀ — ପୃ. ୧୦ ]

* "ସନ୍ଧ୍ୟାଙ୍କ ତମସା ଅଙ୍କରେ / ସେନ ସ୍ନେହେ ଆଲିଙ୍ଗିଲ ତରଙ୍ଗ କରେ /
ଅମୃତ ମଧୁର ସ୍ୱରେ / ଢାଳିଲ ପରିତୋଷରେ / ମାଆଗୋ, ମୋ ମାନସରେ /
ନଥିଲ ଆଶା / କରିବ ଅଙ୍କେ ବିହାର / ରାଜ ଲକ୍ଷ୍ମୀ ହୃଦହାର /
ସୀତା ଭଲ୍ଲ ପରିହାର / ଶୋକ-ପିପାସା, ଭାଗ୍ୟବଶ ମୋତେ ଫସାରେ,
ବୋଲିବେ ତୋ ଯୋଗୁଁ ଏକା ପରିଣଂସାରେ । [ ତପସ୍ୱିନୀ — ପୃ. ୧୬।୧୮ ]

ସତ୍ତ୍ୱ ଏକ ଏବଂ ଅଭିନ୍ନ । ପ୍ରକୃତିର ଏହି ନବ-ରୂପ-ବିଭବ ଏକାନ୍ତ ଭାବରେ ମେହେରସ୍ୱ । ପ୍ରକୃତିକୁ ମେହେରଙ୍କ-କାବ୍ୟ ସୌଧରୁ ବିଚ୍ୟୁତ କରିଦେଲେ, ଏହାର ସୌନ୍ଦର୍ଯ୍ୟ-ଶ୍ରୀହୀନତାରେ ପର୍ଯ୍ୟବସିତ ହୋଇ ପଡ଼ିବ । ଖଣ୍ଡକାବ୍ୟରୁ ପ୍ରକୃତିକୁ ବାଦ୍ ଦେଇ ତାହାର ମୂଲ୍ୟାୟନ କରାଯାଇ ପାରେ । ରାଧାନାଥଙ୍କ କାବ୍ୟ କ୍ଷେତ୍ରରେ ମଧ୍ୟ କେବଳ ଚିଲିକାକୁ ବାଦ୍ ଦେଲେ, ପ୍ରକୃତିର ଅପରିହାର୍ଯ୍ୟତା ଅନୁଭବ କରିହୁଏ ନାହିଁ । ଗଙ୍ଗାଧର ଏହାର ବ୍ୟତିକ୍ରମ ।

ପାରମ୍ପରିକ ଉପାଖ୍ୟାନ ନବନ୍ୟାସରେ ଗଙ୍ଗାଧର ସାହିତ୍ୟ ଉତ୍ସର୍ଗୀକୃତ । ରାଧାନାଥ ଏହି ପ୍ରବୃତ୍ତିଟିର ପ୍ରଶଂସା କରି କହିଥିଲେ । "ପୁରାତନରେ ନୂତନତା, ଅନୁକୃତରେ ମୌଳିକତା ପ୍ରତିଫଳିତ କରିବା ପ୍ରତିଭାର ବିଧିପ୍ରଦତ୍ତ ଅଧିକାର ଅଟେ ।" ସମଗ୍ର ଗଙ୍ଗାଧର ସାହିତ୍ୟ ଏଇ ପୁରାତନକୁ ନୂତନ କରି ଗଢ଼ିବାର ପ୍ରବୃତ୍ତି ମଧ୍ୟରୁ ଜନ୍ମ । ପୁରାତନ ବିଷୟକୁ ଗ୍ରହଣ କରିବାରେ ଥିଲା ପ୍ରାଚୀନ ପ୍ରତି ଶ୍ରଦ୍ଧା । ତାହାର ନୂତନ ଉପସ୍ଥାପନାରେ ଥିଲା ନବୀନ ପ୍ରତି ଆକର୍ଷଣ । କବି ଗୋଟିକୁ ଗ୍ରହଣକରି ଅପରର ମାୟା ପୂର୍ଣ୍ଣରୂପେ କଟାଇ ପାରିନାହାନ୍ତି । ବରଂ ଗୋଟିଏ ହୋଇଛି ଅପରର ପରିପୂରକ । ପ୍ରାଚୀନ ଏବଂ ନବୀନ ଏଠାରେ ସଂଘର୍ଷ-ମୁଖୀ ନୁହନ୍ତି । ବରଂ ଏକ ସମ୍ବେଦନଶୀଳ-ସମନ୍ୱୟରୁ ହିଁ ମେହେରଙ୍କ ସାହିତ୍ୟର ସୃଷ୍ଟି-ସୌନ୍ଦର୍ଯ୍ୟ ପ୍ରକଟିତ ହୋଇଛି । ଯୁଗ-ପରିବର୍ତ୍ତନ ସହିତ ସ୍ୱର ମିଳାଇବାକୁ ହେଲେ ନବୀନତାର ଆବାହନ ପ୍ରୟୋଜନ । ଆଉ ପ୍ରାଚୀନ ! ସେତ ଆମ ସମୃଦ୍ଧ ଅତୀତର ବିରାଟ ସ୍ମୃତୀଫଳ । ତେଣୁ ଗୋଟିକର ମାୟାରେ ଅପରକୁ ବିସର୍ଜନ ଦେବା ଯୁକ୍ତି ସଙ୍ଗତ ହେବ କି ? ଦୃଢ଼ ଭିତ୍ତି ନଥିଲେ, ଏକ ସୌନ୍ଦର୍ଯ୍ୟମୟ ସ୍ଥାପତ୍ୟ ସୃଷ୍ଟି କରିହୁଆଇ ନପାରେ । ଅତୀତ ଏଠାରେ ହେଉଛି ସେଇ ଭିତ୍ତି, ଯାହାର ଅବଲମ୍ବନରେ ଗଙ୍ଗାଧରଙ୍କ ସାହିତ୍ୟ ସ୍ଥାପତ୍ୟ ନିର୍ମିତ । ପ୍ରାଚୀନକୁ ଘୃଣା କରି ନବୀନର ମୋହରେ ଭାସିଯାଇ ସୃଷ୍ଟିରତ ହେବା ଯେଉଁଭଳି ତ୍ରୁଟି ପୂର୍ଣ୍ଣ, କେବଳ ପ୍ରାଚୀନତାର ଅବଲମ୍ବନରେ କାବ୍ୟ-ରଚନା କୌଶଳର ଆଶ୍ରୟ ନେଲେ, ତାହା ମଧ୍ୟ ହେବ ସେଇଭଳି ପରିତ୍ୟକ୍ତ । ଏହି କାରଣରୁ କବି 'ରସ ରତ୍ନାକର'ର ପ୍ରକାଶକୁ ଅନୁମୋଦନ କରି ନାହାନ୍ତି । ଆଧୁନିକତାର ଅର୍ଥ ଉଚ୍ଛୃଙ୍ଖଳତା ନୁହେଁ । ବରଂ ଏକପ୍ରକାରର ଶୈଳ୍ପିକ-ସଂଯମ ମାଧ୍ୟମରେ ନବୀନତାର ଗମ୍ଭୀର ସୌନ୍ଦର୍ଯ୍ୟ ବିକାଶ କରିବାହିଁ ପ୍ରତିଭାର କର୍ମ । ପରସ୍ପର-ବିରୋଧୀ ଏହି ଦୁଇ ପ୍ରବୃତ୍ତିର ମଧୁର-ସମନ୍ୱୟ, ପ୍ରୀତିପୂର୍ଣ୍ଣ ସହାବସ୍ଥାନର ବ୍ୟବସ୍ଥା କରି ମେହେର ନିଜର ସାହିତ୍ୟିକ ଆଦର୍ଶ ଗଢ଼ି ନେଇଥିଲେ । ଏହି କର୍ମଟି ସହଜ ନଥିଲା ଏବଂ ଏହିଭଳି କାବ୍ୟ ଶୈଳୀର ନିର୍ମାଣରେ ମେହେର ହେଉଛନ୍ତି, ପ୍ରଥମ ।

ଯୁଗ ବଦଳେ, ରୁଚି ବଦଳେ, ତା'ସହିତ ବଦଳେ ସାହିତ୍ୟର 'ଫେଶନ୍' ଦାର୍ଶନିକମାନେ କହନ୍ତି, "ଗୋଟିଏ ନଦୀରେ ଦୁଇଥର ବୁଡ଼ାଯାଇ ପାରିବ ନାହିଁ ।" ଏହି ପରିବର୍ତ୍ତନଶୀଳ ବିଶ୍ୱର ଶାଶ୍ୱତ-ମାନଦଣ୍ଡ ଖୋଜିବା ତେଣୁ ମରୀଚିକା ପଛରେ ଘୂରି ଘୂରି ବୁଲିବା ସଙ୍ଗେ ସମାନ । ରାଧାନାଥ ଓଡ଼ିଆ ସାହିତ୍ୟରେ ଆଧୁନିକତାର ଆବାହକ । ଭାଷା / ଭାବର ପରିବର୍ତ୍ତନବାଦୀ ସ୍ୱର ତାହାଙ୍କର ସୃଷ୍ଟିର ଅନନ୍ୟତା, ତେଣୁ ଓଡ଼ିଆ ସାହିତ୍ୟରେ ଏହି ପ୍ରବୃତ୍ତିଟିକୁ ସ୍ୱାଗତ କରାଯାଇଥିଲା । ଗଙ୍ଗାଧର ଯୁଗପରିବର୍ତ୍ତନର ଇଙ୍ଗିତ ବିଷୟରେ ଅବହିତ ଥିଲେ । ଓଡ଼ିଆ ଭାଷାର ପ୍ରାଚୀନ-ସମ୍ପଦ ତାଙ୍କ ମନରେ ଚିରସ୍ଥାୟୀ ଗାର କାଟି ଦେଇଥିଲା । ଏହି ମାର୍ଗର ବିଶ୍ୱସ୍ତ-ପଥିକ ହିସାବରେ ସେ ତେଣୁ ସୀମା ଅତିକ୍ରମ କରି ନଥିଲେ । 'ରସ ରତ୍ନାକର' କବିଚିତ୍ତର ପ୍ରାଚୀନ-ଅନୁରକ୍ତି ତଥା

ସୀମାସଚେତନତାର ପ୍ରସୂତ । ତେବେ 'ପୂର୍ବ ଧରଣ'ର କବି କାବ୍ୟ ପ୍ରତି ମେହେର ଚିତ୍ତର ଅନୁରାଗ ସେମିତି ଏକାନ୍ତ ନୁହେଁ । ଶବ୍ଦ ଓ ଅଳଙ୍କାରିକତାର ଅନୁସରଣରେ ରୀତିକାବ୍ୟର ସୌନ୍ଦର୍ଯ୍ୟ ପ୍ରକାଶିତ । 'ରସ ରତ୍ନାକର'ରେ ଯଦି କେବଳ ତାହାହିଁ କରାଗଲା, ତେବେ ଏଥିରେ କବିର ମୌଳିକତା କାହିଁ ? କ ପ୍ରୟୋଜନ 'ରୀତି ସାହିତ୍ୟ'ର ଆଉ ସଂଖ୍ୟାବୃଦ୍ଧି ଘଟାଇ ? ଏକ ନଦୀରେ ବାରମ୍ବାର ସ୍ନାନ ଅଭିନବତା ଦୃଷ୍ଟିରୁ କଦାପି ଶ୍ଳାଘ୍ୟ ନୁହେଁ । ତେଣୁ ଗତିପରିବର୍ତ୍ତିତ କରି ନୂତନ ଜଳାଧାରର ଅନ୍ୱେଷଣ କରିବାକୁ ହେବ । ଆଧୁନିକତା ହେଉଛି ସେଇ ପ୍ରବହମାନ ତାଜା ଜଳର ଆକର, ଯେଉଁଥିରେ ବୁଡ଼ିଦେଇ ପାରମ୍ପରିକତାର ସମସ୍ତ ମାଳିନ୍ୟ ଦୂର କରାଯାଇପାରେ । ପ୍ରାଚୀନତା ତୀର୍ଥଜଳ, ତାହାର ସ୍ଥାନ ମୁଣ୍ଡ ଉପରେ । ଶରୀରକୁ ତାହା ପବିତ୍ର କରିପାରେ । ମାତ୍ର ଦୈନନ୍ଦିନ ବ୍ୟବହାରରେ ତାହାର ଭୂମିକା ନଷ୍ଟପ୍ରାୟ ଶୂନ୍ୟ । ତେଣୁ ସାହିତ୍ୟର 'Fashion' ବଦଳାଇବାକୁ ହେବ । 'ଇନ୍ଦୁମତୀ' ଏହି ପରିବର୍ତ୍ତିତ Fashion ର ଆଦ୍ୟ ଫଳ ।

ସମଗ୍ର ଗଙ୍ଗାଧର ସାହିତ୍ୟ କରୁଣ-ରସର ଏକ ମର୍ମସ୍ପର୍ଶୀ-ଭାଷ୍ୟ । କବି ହେଉଛନ୍ତି ଜଣେ ଦକ୍ଷ ଭାଷ୍ୟକାର, ଜୀବନରୁ ଅନୁଭୂତି ନେଇ ଯିଏ ନିଜ କାବ୍ୟ-ଲକ୍ଷ୍ମୀଙ୍କର କରୁଣ ରସ-ରସାଣିତ ଭାବ-ମୂର୍ତ୍ତିକୁ ଗଢ଼ି ଥିଲେ । ଜୀବନର ଏକ ଭାବ-ପ୍ରବଣ ମୁହୂର୍ତ୍ତରେ ଅନୁଭୂତିର ଏହି ପ୍ରଭାବଶାଳୀ ରୂପଟି ଆତ୍ମପ୍ରକାଶ କଲେ ମଧ୍ୟ, ଏହାହିଁ ତ ଚିରନ୍ତନ, ଶାଶ୍ୱତ ଏବଂ ନିତ୍ୟ । ସୁଖ ଆସେ, ଲୁଚି ଛପି ସ୍ୱେଚ୍ଛା-ମଳୟର ରୂପ ସମ୍ଭାର ନେଇ, କେବେ ଆସେ କେବେ ଯାଏ, କିଏ ବା ତାହା ଅନୁଭବ କରେ ? ଦୁଃଖ ଆସେ, ଉଦ୍ଧତ ଉତ୍କାପୂତ ଭଳି ଡାକ / ବଜାଇ, କେବେ ବା ସହସା, ଆଉ ମଣିଷକୁ ପୂର୍ବାବସ୍ଥା କରିଦେଇ ବିଦାୟ ନିଏ, ପୁଣି ଆସିବାର ଇଙ୍ଗିତ ଦେଇ । ଦୁଃଖ-ପ୍ରସୂତ କରୁଣ ରସ ତେଣୁ ଚିରନ୍ତନ । ନିଜ ଜୀବନକୁ କାରୁଣ୍ୟର ଚଳନ୍ତିରୂପ ମନେକରି, କବି-ପୁରୁଷ ସୃଷ୍ଟି କ୍ଷେତ୍ରରେ ଏହାର ପ୍ରୟୋଗ ନିମନ୍ତେ ଅଧୀର ହୋଇ ପଡ଼ିଛନ୍ତି । ଅନଙ୍କ ଜୀବନ କାରୁଣ୍ୟର ମର୍ମରରେ ଭରିଯାଇଛି । ଏକ ସହାୟହୀନା ନାରୀର ଆତ୍ମରକ୍ଷା ନିମିତ୍ତ ଅବଲମ୍ବନ-ହୀନ ପ୍ରଚେଷ୍ଟାରେ 'କୀଚକ ବଧ'ରେ କରୁଣରସ ପ୍ରମୂର୍ତ୍ତ । ସେଇଭଳି ନିର୍ଯ୍ୟାତିତା ନାରୀର ବ୍ୟଥାପୂର୍ଣ୍ଣ ଦୀର୍ଘଶ୍ୱାସରେ 'ପ୍ରଣୟ ବଲ୍ଲରୀ' କିମ୍ବା 'ତପସ୍ୱିନୀ'ର ସୃଷ୍ଟି ପରିପୂର୍ଣ୍ଣ । Sentiment ନେଇ କାବ୍ୟ-କଳାର କାରବାର । ଅନ୍ୟାନ୍ୟ ରସ ଅପେକ୍ଷା କରୁଣରସ ପୁଣି 'Sentiment' କୁ ଛୁଏଁ ସର୍ବାଧିକ । ତେଣୁ ମେହେର କବି କାବ୍ୟ-ସତ୍ତ୍ୱରେ କରୁଣରସର ପୁନଃପୁନଃ ପ୍ରୟୋଗକୁ ପ୍ରାୟ ସ୍ୱାଗତ ଜଣାଇଥିଲେ, ଏହି ଦୃଷ୍ଟିକୋଣରେ ରାଧାନାଥ ନୁହେଁ, ଗଙ୍ଗାଧର ହିଁ ହେଉଛନ୍ତି 'ଭବଭୂତି'ଙ୍କର ଯଥାର୍ଥ ଶିଷ୍ୟ ।

ଶିଳ୍ପର ଯଥାର୍ଥ Serious ରୂପଟି କବି କର୍ମର ଶ୍ରେଷ୍ଠତ୍ୱର ପରିଚୟସୂଚକ ହେଲେ ମଧ୍ୟ, ଏକାଦ ସମେ ଦୀର୍ଘ ସମୟଧରି ଏଥିରୁ ରସ ଉପଭୋଗ କରାଯାଇ ପାରେନା । ଅଳ୍ପ ସମୟପରେ ମସ୍ତିଷ୍କର ଗ୍ରହଣ କ୍ଷମତା ପୂର୍ବପୂର କମିଯାଏ । ଶେଷ ଆଡ଼କୁ କେବଳ ଆଖି ଶିଳ୍ପ-କର୍ମ-ଉପରେ ପଡ଼ିଥାଏ, ମନ ପର୍ଯ୍ୟନ୍ତ କିନ୍ତୁ ଏ ଦର୍ଶନର କୌଣସି ପ୍ରଭାବ ପହଞ୍ଚି ପାରେନାହିଁ । ଗଙ୍ଗାଧରଙ୍କ ଜୀବନ-ଧାରା ତାଙ୍କୁ ଆଜୀବନ 'ସିରିଅସ୍' ହେବାକୁ ଶିକ୍ଷା ଦେଇଥିଲା । ଜୀବନ ହସ-ଖେଳର ଏକ ମହୋତ୍ସବ ନୁହେଁ । ହସର ଫାଙ୍କେ ଫାଙ୍କେ ଉଙ୍କିମାରେ ହତାଶର / ଅଶ୍ରୁର କାରୁଣ୍ୟମୟ ମୂର୍ତ୍ତି । ତାହାହିଁ ଚିରନ୍ତନ / ଶାଶ୍ୱତ / ନିତ୍ୟ । ଜୀବନର ଗତି ଯାହାର ଲଘୁ, ଛନ୍ଦ ହଜିଯିବାର ସମ୍ଭାବନା ତାହାର ପଦେ ପଦେ । ତେଣୁ ଜୀବନ ଅର୍ଥ ହେଉଛି, ସର୍ବଦା 'Serious' କିଛି । ଜୀବନ ଭଳି କାବ୍ୟରେ ମଧ୍ୟ ଏହାର ପ୍ରଭାବ ଆମେ ପଦେ ପଦେ ଦେଖିବାକୁ ପାଉଛୁଁ । ଘଟଣା / ପରିବେଶ / ପଦଯୋଜନା / ପ୍ରକୃତି ପର୍ଯ୍ୟବେକ୍ଷଣ

ପ୍ରତ୍ୟେକ କ୍ଷେତ୍ରରେ ଏଇ 'ମିଷ୍ଟିସିଜ୍‌' ଭାବନାର ପରିପ୍ରକାଶ । ତେଣୁ 'ତପସ୍ୱିନୀ' କାବ୍ୟର ନିରବଚ୍ଛିନ୍ନ ଅନୁଶୀଳନ ସମ୍ଭବ ନୁହେଁ । ଅସମ୍ଭବ 'ଇନ୍ଦୁମତୀ' ଭଳି ଏକ କ୍ଷୁଦ୍ର କାବ୍ୟର ଧାର୍ମିକ ଅଧ୍ୟୟନ । 'ପ୍ରଣୟ ବଲ୍ଲରୀ' କ୍ଷେତ୍ରରେ ମଧ୍ୟ ଏହା ସତ୍ୟ ।

ଗଙ୍ଗାଧର କାବ୍ୟ ପରିପୂର୍ଣ୍ଣ-ଅଧ୍ୟାତ୍ମବାଦର ଏକ ସ୍ୱତଃସ୍ଫୂର୍ତ୍ତ ପରିପ୍ରକାଶ । 'ମାଟି' ଧର୍ମର ଜନନୀ । ମାଟିର ଉପାସକ ଗଙ୍ଗାଧର ଧର୍ମ ବ୍ୟାପାରରେ ଏକାନ୍ତ ଅନୁରାଗୀ ହେବା ସ୍ୱାଭାବିକ । ପୂର୍ଣ୍ଣ ଈଶ୍ୱର ବିଶ୍ୱାସ ତାଙ୍କ ଜୀବନର ତେଣୁ କାବ୍ୟର ମଧ୍ୟ ଜୀବନ-ଶକ୍ତି । ଈଶ୍ୱର ବିଶ୍ୱାସୀ ନୁହନ୍ତି; ଏଭଳି ବ୍ୟକ୍ତି ପୃଥିବୀରେ ନାହାଁନ୍ତି । ଯେଉଁମାନେ ଈଶ୍ୱର ବିଶ୍ୱାସ କରନ୍ତିନାହିଁ ✱ ମାତ୍ର ବସ୍ତୁବାଦରେ ବିଶ୍ୱାସୀ ସେମାନଙ୍କ ନିକଟରେ ବସ୍ତୁ ହେଉଛି ଈଶ୍ୱର । କେବଳ ବିଜ୍ଞାନ ଉପରେ ବିଶ୍ୱାସ କରୁଥିବା ଲୋକ ପାଖରେ ବିଜ୍ଞାନ ହେଉଛି ଈଶ୍ୱରଙ୍କର ରୂପାନ୍ତର । ପ୍ରକୃତରେ ବିଶ୍ୱାସ ହିଁ ଈଶ୍ୱର — ତାହା ଯାହାକୁ ଅବଲମ୍ବନ କରି ଦୃଢ଼ ହୋଇ ଗଢ଼ି ଉଠୁନା କାହିଁକି । ସଂସାରରେ କୌଣସି କିଛି ବିଶ୍ୱାସ କରେ ନାହିଁ, ଏ ଭଳି ଲୋକ ବିରଳ । ମନର ପ୍ରୟୋଜନ ସାଥିରେ ଖାପ୍‌ ଖୁଆଇ ଈଶ୍ୱରଙ୍କର ଭାବମୂର୍ତ୍ତି ଗଢ଼ି ନେଲେ, ତାହାହିଁ ଉପଯୋଗ୍ୟ । ତେଣୁ ଅବିଶ୍ୱାସକୁ ଦୃଢ଼ ରୂପ ଅବଲମ୍ବନ କରିଥିବା 'ନାସ୍ତିକ' ମାନେ ହେଉଛନ୍ତି ଈଶ୍ୱରଙ୍କର ସବୁଠାରୁ ଅଧିକ ନିକଟବର୍ତ୍ତୀ । ଧର୍ମ ବିଶ୍ୱାସ ଗଙ୍ଗାଧରଙ୍କ କ୍ଷେତ୍ରରେ ସାମାନ୍ୟ ଏକ ମାନସିକତାର ବ୍ୟାପାର ମାତ୍ର ନ ଥିଲା । ବରଂ କବି ଜୀବନ ସହିତ ଧର୍ମର ସମ୍ବନ୍ଧ ଥିଲା ଅତି ନିବିଡ଼, ଘନିଷ୍ଠ ତେଣୁ ଅଚ୍ଛେଦ୍ୟ । ପାପ ସହିତ ପୁଣ୍ୟର ଧର୍ମ ସହିତ ଅଧର୍ମର ଯେଉଁ ନିତ୍ୟ ସଂଘର୍ଷର ଚିତ୍ର ମେହେର-କାବ୍ୟର ପ୍ରାଣ-ବିଭବ, ସେଥିରେ ପୁଣି ପୁଣ୍ୟର / ଧର୍ମର ସର୍ବଦା ବିଜୟ ଘୋଷିତ ହେବାର ସୂଚନା ଦିଆଯାଇଛି । ଆଜୀବନ ଏକ ମାଟି-ଗର୍ଭିତ ଧାର୍ମିକ ଜୀବନଯାପନ, ତାଙ୍କର ମନକୁ ଶୁଭ୍ର ଆର୍ଯ୍ୟତ୍ୱର ଯେଉଁ ଗୌରବ ଦେଇଥିଲା, ତନ୍ମଧ୍ୟରୁ ତାଙ୍କର କାବ୍ୟଗୁଡ଼ିକର ସୃଷ୍ଟି ବୋଲି କୁହାଯାଇପାରେ । ଧର୍ମ ଏଠାରେ ଲୋକ ସମାଜକୁ ନିଶାଗ୍ରସ୍ତ କରାଇ ସବଳର ଦୁର୍ବଳ ଉପରେ ଅତ୍ୟାଚାର ନିମନ୍ତେ ଅଭିପ୍ରେତ ଅଫିମ ମାତ୍ର ନୁହେଁ । ବରଂ ରୂପର ସମ୍ବନ୍ଧର କଳଙ୍କିତ ସ୍ପର୍ଶରୁ ମୁକ୍ତିକାମୀ ମାନବ ଆତ୍ମାର, ଏକ ଅରୂପ / ଅବ୍ୟକ୍ତ / ଅସୀମ ସତ୍ତାରେ ଲୀନକାମୀ ମାନବ ପ୍ରାଣର ବହୁ ଆକାଂକ୍ଷିତ ଦିବ୍ୟବସ୍ତୁ ମାତ୍ର । 'ଭକ୍ତ' କବିତାରେ ଗଙ୍ଗାଧର ଲେଖନୀ ଈଶ୍ୱରଙ୍କର ସେଇ ସର୍ବମୟ ସତ୍ତାର ବର୍ଣ୍ଣନାରେ ତେଣୁ ମୁଖର ।★

★ ବିଶ୍ୱ ଜୀବନ ହେ ! ତୁମ୍ଭଙ୍କ କରୁଣା ସିନ୍ଧୁ
ବୋଲିବାକୁ ମନ ବଳୁ ନାହିଁ ଯେଣୁ
ସିନ୍ଧୁ ତୁମ କୃପା ବିନ୍ଦୁ,
ତୁମ୍ଭ ଭଜନରେ ହେବ ନାହିଁ ନାଥ
ମାଳା ଜପିବାକୁ ବାଧ୍ୟ,
କୋଟି କୋଟି ବ୍ରହ୍ମ- ଗଣ୍ଡି ସେ ମାଳାର
କେ ଜପି କରିବ ସାଧ୍ୟ;
× × × ×
ହୃଦୟର କଥା ଜାଣିବାକୁ ଅଛି
ତୁମ୍ଭର ଅସୀମ ଶକ୍ତି,
ଯେତିକ ଯେଜନ ଯେତିକ ଅଛି ମୋ
ହୃଦେ ତୁମ୍ଭ ପ୍ରତି ଭକ୍ତି—"

[ ଭକ୍ତ : ଅର୍ଘ୍ୟଥାଳୀ; ଗଙ୍ଗାଧର ଗ୍ରନ୍ଥାବଳୀ — ପୃ. ୨୫୯ ]

ଈଶ୍ୱର ରୂପଶୂନ୍ୟ, ଅସୀମ । ତେଣୁ କ୍ଷୁଦ୍ର ହୃଦୟରେ କବି ତାହାଙ୍କୁ କିପରି ସ୍ଥାନ ଦେଇପାରିବେ ? ତଥାପି କବିଚିତ୍ତ ତେଣୁ ଏହି ଅସୀମ ସତ୍ତାର ଉପାସନା ନିମନ୍ତେ ଉପଯୁକ୍ତର ସ୍ୱାଧୀନ ହୋଇ କିରଣ ହୋଇଛି । ପୂର୍ଣ୍ଣସମର୍ପଣର ଅଭିଳାଷରେ କବି-ସତ୍ତା ଲେଟିଯାଇଛି, ସେହି ଅଦ୍ୱୈତ ସତ୍ତାର ପଦପ୍ରାନ୍ତରେ । "ଦେବୁର ପ୍ରଜାଗର' କବିତାଟି କବିଙ୍କର ଅଖଣ୍ଡଧର୍ମ ବିଶ୍ୱାସର ଏକ ବିଶୁଦ୍ଧ-ଆତ୍ମଲିପି । 'ଧାର୍ମିକ' 'ଧର୍ମ'କୁ ରକ୍ଷା କଲେ, ଧର୍ମ ମଧ୍ୟ ସର୍ବଦା ତାହାର ନିରାପତ୍ତାର ଦାୟିତ୍ୱ ନେଇଥାଏ । ମଙ୍ଗଳମୟ ଏହି ଧର୍ମର ପ୍ରଭାବରେ ସର୍ବଦା ଧାର୍ମିକର ବିଜୟ ଘୋଷିତ ହୋଇଥାଏ । ଧାର୍ମିକ-ହୃଦୟ ସଦା-ପ୍ରଫୁଲ୍ଲତାର ଲୀଳା କ୍ଷେତ୍ର । ତେଣୁ "ଏ ସଂସାର ଜଳଧିକ ହେବାପାଇଁ ପାର / ଧର୍ମସିନ୍ଧୁ-ପାନ, ତହିଁ ବିଭୁ କର୍ଣ୍ଣଧାର—" × × ଧର୍ମ ପଥେ ଗତି ଯାର ଧର୍ମେ ସ୍ଥିରମତି / ଈଶ୍ୱର ଖଣ୍ଡନ୍ତି ତାର ନିଖିଳ ବିପତ୍ତି—" ଏହି ଉକ୍ତି ମେହେରଙ୍କ ଈଶ୍ୱର ବିଶ୍ୱାସର ପରିଚୟସୂଚକ । କ୍ରୋଧ / କାମ / ମୋହ / ଲୋଭ / ମାତ୍ସର୍ଯ୍ୟ / ମଦ ପ୍ରଭୃତି ଷଡ଼ରିପୁର ଉର୍ଦ୍ଧ୍ୱ ଦମନରେ, ଦୟା / କ୍ଷମା / ସରଳତା / ଉଦାରତା / ସୁଶୀଳତା / ବିନୟ ପ୍ରଭୃତିର ଅକପଟ ଅନୁସରଣରେ ହିଁ 'ମାନବ ଧର୍ମ'ର ଶ୍ରେଷ୍ଠତା ରକ୍ଷିତ ହୋଇଥାଏ । ଧର୍ମ ତେଣୁ ଏଠାରେ ପିତୁଳା ପୂଜାରେ ପର୍ଯ୍ୟବସିତ ନୁହେଁ । ବୌଦ୍ଧିକ ଈଶ୍ୱର ଚିନ୍ତା ସହିତ, ଆଚରଣ ବିଧିରେ ଉକ୍ତ ପ୍ରଦର୍ଶନ ଦ୍ୱାରା ହିଁ ଯଥାର୍ଥ ଧର୍ମବିଶ୍ୱାସର ପରିଚୟ ମିଳିଥାଏ । "ଈଶ୍ୱରଙ୍କ ସାନ୍ନିଧ୍ୟ ପାଇବାକୁ ହେଲେ ନିଜକୁ 'ଈଶ୍ୱର'ରେ ରୂପାନ୍ତରିତ କରିବାକୁ ହେବ" । ଏହା ସତ୍ୟ ବୋଲି ଗ୍ରହଣ କରିନେଲେ, କହିବାରେ ଦ୍ୱିଧା ନାହିଁ ଯେ, ଗଙ୍ଗାଧର ସ୍ୱୟଂ ନିଜର ଆଚରଣ ବିଧିରେ ଏ ଭଳି ନିଷ୍କଳୁଷତା ପ୍ରଦର୍ଶନ କରିଥିଲେ, ଯେଉଁଥିରୁ ତାଙ୍କୁ ଐଶ୍ୱରିକ ସତ୍ତାର ସ୍ଥାନରେ ଭାବେ ଗ୍ରହଣ କରିନେଲେ ଅନ୍ୟାୟ ହେବ ନାହିଁ । "ସସୀମତା ମଧ୍ୟରେ ଅସୀମତାର ଆବାହନ କିମ୍ବା ଅସୀମତା ମଧ୍ୟରେ ସସୀମତାର ବିସର୍ଜନ ଦ୍ୱାରା ହିଁ ଅନାବିଳ ଭକ୍ତିପ୍ରାଣତା ପ୍ରତିଷ୍ଠିତ ହୋଇଥାଏ । ଆତ୍ମା / ପରମାତ୍ମାର ନିତ୍ୟ ସମ୍ପର୍କ ବିଶ୍ଳେଷଣ ଉଚ୍ଚତର ସାଧନା ସାପେକ୍ଷ ହୋଇପାରେ । ମାତ୍ର ଦାରିଦ୍ର୍ୟ-ଲାଞ୍ଛିତ ଏକ ଅସହାୟ କବି-ପୁରୁଷ ନିକଟରେ ସ୍ରଷ୍ଟାଙ୍କର ସନାତନ-ଅଚିନ୍ତ୍ୟ ରୂପ ହିଁ ଏକମାତ୍ର ଧ୍ୟେୟ । ସେହି ସର୍ବବ୍ୟାପୀ-ସର୍ବମୂର୍ତ୍ତି କବିପୁରୁଷର ବିଚରଣ ଭୂମି ସମାଜଠାରୁ, ତାହାର ଆଚରଣ ବିଧିଠାରୁ ସ୍ୱତନ୍ତ୍ର ନୁହନ୍ତି । ଏହା ହିଁ ମେହେର-କବିଙ୍କର ଧର୍ମ । ସମାଜ ସହିତ ଧର୍ମର, ଆଚରଣ ବିଧି ସହିତ ଆଧ୍ୟାତ୍ମିକତାର ସମନ୍ୱୟ ସର୍ବ ହେଉଛି ଏହାର ମୌଳିକତା ।

ଗଙ୍ଗାଧରଙ୍କ କାବ୍ୟ ନୈସର୍ଗିକ ପ୍ରେମର ଶାଶ୍ୱତ ଲୀଳା କ୍ଷେତ୍ର । ତେଣୁ ତାଙ୍କୁ ଆମେ ପ୍ରେମର କବି କହିଥାଉଁ କାମର ନୁହେଁ । ମାନବ ହୃଦୟର ନିଭୃତତମ ପ୍ରଦେଶର ଅତି ସୂକ୍ଷ୍ମ କଳା କୋମଳ ଅନୁଭୂତି ହିଁ ପ୍ରେମ । ଆତ୍ମା ସହିତ ଏହାର ନିତ୍ୟ ସମ୍ବନ୍ଧ । ନିତାନ୍ତ ଜୈବବୃତ୍ତିର ପରିତୃପ୍ତୀକରଣ ପ୍ରବୃତ୍ତିରୁ କାମର ଜନ୍ମ । ଏହା ପୁଣି ନିତାନ୍ତ ବାହ୍ୟ ଏବଂ ଶରୀର ସମ୍ପର୍କିତ । ଆଧୁନିକ କବି ପ୍ରେମର ସ୍ୱରୂପ ସମ୍ପର୍କରେ ମନ୍ତବ୍ୟ ଦେଇ ଲେଖିଛନ୍ତି, "ପ୍ରେମ ନୁହେଁ ଦେହଁ ଦେହ ଭୋଗ ଅନ୍ୱେଷଣ / ପ୍ରେମ ଏକ ଆତ୍ମା ପ୍ରତି ଅନ୍ୟର ବନ୍ଧନ –" ପ୍ରେମର ଏହି ଆତ୍ମିକ-ରୂପଟି ଗତ ସାହିତ୍ୟରେ ନଥିଲା । ନିତାନ୍ତ ଜୈବିକ ପ୍ରବୃତ୍ତିରୁ ସେଠାରେ ପ୍ରେମର ଜନ୍ମ ହେଉଥିଲା । ବୈଷ୍ଣବ ସାହିତ୍ୟର କିନ୍ତୁ "ଆତ୍ମା ପ୍ରତି ଆତ୍ମାର" ଆକର୍ଷଣକୁ ପ୍ରେମ ଆଖ୍ୟା ଦିଆଯାଇଛି । ରାଧାନାଥ ପ୍ରେମର ବାସ୍ତବ ଦିଗଟି ପ୍ରତି ସଚେତନ ଥିଲେ । 'ଆତ୍ମା' ସାଧକ-ଶ୍ରେଣୀର ଧ୍ୟେୟ ହୋଇପାରେ । ସାଧାରଣଙ୍କ ସମ୍ପର୍କ କିନ୍ତୁ ଶରୀର ସହିତ ଅଧିକ । ତେଣୁ କାବ୍ୟରେ ବାସ୍ତବତା ଦିଗରୁ ଏହି ଶରୀରର ବନ୍ଦନା ଗାନ ହିଁ

କରିପିବା କଥା । ଏ ପ୍ରବୃତ୍ତିଟି ଅସ୍ୱାଭାବିକ । ପ୍ରାଚ୍ୟ ପରମ୍ପରାରେ ପ୍ରେମର ଅତୀନ୍ଦ୍ରିୟ ରୂପଟି ହିଁ ମୂର୍ତ୍ତି । ଫ୍ରଏଡୀୟ ଚିନ୍ତାଧାରାର 'ପ୍ରେମମୂଳାମେଦଣ୍ଡ' କିନ୍ତୁ ଯଥାର୍ଥରେ କାମର ସାର୍ବଭୌମତାର ପରିଚାୟକ । ରାଧାନାଥ ତେଣୁ ଏକ 'କାମ'ର ଆବାହନ କରିଗଲେ, ନିଜର ସମଗ୍ର ଜୀବନ କାଳ ମଧ୍ୟରେ । ଏହି ଅସ୍ୱାଭାବିକ ପରମ୍ପରାର ବନ୍ଦନାରେ ପ୍ରତିବାଦର ଝଡ଼ ବହିଗଲା । ୧/୨ ବିରକ୍ତ/ବ୍ୟସ୍ତ ରାଧାନାଥ ମାନସିକ ଅସ୍ଥିରତାରେ ବିବ୍ରତ ହୋଇପଡ଼ି ପ୍ରକୃତି ଆଡ଼କୁ ଦୃଷ୍ଟି ଫେରାଇଲେ । ଚିନ୍ତାରେ ଆଧୁନିକ, ବିଶ୍ୱାସରେ ସନାତନ ଗଙ୍ଗାଧରଙ୍କ ଅନୁଭୂତିରେ କିନ୍ତୁ ଏହି 'ପ୍ରାକୃତ ପ୍ରେମ'ର ଭାବ-ମୂର୍ତ୍ତି ସ୍ଥାନପାଇ-ପାରିଲା ନାହିଁ । ସମ୍ବେଦନଶୀଳ ଆତ୍ମା ତାଙ୍କର ଅନ୍ୱେଷଣ କରୁଥିଲା, ସେଇ ପ୍ରେମକୁ ଯାହାର ପ୍ରଭାବରେ ଆଶ୍ରମ ଜୀବନର କଷ୍ଟତା ରାଜଭବନର ସୁଖାବହତାରେ ପରିବର୍ତ୍ତିତ ହୋଇପାରେ । ଶରୀରରୁ ଶରୀର ବିଚ୍ଛିନ୍ନ ହୋଇଗଲେ ମଧ୍ୟ ଆତ୍ମା ସହିତ ଆତ୍ମାର ଶାଶ୍ୱତ ସମ୍ପର୍କରେ ବିଶ୍ୱାସୀ ଏଇ ପ୍ରେମ, ଶରୀର ନିମନ୍ତେ ବିଳାପ କରେ ନାହିଁ । ଏହାର ଚରମ ସାର୍ଥକତା ତେଣୁ ଭୋଗରେ ନୁହେଁ, ତ୍ୟାଗରେ । ନୈତିକତାର ତୀକ୍ଷ୍ଣ ଅସିଧାର ଏହି ପ୍ରେମର ନିୟାମକ । ବିଶ୍ୱାସ ହେବନି ଏଇ ପ୍ରେମର ପରିଣତି । ତେଣୁ ସୀତା ଭାବନ୍ତି, "ମୋ କର୍ମଲାଗି ଦୋଷୀ ନୁହନ୍ତି ବିଧି/କାନ୍ତ ତ ସ୍ୱଭାବେ ମୋ କରୁଣାନିଧି" ଏଇ ବିଶ୍ୱାସ ବଳରେ ଶକୁନ୍ତଳା, ଚିନ୍ତାକରେ "ଅଭାଗିନୀ ମନେକଲେ ଯାଉଛନ୍ତି ପ୍ରାଣେଶ-ନିବାସକକ୍ଷ" ଗଙ୍ଗାଧର ଶୁଚିବନ୍ତ, ସଂଯତ ଏବଂ ଆଦର୍ଶ ପ୍ରେମର ସଫଳ ରୂପକାର । ଯୌବନର ରୂପଜ ମୋହ ଗ୍ରସ୍ତ ପ୍ରେମ ତାଙ୍କ କାବ୍ୟ-ସୀମାରୁ ବହିଷ୍କୃତ । ରୂପଜପ୍ରେମ ଶାଳୀନତାରେ/ସଂଯମରେ ଦୀପ୍ତ । 'କୀଚକବଧ'ରେ ସୈରିନ୍ଧ୍ରୀଙ୍କ ପ୍ରତି କୀଚକର ଆସକ୍ତି ନିତାନ୍ତ ରୂପଜ । ନିର୍ଜନ ପରିବେଶରେ ସୈରିନ୍ଧ୍ରୀଙ୍କ ସହ ସାକ୍ଷାତ୍କାର କାମୋନ୍ମତ୍ତ କୀଚକକୁ ମଧ୍ୟ ବାତୁଳ କରିପାରି ନାହିଁ । ସଂଯତ କଣ୍ଠରୁ ତାର ଖସିଆସିଛି— ଚିରନ୍ତନୀ ନାରୀ-ସ୍ତୁତି—ଆସନ୍ତୁ ଉଠି ବୋଲେ ରହ ସଙ୍ଗିନୀ, କୃପାରେ ନେଇ ହୀନା ଦାସକୁ କିଣି" ଏହି ସଂକ୍ଷିପ୍ତ ଭାଷଣରେ ମନର ସମସ୍ତ ଆବେଗକୁ କୀଚକ ପ୍ରକାଶ କରିଦେଇଛି । ପ୍ରେମବର୍ଣ୍ଣନାରେ ଏଇ ସଂଯତ ସ୍ଥିତି ତତ୍କାଳୀନ ଉଚ୍ଛୃଙ୍ଖଳ ପ୍ରେମ-ବର୍ଣ୍ଣନାର କଠୋର ସମାଲୋଚନା ମଧ୍ୟରୁ ସ୍ପଷ୍ଟ ବୋଲି କୁହାଯାଇପାରେ ।

ପ୍ରାଚୀ ମାନସିକତାରେ ଯେ ସର୍ବଦା ଦେହ-ଭୋଗକୁ ଘୃଣାର ଦୃଷ୍ଟିରେ ଦେଖାଯାଇଛି ଏଭଳି କୁହାଯାଇପାରିବ ନାହିଁ । ଏଭଳି ହେଲେ ଆମକୁ ବିଶାଳ ସାହିତ୍ୟକୁ ଅସ୍ୱୀକାର କରିବାକୁ ପଡ଼ିବ ।

---

୧ । "ପ୍ରେମଚିତ୍ର ବର୍ଣ୍ଣନା ପ୍ରତି ତାଙ୍କର 'ପ୍ରବଣତା' ଯେ ଅଧିକ, ଏକଥା ସ୍ୱୀକାର କରିବାକୁ ହିଁ ହେବ । ଦୁର୍ଭାଗ୍ୟର ବିଷୟ ଏପର୍ଯ୍ୟନ୍ତ ଆମ୍ଭେମାନେ ତାଙ୍କଠାରୁ ଖୁବ୍ ଗୋଟାଏ ଉନ୍ନତ ପ୍ରେମଚିତ୍ର ପାଇନାହୁଁ । ବରଂ ବ୍ୟଥିତ ଚିତ୍ତରେ କହିବାକୁ ପଡ଼ୁଅଛି ଯେ, ସେ ତାଙ୍କର ପ୍ରାୟ ସମସ୍ତ ନାୟକ/ନାୟିକାଙ୍କର ଚିତ୍ତକୁ ଶାରୀରିକ ସୌନ୍ଦର୍ଯ୍ୟ ଓ ଇନ୍ଦ୍ରିୟ ସୁଖରେ ଅଭିନିବିଷ୍ଟ କରାଇ ପକାଇ ଅଛନ୍ତି । ସ୍ଥଳବିଶେଷରେ ସେ ସୁରୁଚିର ଏପରିକି ସୁନୀତିର ସୀମାଲଙ୍ଘନ କରିଯାଇଛନ୍ତି ।" ( ଶ୍ରୀ ବିଶ୍ୱନାଥ କର : ଉତ୍କଳ ସାହିତ୍ୟ, ୫ । ୩ । ଆଷାଢ଼, ସନ ୧୩୦୮ )

୨ । "ରାଧାନାଥଙ୍କ କାବ୍ୟରେ ଯେଉଁ ପ୍ରେମ ପ୍ରଧାନ ଉପଜୀବ୍ୟ, ତାହା ରୂପଜ । ନିର୍ମଳ ନିଃସ୍ୱାର୍ଥ ପ୍ରୀତି ତାଙ୍କ କାବ୍ୟରେ ବିରଳ । × × ଶାରୀରିକ ସୌନ୍ଦର୍ଯ୍ୟ ଓ ପାର୍ଥିବ ପ୍ରାପ୍ତି, ମାନସିକ ଲାବଣ୍ୟପ୍ରସୂତ ନିର୍ମଳ, ନିଃସ୍ୱାର୍ଥ ପ୍ରୀତି ନୁହେଁ । ତାହା ପୃଥିବୀର ; ସ୍ୱର୍ଗର ନୁହେଁ । ତାହା କାମ, ପ୍ରେମ ନୁହେଁ " ( କବି ରାଧାନାଥ ଓ ତଦୀୟ କବିତା : ଶ୍ରୀ ନନ୍ଦକିଶୋର ବଳ : ଉତ୍କଳ ସାହିତ୍ୟ : ୬ଷ୍ଠ ଭାଗ ୧୩୧୦ ସାଲ )

ଶୁଚିତା ସାମାଜିକ ଜୀବନର ଏକ ଅପରିହାର୍ଯ୍ୟ ଅଙ୍ଗ । ନଗ୍ନ ପ୍ରେମର ଚିତ୍ରଣରେ ସମାଜର ଏହି ଅଙ୍ଗଟି ଦୁର୍ବଳ ହୋଇଯାଏ । ତେଣୁ ଏହି ଭଳି ବର୍ଣ୍ଣନା କବିର 'ଲେଖନୀକୁ' କଳଙ୍କିତ କରେ । ଖ୍ରୀଷ୍ଟସାହିତ୍ୟ ଏବଂ ରାଧାନାଥ-ସାହିତ୍ୟର ପରିଣତି ଦେଖିଲାପରେ ଗଙ୍ଗାଧର ଆପେଆପେ ସାବଧାନ ହୋଇଯାଇଥିବେ । ତେଣୁ ତା'ଙ୍କ କାବ୍ୟରେ ପ୍ରେମର ପରିଶୀଳିତ / ତ୍ୟାଗ / ପୂତ / ଶୁଚିବନ୍ତ ରୂପଟିର ପରିଚୟ ହିଁ ପାଠକମାନେ ପାଇଥାଆନ୍ତି । ପ୍ରେମର ଏହି ପରିଶୀଳିତ ମୂର୍ତ୍ତି, ଓଡ଼ିଆ ସାହିତ୍ୟରେ ପଣ୍ଡିତ ନୀଳକଣ୍ଠଙ୍କୁ ଛାଡ଼ିଦେଲେ, ଅନ୍ୟକାହାର ରଚନାରେ ଦୃଷ୍ଟିଗୋଚର ହୁଏନାହିଁ । ତେଣୁ ଗଙ୍ଗାଧରଙ୍କୁ ଆମେ 'କ୍ଲାସିକ୍-ପ୍ରେମର-ସଫଳ ରୂପକାର'ର ଗୌରବ ଅର୍ପଣ କରିପାରୁଁ ।

ଅଦୃଷ୍ଟବାଦର ବନ୍ଦନା-ଗାନରେ ମେହେର କବି ମୁଖର । ଏହି ଅଦୃଷ୍ଟ ପୁଣି କର୍ମଫଳ ହେତୁକ ଏବଂ ନିୟତି ଏହି ଅଦୃଷ୍ଟର ଜନନୀ । ଚରମ ଅସହାୟତା ମଣିଷକୁ ସମ୍ପୂର୍ଣ୍ଣ ଖାଲି କରିଦିଏ କିମ୍ବା ପୂରା ବେପରୁଆ ମଧ୍ୟ କରିଦିଏ । ଆଜୀବନ ଦୁଃଖ / ଦାରିଦ୍ର୍ୟ / ନିଷ୍ପୀଡ଼ନ ପ୍ରଭୃତି ଭୋଗି ଭୋଗି ମେହେର ହୋଇ ପଡ଼ିଥିଲେ ପୂର୍ଣ୍ଣ ଅଦୃଷ୍ଟବାଦୀ । ଦୈବର ଭ୍ରୂକୁଟି ନିକଟରେ ମଣିଷର ଅସହାୟତା ତାଙ୍କର ଅନୁଭୂତିର କଥା । ଏହି ଅନୁଭୂତିର ଚିତ୍ର ହିଁ ତାଙ୍କର ସମସ୍ତ କାବ୍ୟରେ ପ୍ରଦତ୍ତ । ଏହିଭଳି ଚରିତ୍ରଗୁଡ଼ିକୁ ସେ ନିଜ ନିମନ୍ତେ ବାଛି ନେଇଛନ୍ତି, ଯେଉଁମାନଙ୍କ ଜୀବନ ଅଦୃଷ୍ଟବାଦର ଘୁପ୍‌ଅନ୍ଧକାର ପରିବେଶରେ ଖିନ୍ନ ଏବଂ କ୍ଲାନ୍ତ । ଏହି ଅଦୃଷ୍ଟବାଦର ଇଙ୍ଗିତ ରାଜରାଣୀ ସୀତାଙ୍କୁ ପଞ୍ଚ-ପ୍ରାନ୍ତର ନାୟିକାରେ ପରିଣତ କରେ । ଆଶ୍ରମଲାଳିତା କଣ୍ୱ ଦୁହିତା ଶକୁନ୍ତଳା ଦୁଷ୍ମନ୍ତ, ହସ୍ତିନା-ପଟ୍ଟମହିଷୀ ହେବାର କଳ୍ପନାରେ ସ୍ୱପ୍ନାଚ୍ଛନ୍ନା, ଅଜଙ୍କର ଜୀବନର ସୁଖ ସ୍ୱପ୍ନ ଅଧାରିହିଯାଏ । ଏମିତିକେତେ ବ୍ୟକ୍ତିର କେତେ ଆଶା ପାଣିଫୋଟକା ଭଳି ସୃଷ୍ଟି ହେଉଥିବାର ପରମୁହୂର୍ତ୍ତରେ ମିଳାଇଯାଏ । 'ପ୍ରାରବ୍ଧ କର୍ମର ଫଳ' ମନୁଷ୍ୟକୁ ଅବଶ୍ୟ ଭୋଗିବାକୁ ପଡ଼ିବ । ଏହା ବିରୁଦ୍ଧରେ ନାଲିଶ୍ ନାହିଁ । କାରଣ, "କର୍ମଫଳ ପ୍ରାଣୀ / ଅବଶ୍ୟ ଭୁଞ୍ଜଇ / କେ କରି ପାରିବ ଆନ, ଶତପ୍ରତିଷେଧ / ଲଙ୍ଘି ପଶିଥାଏ / କର୍ମଫଳ ବଳବାନ—" କେବଳ ସେତିକି ନୁହେଁ, "ଭବେ ଭବିତବ୍ୟ / ଅବଶ୍ୟ ଘଟଇ / ନହୁଏ କେବେ ଅନ୍ୟଥା, ମୂଢ଼ ଜନେ ସିନା / ତହିଁପାଇଁ ବୃଥା / ହୃଦେ ପୋଷୁଥାନ୍ତି ବ୍ୟଥା—" ନିୟତିର ଅନ୍ୟନାମ ପୁଣି କାଳ । ସେ ସର୍ବଗ୍ରାସୀ / ଅଖଣ୍ଡ ଶକ୍ତିର ଆଧାର ଏବଂ ନିଷ୍ଠୁର ମଧ୍ୟ ।" ମର୍ତ୍ତ୍ୟମଣ୍ଡଳରେ / ଜନମିଲେ ଜନେ / ଅବଶ୍ୟ ଅଛି ମରଣ, ସର୍ବଗ୍ରାସୀ କାଳ / ପ୍ରତି ନିମେଷରେ / କରୁଛି ଆୟୁ ହରଣ-" ପ୍ରଥିତଯଶା ନରପତି ଠାରୁ ଶ୍ରମୋପଜୀବୀ ଶ୍ରମିକ ପର୍ଯ୍ୟନ୍ତ କେହି ଏ ସାଧାରଣ ନିୟମର ବହିର୍ଭୂତ ନୁହନ୍ତି । ଅଦୃଷ୍ଟବାଦ / କର୍ମଫଳ ତାଡ଼ିତ ମେହେର ପାତ୍ର / ପାତ୍ରୀ କିନ୍ତୁ ପୂର୍ଣ୍ଣରୂପେ ଦୈବ ଉପରେ ନିର୍ଭରଶୀଳ ହୋଇ ବସିନାହାନ୍ତି । ଜୀବନ ତାଙ୍କ ନିମନ୍ତେ ଏକ ବିରାଟ ଚ୍ୟାଲେଞ୍ଜ ଆହ୍ୱାନ । ଯେ ହାରିଯାଏ, ସେ ସରିଯାଏ । ନୈରାଶ୍ୟ ମନୁଷ୍ୟ ଜୀବନର ଚରମ ସତ୍ୟ ହୋଇପାରେ, ପରମ ସତ୍ୟ ନୁହେଁ । ନିଷ୍କ୍ରିୟତା ହିଁ ଏଠାରେ ମୃତ୍ୟୁର ଛଦ୍ମବେଶରେ ବ୍ୟକ୍ତିକୁ ଗ୍ରାସକରେ । ଅବଶ୍ୟ ଭାଗ୍ୟ ବିରୁଦ୍ଧରେ ବିପ୍ଳବର ଚେଷ୍ଟା ଘୃଣ୍ୟତମ ନିର୍ବୋଧତା । ତଥାପି 'ପ୍ରାରବ୍ଧ କର୍ମଫଳ, ବିଶ୍ୱାସୀମାନେ ନୀରବରେ ଭାଗ୍ୟ ହାତରେ ମାଡ଼ ଖାଇବାକୁ ଅପେକ୍ଷା କରିବ, ଏହା ମଧ୍ୟ ବୁଦ୍ଧିମାନ୍‌ର ପରିଚାୟକ ନୁହେଁ । ସ୍ୱଶକ୍ତି ଉପରେ ଗଭୀର ପ୍ରତ୍ୟୟ ତଥା ଭବିତବ୍ୟ ଉପରେ ଭରସା ହିଁ ତା'ର ଜୀବନକୁ ନିୟନ୍ତ୍ରଣ କରିବା ଉଚିତ । ଶକ୍ତି ଉପ୍ରରେ ଭରସାରୁ ଜାତହୁଏ, ଆଶାବାଦୀ ମନୋଭାବ । ସଂସାରରେ କିଛି ହିଁ ତ ସ୍ଥିର ନୁହେଁ । ଦୁଃଖକୁ ତେଣୁ ଶାଶ୍ୱତ-ରୂପ ଦେଇ ନିଷ୍କ୍ରିୟ ହେବା ଆତ୍ମବଞ୍ଚନା ବ୍ୟତୀତ ଆଉ କିଛି ନୁହେଁ ।

ନୈରାଶ୍ୟର ନିସ୍ପୃହ ବୈରାଗ୍ୟ ତଳେ ତଳେ ତେଣୁ ଅନ୍ତର୍ହିତ ଆଶାର ଏକ ବିପଶ୍ଚିତ ମୁଖୀ ସ୍ରୋତ ସର୍ବଦା ମନୁଷ୍ୟର ଅନ୍ତର ତଳେ ପ୍ରବାହିତ । ସୁ-କର୍ମ ବଳରେ ବ୍ୟକ୍ତି ଜୀବନରେ ଏହି ଆଶାର ଉଦୟ ହୁଏ । ଦେବ କାର୍ଯ୍ୟରେ ସହାୟତା କରିବା ଦ୍ୱାରା ଦୁଷ୍ମନ୍ତ ଯେଉଁ ସୁ-କର୍ମ କରିଛନ୍ତି, ଶକୁନ୍ତଳା / ଭରତଙ୍କ ସହ ମିଳନ ହେଉଛି ତାହାର ଫଳ । 'ତପସ୍ୱିନୀ' ସୀତାଙ୍କର ସ୍ୱାମୀପଦ ଲାଭର ଆଶା ସେତେବେଳେ ସଫଳ ହୋଇଛି, ଯେତେବେଳେ କଠୋର ତପଶ୍ଚର୍ଯ୍ୟା ଦ୍ୱାରା ତାଙ୍କର ସମସ୍ତ ମାଳିନ୍ୟ ଦୂର ହୋଇଯାଇଛି । ଶୀତକ ଜୀବନରେ ବିପର୍ଯ୍ୟୟକୁ ନିମନ୍ତ୍ରଣ କରିଆସିଛି, ତାହାର ଅପକର୍ମ । ମାନୁଷୀ-ଅହଲ୍ୟା ପାଷାଣୀ ହୋଇଛନ୍ତି, ଏହି ଅପକର୍ମ କାରଣରୁ । 'ଧର୍ମର ଜୟ, ପାପର କ୍ଷୟ' ଏହି ପାରମ୍ପରିକ ପ୍ରାଚ୍ୟ ବିଶ୍ୱାସ 'ମେହେର-କବି'ଙ୍କର ପ୍ରତିପାଦ୍ୟ । 'ଧର୍ମର ବିଜୟ' ବର୍ଣ୍ଣନା ଯେଉଁଠାରେ କବିଙ୍କର ମୂଳ ଉଦ୍ଦେଶ୍ୟ ସେଠାରେ 'ଆଶାବାଦ'ର ଯେ ଏକ ନିର୍ଦ୍ଦିଷ୍ଟ ଭୂମିକା ରହିବ, ଏଥିରେ ସନ୍ଦେହ ନାହିଁ । ମେହେର କବିଙ୍କର ଦର୍ଶନ ତେଣୁ ଆଶା-ଭିତ୍ତିକ କର୍ମଫଳର ଦର୍ଶନ ।

ମାତୃଭୂମି ଏବଂ ମାତୃଭାଷାର ଗୌରବାବହ ସ୍ମୃତି-ସ୍ମରଣ ମଧ୍ୟରେ ମେହେର-ଜାତୀୟତାର ସ୍ୱରୂପ ପ୍ରକଟିତ । ପ୍ରାଚ୍ୟ ପରମ୍ପରାରେ 'ଜନନୀ' ଏବଂ 'ଜନ୍ମ ଭୂମି'କୁ ସମପର୍ଯ୍ୟାୟଭୁକ୍ତ କରିବାର ଯେଉଁ ମାନସିକତା ଦେଖାଦେଇଥିଲା, ମେହେର-ମାନସ ତାହାରି ମଧ୍ୟରେ ଆପଣା ଜାତୀୟତାର ସରଣୀଟି ଖୋଜିପାଇ ପରିତୃପ୍ତ ହୋଇଥିଲା । ନିଜ ଦେଶ, ତାହାର ମାଟିଗୋଡ଼ି ଧୂଳି ଗଛଲତା ନଦୀ ପ୍ରାନ୍ତର ପ୍ରାନ୍ତ ଗିରି ସବୁର ପ୍ରତି କବି ଚିତ୍ତରେ ପ୍ରକାଶ ପାଇଥିଲା ଏକ ଅଦ୍ଭୁତ ଆକର୍ଷଣ । ସବୁର ଉପରେ ଥିଲା ଭାଷାଜନନୀର ଭାଷା, ତାହାର ସ୍ଥାନ ସମ୍ମାନର, ପୁଣି ଗୌରବର । ମାତୃଭାଷାର ଉନ୍ନତିରେ ହିଁ ଜାତୀୟ ଜୀବନର ଉନ୍ନତି । ୧/୨ ଏଇ ମାତୃଭାଷାର ଯେତେବେଳେ କଣ୍ଠରୋଧ କରିଦିଆଯାଉଥିଲା, ସେତେବେଳେ କବି-ମନ ବିଦ୍ରୋହ କରି ଉଠିଥିଲା, ପ୍ରତିବାଦ ଜଣାଇଥିଲା ସାହିତ୍ୟ ମାଧ୍ୟମରେ । 'ଭାରତୀ ରୋଦନ' ଏବଂ 'ଉତ୍କଳ ଭାରତୀଙ୍କ ନିବେଦନ'ରେ ତାହାର ସୁସ୍ପଷ୍ଟ ସ୍ୱାକ୍ଷର ବିଦ୍ୟମାନ । ଦୀର୍ଘଦିନ ଧରି ସମ୍ବଲପୁର ଅଞ୍ଚଳ ଓଡ଼ିଶା ବାହାରେ ରହିଥିବାରୁ, କବିଙ୍କ ମନରେ କ୍ଷୋଭର ଅନ୍ତ ନଥିଲା । ତେଣୁ ଭାଷା ସୂତ୍ରରେ ପ୍ରଦେଶ ଗଠନ ନୀତିରେ ପ୍ରତିଷ୍ଠିତ ହୋଇଥିବା 'ଉତ୍କଳ ସମ୍ମିଳନୀ' ପ୍ରତି କବି ଆକୃଷ୍ଟ ହୋଇଥିଲେ ଏବଂ ଏଥିରେ ଯୋଗଦେଇ ମାନସିକ ଶାନ୍ତି ପାଉଥିଲେ । ଖୋଲାଖୋଲି ବ୍ରିଟିଶ୍ ଶକ୍ତି ବିରୁଦ୍ଧରେ ବିଦ୍ରୋହ କରିବାର ମାନସିକତା ତତ୍କାଳୀନ ସାମାଜିକ ଜୀବନରେ ପ୍ରାୟ ନଥିଲା । ସ୍ୱୟଂ 'ଗାନ୍ଧିଜୀ' ବୁଝାମଣା / ଆଲୋଚନା ମାଧ୍ୟମରେ କିଛି କିଛି ଶାସନ କ୍ଷମତା ହସ୍ତଗତ କରିବାର ପକ୍ଷପାତୀ ଥିଲେ ।

---

୧ । "ଉଚ୍ଚ ହେବା ପାଇଁ କରିଯେବେ ଆଶା
ଉଚ୍ଚ କର ଆଗ ନିଜ ମାତୃ ଭାଷା—"

୨ । "ମାତୃଭୂମି ମାତୃଭାଷାରେ ମମତା
ଯା ହୃଦେ ଜନମି ନାହିଁ,
ତାକୁ ଯଦି ଜ୍ଞାନୀ-ଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ?—"

୧୯୨୦ ମସିହା ପର୍ଯ୍ୟନ୍ତ ଅସହଯୋଗ ଆନ୍ଦୋଳନର ପ୍ରସ୍ତାବ ଗୃହୀତ ହେବାଯାଏ, ଶାସନ ସମ୍ପର୍କରେ ଏକ ପ୍ରକାର ନରମ-ମତ ହିଁ ଅବଲମ୍ବନ କରାଯାଉଥିଲା । ସାହିତ୍ୟରେ ଏହି ମତର ପ୍ରତିଫଳନ ଘଟିବା ସ୍ୱାଭାବିକ । ବ୍ରିଟିଶ୍-କେଶରୀଙ୍କର ଜୟଗାନ କରି ତାହାଠାରୁ କିଛି କିଛି ସୁବିଧା / ସୁଯୋଗ ହାସଲ କରିନେବା ହିଁ ଆମ ନେତାମାନଙ୍କର ଉଦ୍ଦେଶ୍ୟ ଥିଲା । ରାଧାନାଥ, ଫକୀରମୋହନ, ମଧୁସୂଦନ, ନନ୍ଦକିଶୋର ପ୍ରଭୃତି ତତ୍କାଳୀନ କବି / ଲେଖକ ବୃନ୍ଦ ତେଣୁ ଏଭଳି କିଛି ନଥିଲେ କିମ୍ବା ଲେଖୁ ନ ଥିଲେ, ଯାହା ସ୍ପଷ୍ଟ ଭାବରେ ଶାସକ-ଶକ୍ତିର ବିରୁଦ୍ଧାଚରଣ କରିବ । ମେହେର ଭବି-ଏଇ ପରିବେଶର ସନ୍ତାନ । ତାଙ୍କ ରଚନାରେ ତେଣୁ ଜାତୀୟତାର ଉଗ୍ର ସ୍ୱର ପ୍ରକାଶ ନପାଇବା ସ୍ୱାଭାବିକ । ଏଭଳି କି ମୃତ୍ୟୁର ଅଳ୍ପଦିନ ପୂର୍ବରୁ '୧୯୨୩' ମସିହାରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବାପରେ ସେ 'ଭାରତୀ ଭାବନା' ନାମକ ଯେଉଁ କବିତା ଲେଖିଥିଲେ ସେଥିରେ ଜାତୀୟତାର ରୂପ ସେଇ ଭଳି ପ୍ରଚ୍ଛନ୍ନ । ମନୁଷ୍ୟ ପରମ୍ପରାର ଦାସ । ଦୀର୍ଘଦିନଧରି 'ଶାସନ'ର ବନ୍ଦନା ଗାନ କରିବା ପରେ ସହସା ତା' ବିରୁଦ୍ଧରେ ଖୋଲାଖୋଲି ସ୍ୱର ଉତ୍ତୋଳନ କରିବା ଏତେ ସହଜ ନୁହେଁ । ତେଣୁ ମେହେରଙ୍କ ରଚନାରେ ଆମେ ସବୁବେଳେ ଜାତୀୟତାର ପ୍ରଚ୍ଛନ୍ନ ରୂପଟିକୁ ହିଁ ଦେଖିବାକୁ ପାଉଥାଉଁ ।
(ଝ)

କବି ଯାହା କରିଛନ୍ତି / ଯେତେବେଳେ କରିଛନ୍ତି, ତାହା ନିଜ ମାତୃଭାଷାର ଦାରିଦ୍ର୍ୟ ଦୂର କରିବାର କାମନାରେ କରିଛନ୍ତି । ନିଜ ଜୀବନକୁ କାବ୍ୟ / କବିତାରେ ଫୁଟାଇଦେବା ହୋଇଛି ତାଙ୍କର ଅଭିବ୍ୟକ୍ତିର ଧାରା । ତେଣୁ କବିଜୀବନ ଯେମିତି ସରଳ, କୁଟିଳତାହୀନ ସେମିତି ତାଙ୍କର କାବ୍ୟ । ଓଡ଼ିଆ ସାହିତ୍ୟରେ ଆତ୍ମାଭିବ୍ୟକ୍ତିର ଏଇ ଧାରାଟି ଯଥାର୍ଥରେ ପ୍ରଶଂସନୀୟ । ତେଣୁ ତ ଗଙ୍ଗାଧର ନମସ୍ୟ—ତେଣୁ ତ ରସବାଣୀ-ଏଇ ଅନନ୍ୟ କବି ଆମର ସ୍ମରଣୀୟ ।

(ଝ) [illegible] କବି ଏଭଳି ଏକ ମନ୍ତ୍ରର ଅନୁସରଣ କଲେ, ଯାହା [illegible]
[illegible] । ତାଙ୍କର ପ୍ରତିଭା-ଚନ୍ଦ୍ରର [illegible] ମଧ୍ୟ।
[illegible]
ଅନୁକରଣୀୟ [illegible] ଅନୁସରଣ [illegible]
[redacted] [illegible]
[illegible]
[illegible] ପ୍ରଶଂସା କରିବାକୁ [illegible] ଯେ, ଆମମାନଙ୍କ ଆଗରେ [illegible]
[illegible] ନାହିଁ । [illegible], ଆମର [illegible]
ମଧ୍ୟ ଏଇ ପ୍ରକାରର [illegible] । [illegible]
[illegible] । ଗଙ୍ଗାଧରଙ୍କ ସମ୍ପର୍କରେ ଚର୍ଚ୍ଚା କରୁଥିବା ସମସ୍ତଙ୍କର [illegible]
ରାଧାନାଥଙ୍କ ନାମ ଆସୁଛି ଏବଂ ତାହା ଅନିବାର୍ଯ୍ୟ । ସେ [illegible]
ଆକାଂକ୍ଷିତ ଏବଂ ଅନାଲୋଚିତ [illegible] ପ୍ରତିଭା [illegible]
[illegible] ଅଭିଯୋଗ । ପ୍ରକୃତ କଥା ହେଉଛି, [illegible]
[illegible], ଏବେ ମଧ୍ୟ [illegible]
[illegible]
[illegible] ନାହିଁ । ସେ ଏଭଳି କବିତା [illegible]
[illegible]
[illegible]
[illegible], ଏ କଥା କିଏ କହିବ !